କଳିଙ୍ଗଭାରତୀ ଗ୍ରନ୍ଥମାଳା

# ଗୀତକଳ୍ପତରୁ

## ଦ୍ୱିତୀୟ ଶାଖା

## ଶ୍ରୀ ଶ୍ରୀ ଜଗନ୍ନାଥ ଜଣାଣ ଭଜନ

ସମ୍ପାଦକ ଓ ପ୍ରକାଶକ

**ଶ୍ରୀ ବଚ୍ଛନ୍ଦଚରଣ ପଟ୍ଟନାୟକ**

ପ୍ରତିଷ୍ଠାତା-ସଭାପତି

କଳିଙ୍ଗଭାରତୀ ଓ ଉତ୍କଳ ଛାତ୍ର ସାହିତ୍ୟ ସମାଜ

ମୁଦ୍ରାକର
ଶ୍ରୀ ଅନସୂୟା ପ୍ରସାଦ ପାଠକ
ରାଷ୍ଟ୍ରଭାଷା ସମବାୟ ପ୍ରେସ, କଟକ

ପ୍ରଥମ ମୁଦ୍ରଣ-୧୦୦୦
୧୯୫୭

ପ୍ରାପ୍ତିସ୍ଥାନ
୧ । କଳଙ୍ଗଭାରତୀ ଭବନ
ଓଗରପଡ଼ା, କଟକ-୨

୨ । ରାଷ୍ଟ୍ରଭାଷା ପୁସ୍ତକ ଭଣ୍ଡାର
ବନୋଦ ବହାରୀ, କଟକ-୨

# ଉତ୍ସର୍ଗ

ଶ୍ରୀ ଅନୁପ [illegible]

ସଜାସାହେବ, [illegible]ଆଳ [illegible], ଓଡ଼ିଶା

[illegible]କର[illegible]ଷୁ

ଶ୍ରୀଜଗନ୍ନାଥ - ପୟର- [illegible] [illegible]କର
ଧରିଅଛ ମନ, ତେଣୁ ଭବ-ବିଭବ
ସକଳସୁଗୁଣାଳୟ ! ତୁମ୍ଭ ବିଶାଳ ହୃଦୟ
ପାରିନାହିଁ ଭରି ଅନ୍ୟମାନେ ତ ଲବ
ଗୁଣୀ ହୋଇ ଏତେ ବିନୟୀ
କାହିଁ ଦେଖିଥିବା ମୋର ମନେ ନୁହଇ ॥

ଶ୍ରୀଜଗନ୍ନାଥ-ଜଣାଣ- ଭଜନ ଏ ଗ୍ରନ୍ଥ ଧନ୍ୟ
ହେଲ ତୁମ୍ଭେ ଅନୁକୂଳ, କଲ ପ୍ରକାଶ
ହେ ବୀଣାପାଣି-କୋୟର ! ମଣ୍ଡି ଏହା ତୁମ୍ଭ କର
ମୟୂଖେ ତ୍ରିତାପ-ତମ କରୁ ବିନାଶ
[illegible] [illegible]ଧାର
[illegible]ସାଗର ॥

। ଇତି ।

ଭଞ୍ଜଜୟନ୍ତୀ
୧୬ । ୫ । ୫୬

[illegible]
ଶ୍ରୀ ବଛନ୍ଦଚରଣ ପଟ୍ଟନାୟକ
କଳଙ୍ଗଭରତୀ

# ମୁଖବନ୍ଧ

ଦେବଦେବ ଜଗନ୍ନାଥ ସଂସାରାର୍ଣ୍ଣବତାରକ
ଭକ୍ତାନୁଗ୍ରାହକ ସଦା ରକ୍ଷ ମାଂ ପାଦୟୋର୍ନତମ୍ ।।

ଅୟମାରମ୍ଭ
ଶୁଭାୟ ଭବତୁ

ଯାହାଙ୍କ ଅପାର କରୁଣାବଳରେ ପାଞ୍ଚବର୍ଷତଳେ ଭକ୍ତକବି ଗୌରଚରଣ ଅଧିକାରୀଙ୍କ ଗୀତାବଳୀ ଗୀତକଳ୍ପତରୁର ପ୍ରଥମ ଶାଖାରୂପେ କଳଙ୍ଗଭାରତୀ ପକ୍ଷରୁ ଆତ୍ମପ୍ରକାଶ କରିଥିଲା, ସେହି ଦେବଦେବ ଶ୍ରୀ ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ବିଭିନ୍ନ ଶତାବ୍ଦୀରେ ରଚିତ ୧୦୮ ଟି ଜଣାଣ ଓ ଭଜନ ତାହାର ଦ୍ୱିତୀୟ ଶାଖାରୂପେ ଆଜି ପ୍ରକାଶିତ ହେଉଅଛି । ଏ ଭଳି ବ୍ୟାପକ ସଂଗ୍ରହ କଳଙ୍ଗରେ ଅଭିନବ । କେତେକ ବର୍ଷତଳେ ରୋଗମୁଖରେ ପଡ଼ି ମରଣକୁ ଆସନ୍ନ ମନେକରୁଥିବା ସମୟରେ ସଙ୍କଟହାରୀ ମହାପ୍ରଭୁଙ୍କ ନିକଟରେ ଖେଦଭାର ନିବେଦନ କରିବା ଉଦ୍ଦେଶ୍ୟରେ ଏ ଭଳି ଗୋଟିଏ ସଂଗ୍ରହ ପ୍ରସ୍ତୁତ କରିବାର ପ୍ରେରଣା ମୋ ହୃଦୟରେ ସ୍ୱତଃସ୍ଫୂର୍ତ୍ତ ହୋଇଥିଲା । ଆପାତଦୃଷ୍ଟିରେ ଯାହା ଅମଙ୍ଗଳ ପରିଣାମରେ ତାହା ମଙ୍ଗଳରହିଁ ଜନକ ହୋଇଥାଏ । ଉକ୍ତ ରୋଗର ଆକ୍ରମଣ ମୋତେ ଯେଉଁ ଅବସର ଓ ଅଭିନିବେଶ ଯୁଟାଇ ଦେଇଥିଲା ସେହି ଅବସର ଓ ଅଭିନିବେଶଯୋଗୁଁହିଁ ଏ

ସଂଗ୍ରହ ସମ୍ଭବ ହୋଇ ପାରିଅଛି । ଗୁରିଗୋଟି ପ୍ରସିଦ୍ଧ ସଂସ୍କୃତ ସ୍ତୋତ୍ର ଓ ମୋ କୃତ ତହିଁର ଓଡ଼ିଆ ପଦ୍ୟାର ଏ ଗ୍ରନ୍ଥରେ ସନ୍ନିବେଶିତ ହେଇଅଛି । ମୋ ଅଧମ ଲେଖନୀ-ପ୍ରସୂତ କେତୋଟି ଜଣାଣ ମଧ୍ୟ ଏ ସଂଗ୍ରହରେ ମିଶିଅଛି । ଉତ୍କଳର ଭଜନାମୋଦୀ ଭକ୍ତସମାଜ ଏ ଗ୍ରନ୍ଥକୁ ଅବଶ୍ୟ କଣ୍ଠହାର କରିବେ । ଏଥିର ଅନେକଗୁଡ଼ିଏ ଗୀତ ବିସ୍ମୃତିଗର୍ଭରେ ବିଲୀନ ହେବାକୁ ବସିଥିଲା । କଳିଙ୍ଗଭାରତୀ ଅନୁଷ୍ଠାନ ପକ୍ଷରୁ ଅପ୍ରକାଶିତ ଗୀତସଂଗ୍ରହ ଓ ପ୍ରକାଶପାଇଁ ଯେଉଁ ଉଦ୍ୟମର ସୂତ୍ରପାତ ହୋଇଅଛି ତାହା ଲୋପୋନ୍ମୁଖୀ ଏପରି ଅନେକଗୁଡ଼ିଏ ଗୀତକୁ ଲୋକ-ଲୋଚନଗୋଚରକୁ ଆଣିପାରିଲା । ଅବହେଳାବଶତଃ କାଳକ୍ରମେ ଅସ୍ମେମାନେ ମୂଷା, ବଢ଼ି, ଘରପୋଡ଼ି, ଉଇ ଓ ରୁଣ୍ଡିଆ କୀଟଙ୍କ ଧ୍ୱଂସକାରୀ କ୍ରିୟା ଫଳରେ କେତେ ମହାର୍ଘ ସାରସ୍ୱତ ସମ୍ଭାର ହରାଇ ବସୁଥାଉଁ ତାର ଯେ ଇୟତ୍ତା ନାହିଁ !! ବିଲୁପ୍ତି ମୁଖରୁ ସୁରକ୍ଷିତ ହୋଇ ଏ ଗ୍ରନ୍ଥରେ ମୁଦ୍ରିତ ହୋଇଥିବା ଏହି ଅପ୍ରକାଶିତ ଗୀତମାନଙ୍କୁ ଲକ୍ଷକଲେ କି ପରିମାଣରେ ଜାତୀୟ ସାରସ୍ୱତ ସମ୍ପଦ ଧ୍ୱଂସଗାମୀ ହେଉଅଛି ତହିଁର କଳନା କରିହେବ । ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଉଦ୍ଦେଶ୍ୟରେ ଯେ କେବଳ ଏହି ୧୦୮ ଟି ଜଣାଣ ଭଜନ କଳିଙ୍ଗରେ ପ୍ରଚଳିତ ରହିଅଛି ତାହା ନୁହେ । କଳିଙ୍ଗଭାରତୀ ସଂଗ୍ରହର ସମସ୍ତ ଜଣାଣ ଭଜନ ମଧ୍ୟ ଏ ଗ୍ରନ୍ଥର ଅନ୍ତର୍ଭୁକ୍ତ ହୋଇ ପାରିନାହିଁ । କଳିଙ୍ଗର ବିଭିନ୍ନ ଅଞ୍ଚଳରେ ମହାପ୍ରଭୁଙ୍କର ଅହୁରି ବହୁ

ଜଣାଣ ଭଜନ ଲୋକମୁଖରେ ହେଉ ବା ତାଳପତ୍ର ପୋଥିରେ ହେଉ ଅବଶ୍ୟ ରହିଥିବ । ସେ ସବୁର ସଂଗ୍ରହପରେ ଏ ଗ୍ରନ୍ଥର ଅନ୍ୟାନ୍ୟ ଭାଗମାନ ପ୍ରକାଶ କରିବାର ବାସନା ରହିଅଛି । ଅଯ୍ୟମାରମ୍ଭ ଶୁଭସ୍ଯ ଭବତୁ ।

**ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରର ମାହାତ୍ମ୍ୟ**

ପୁରାଣମାନଙ୍କରେ ଶ୍ରୀ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଅସ୍ଥାନ ଶ୍ରୀପୁରୁଷୋତ୍ତମ କ୍ଷେତ୍ରକୁ ନିତ୍ୟଧାମ ବୋଲି କୁହାଯାଇଅଛି । ଏହା ଭୌମ ବୈକୁଣ୍ଠ । ଏହା ଅନାଦି କାଳରୁ ଅବସ୍ଥିତ । ଏହାର ଭୂମଣ୍ଡଳର ସୃଷ୍ଟି ବା ପ୍ରଳୟ ସହିତ ସମ୍ବନ୍ଧ ନାହିଁ । ବିଶ୍ୱପ୍ରପଞ୍ଚର କୌଣସି ଘଟନା ଏହାର ବିଲୋପ ସାଧନ କରିପାରେ ନାହିଁ । ସ୍କନ୍ଦ ପୁରାଣରେ କଥିତ ହୋଇଛି—

"ଏତତ୍ କ୍ଷେତ୍ରବରଂ ଗୁହ୍ୟ ବପୁର୍ଭୂତଂ ମହାତ୍ମନଃ
ସ୍ୱୟଂ ବପୁଷ୍ମାନ୍ ଯତ୍ରାସ୍ତେ ସ୍ୱନାମ୍ନା ଖ୍ୟାପିତଂ ହି ତତ୍ ।"

ଅର୍ଥାତ୍ ଏହି କ୍ଷେତ୍ରଶ୍ରେଷ୍ଠ ପରମାତ୍ମା ପରଂବ୍ରହ୍ମଙ୍କ ଶରୀରରୂପୀ । ପରମାତ୍ମା ପରଂବ୍ରହ୍ମ ଏହି କ୍ଷେତ୍ରରେ ବିଗ୍ରହ-ଧାରୀ ହୋଇ ବିରାଜମାନ ଅଛନ୍ତି ଏବଂ ଏହାକୁ ନିଜନାମରେ ଶ୍ରୀ ପୁରୁଷୋତ୍ତମ ବୋଲି ଅଭିହିତ କରିଅଛନ୍ତି । ଏଥିର ପ୍ରତିଧ୍ୱନି ଚକ୍ରବର୍ତ୍ତୀ ସମ୍ରାଟ ଇନ୍ଦ୍ରଦ୍ୟୁମ୍ନ ଭକ୍ତଙ୍କ କୋଟିବ୍ରହ୍ମାଣ୍ଡସୁନ୍ଦରୀ କାବ୍ୟରେ ମଧ୍ୟ ମିଳେ ଯଥାः—"ଯେଣୁ ନାରାୟଣ ଦେହୀ ତେଣୁ ସେହି ନାମ ।" ସ୍କନ୍ଦ ପୁରାଣରେ ପୁନଶ୍ଚ କଥିତ ଅଛି ·

ମୂଳାୟତନମେତଦ୍ଧି       ସୃଷ୍ଟି ପାଳନସଂହୃତେଃ
ଅନ୍ୟାବତାରୀ ଭଗବାନ୍ ପ୍ରସ୍ଥାତ୍ୟନ୍ୟତ୍ର କାର୍ଯ୍ୟତଃ ॥

ନିଷ୍ପାଦ୍ୟ କୃତ୍ୟଂ ପୃଥ୍ୱ୍ୟାଂ ହି ପୁନରତ୍ରୈବ ତିଷ୍ଠତି
ଅନେତାଦଶାବତାରାଣାଂ ଦର୍ଶନାଦ୍ୟସ୍ତୁ ଯତ୍ ଫଳମ୍ ॥

ତତ୍ଫଳଂ ଲଭତେ ମର୍ତ୍ତ୍ୟୋ ଦୃଷ୍ଟ୍ୱା ଶ୍ରୀପୁରୁଷୋତ୍ତମମ୍
ଦଶାବତାରକ୍ଷେତ୍ରସ୍ୟ କଥିତା ପୂର୍ବ ତେ ମୟା ॥

ଅର୍ଥାତ୍ ଶ୍ରୀପୁରୁଷୋତ୍ତମ କ୍ଷେତ୍ର ସୃଷ୍ଟି ସ୍ଥିତି ଓ ପ୍ରଳୟର ମୂଳ ସ୍ଥଳ ଅଟେ । ଅବତାରୀ ପରମାତ୍ମା ପରଂବ୍ରହ୍ମ ଶ୍ରୀ ଶ୍ରୀଜଗନ୍ନାଥ ଏହି ସ୍ଥଳରେ ଅବତୀର୍ଣ୍ଣ ହୋଇ ଅନ୍ୟତ୍ର ତାଙ୍କ ଅବତାରର କାର୍ଯ୍ୟ କରିବାକୁ ଯାଆନ୍ତି ଏବଂ ପୃଥିବୀରେ ତାହା ସମ୍ପାଦନ କରି ପୁନଶ୍ଚ ଏହି ସ୍ଥାନକୁ ଆସି ବିରାଜମାନ ହୁଅନ୍ତି । ଶ୍ରୀମତ୍ସ୍ୟାଦି ଦଶାବତାରମାନଙ୍କୁ ଦର୍ଶନ କଲେ ଯେଉଁ ଫଳ ମିଳେ ଏହି କ୍ଷେତ୍ରରେ ଏକା ଶ୍ରୀ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଦର୍ଶନକଲେ ସେହି ଫଳ ମିଳେ । ତେଣୁ ଏହି ଶ୍ରୀପୁରୁଷୋତ୍ତମ କ୍ଷେତ୍ରର ଅନ୍ୟନାମ ଦଶାବତାର କ୍ଷେତ୍ର ।

ଅନ୍ୟାନ୍ୟ କ୍ଷେତ୍ରମାନଙ୍କରେ ଅବତାରୀ ପରଂବ୍ରହ୍ମ ଶ୍ରୀ ଶ୍ରୀଜଗନ୍ନାଥଙ୍କ କଳା ବା ଅଂଶର ଆବିର୍ଭାବ ହୁଏ । ଉକ୍ତ ଅବତାରମାନଙ୍କରେ ମହାପ୍ରଭୁ ଦୁଷ୍ଟମାନଙ୍କୁ ବିନାଶ କରି ପୃଥିବୀରେ ଶାନ୍ତି ସ୍ଥାପନ ପୂର୍ବକ ମୁକ୍ତିପଥରେ ପଥିକ ହେବା ପାଇଁ ମାନବମାନଙ୍କୁ ଜ୍ଞାନର ଉପଦେଶ ଦେଇ ଏଠାକୁ ଫେରିଆସନ୍ତି ହୁଅନ୍ତି । ଅବତାରମାନ ଯାହାଙ୍କ-ଠାରୁ ଜାତ ସେହି ଅବତାରୀ ପରଂବ୍ରହ୍ମ ଶ୍ରୀ ଶ୍ରୀଜଗନ୍ନାଥ

ମହାପ୍ରଭୁ ଏହି ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ଅବସ୍ଥାନ କାଳରୁ ନିତ୍ୟ ବିରାଜିତ ଏବଂ ତେଣୁ ଏ କ୍ଷେତ୍ରଶ୍ରେଷ୍ଠ ତାଙ୍କ ନିଜାଳୟ ବା ଭୌମ ବୈକୁଣ୍ଠ ରୂପେ ପ୍ରସିଦ୍ଧ ।

ଶ୍ରୀ ଚୈତନ୍ୟଭାଗବତରେ କଥିତ ଅଛି :—

× × × ×

"ସେଇ ସ୍ଥାନେ ଆମାର ପରମଗୋପ୍ୟ ପୁରୀ ॥

ସେଇ ସ୍ଥାନ ଶିବ ଅଜ କହି ତୋମା ସ୍ଥାନେ
ସେ ପୁରୀର ମର୍ମ ମୋର କେହି ନାହିଁ ଜାନେ ॥

ସିନ୍ଧୁତୀରେ ବଟମୂଲେ ନୀଳାଚଲ ନାମ
କ୍ଷେତ୍ର ଶ୍ରୀପୁରୁଷୋତ୍ତମ ଅତି ରମ୍ୟ ସ୍ଥାନ ॥

ଅନନ୍ତ ବ୍ରହ୍ମାଣ୍ଡ କାଲେ ଯଖନ ସଂହାରେ
ତବୁ ସେ ସ୍ଥାନେର କିଛୁ କରିତେ ନା ପାରେ ॥

ସର୍ବକାଲେ ଏହିସ୍ଥାନେ ଆମାର ବସତି
ପ୍ରତିଦିନ ଆମାର ଭୋଜନ ହୟ ତଥି ॥

ସେ ସ୍ଥାନେର ପ୍ରଭାବେ ଯୋଜନ ଦଶ ଭୂମି
ତାହାତେ ବସୟେ ଯତ ଜନ୍ତୁ କୀଟ କୃମି ॥

ସଭାରେ ଦେଖୟେ ଚତୁର୍ଭୁଜ ଦେବଗଣେ
ଭୁବନମଙ୍ଗଲ କରି କହୟେ ଯେ ସ୍ଥାନେ ॥

ନିଦ୍ରାତେଓ ଯେ ସ୍ଥାନେ ସମାଧିଫଲ ହୟ
ଶୟନେ ପ୍ରଣାମଫଲ ଯଥା ବେଦ କୟ ॥

ପ୍ରଦକ୍ଷିଣ ଫଳ ପାସ୍ତୁ କରିଲେ ଭ୍ରମଣ
କଥାମାତ୍ର ଯଥା ହସ୍ତୁ ଆମାର ସ୍ତବନ ॥
× × × ×
ନିଜ ନାମେ ସ୍ଥାନ ମୋର ହେବ ପ୍ରିୟତମ
ତାହାଠେ ଯେତେକ ବୈସେ ସେ ଆମାର ସମ ॥
ସେ ସ୍ଥାନେ ନାହିଁକ ଯମଦଣ୍ଡ ଅଧିକାର
ଆମି କରି ଭଲମନ୍ଦ ବଗୁର ସମ୍ଭାର ॥"

ଶ୍ରୀଭଗବତାମୃତ ଗ୍ରନ୍ଥରେ ଉଲ୍ଲେଖ ଅଛି ।

ଦାରୁବ୍ରହ୍ମ ଜଗନ୍ନାଥୋ ଭଗବାନ୍ ପୁରୁଷୋତ୍ତମୋ
କ୍ଷେତ୍ରେ ନୀଳାଚଳେ କ୍ଷୀରାର୍ଣ୍ଣବତୀରେ ବିରାଜତେ ॥
ମହାବିଭୂତିମାନ୍ ରାଜ୍ୟମୌତ୍କଲଂ ପାଲୟନ୍ ସ୍ୱୟମ୍
ବ୍ୟଞ୍ଜୟନ୍ ନିଜ ମାହାତ୍ମ୍ୟଂ ସଦା ସେବକବତ୍ସଲଃ ॥
ତସ୍ୟାନ୍ନଂ ପାଚିତଂ ଲକ୍ଷ୍ମ୍ୟା ସ୍ୱୟଂ ଭୁକ୍ତ୍ୱା ଦୟାତ୍ମନା
ଦତ୍ତଂ ତେନ ସ୍ୱଭକ୍ତେଭ୍ୟୋ ଲଭ୍ୟତେ ଦେବଦୁର୍ଲଭମ୍ ॥
ମହାପ୍ରସାଦାସଂଜ୍ଞକ ତତ୍ ସ୍ପୃଷ୍ଟଂ ଯେନ କେନ ଚିତ୍
ଯତ୍ରକୁତ୍ରାପି ବା ନୀଚମବଗୃରେଣ ଭୁଜ୍ୟତେ ॥
ଅହୋ ତତ୍ କ୍ଷେତ୍ରମାହାତ୍ମ୍ୟଂ ଗର୍ଦ୍ଦଭୋଽପି ଚତୁର୍ଭୁଜଃ
ଯତ୍ର ପ୍ରବେଶମାତ୍ରେଣ ନ କସ୍ୟାପି ପୁନର୍ଭବଃ ॥

ଅର୍ଥାତ୍ ନୀଳାଚଳର ଲବଣ ସମୁଦ୍ର ତୀରରେ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ଦାରୁବ୍ରହ୍ମ ଭଗବାନ୍ ଶ୍ରୀ ଶ୍ରୀଜଗନ୍ନାଥ ବିରାଜମାନ ଅଛନ୍ତି । ସେ ମହାବିଭୂତିମାନ୍ । ସ୍ୱୟଂ

ଉତ୍କଳସାମ୍ରାଜ୍ୟକୁ ପାଳନ ପୂର୍ବକ ସର୍ବଦା ସେବକବତ୍ସଳ-ରୂପେ ନିଜ ମାହାତ୍ମ୍ୟ ପ୍ରକଟ କରି ସେ ସେଠାରେ ଅବସ୍ଥାନ କରିଅଛନ୍ତି । ସ୍ୱୟଂ ଲକ୍ଷ୍ମୀ ଦେବୀ ତାଙ୍କର ଅନ୍ନ ରନ୍ଧନ କରନ୍ତି ଏବଂ କରୁଣାମୟ ପ୍ରଭୁ ତାହା ଭୋଜନ କରି ନିଜ ଭକ୍ତମାନଙ୍କୁ ବିତରଣ କରନ୍ତି । ଏହିରୂପେ ଭକ୍ତମାନେ ଏହି ଦେବଦୁର୍ଲଭ ଅନ୍ନ ଲାଭ କରିପାରନ୍ତି । ମହାପ୍ରଭୁଙ୍କର ଏହି ପ୍ରସାଦର ନାମ ମହାପ୍ରସାଦ । ତାହା ଯେ କେହି ସ୍ପର୍ଶକରୁ ପଛକେ ବା ତାହା ଯେ କୌଣସି ସ୍ଥାନକୁ ନୀତ ହେଉ ପଛକେ ସମସ୍ତେ ନିର୍ବିଘ୍ନରେ ତାହା ଭୋଜନ କରିପାରିବେ । ଅହୋ ! ଶ୍ରୀ ଶ୍ରୀଜଗନ୍ନାଥ ମହାପ୍ରଭୁ ବା ତଦନ୍ନ ମହାପ୍ରସାଦର ମହିମା କଥା ଦୂରେ ଥାଉ ଶ୍ରୀପୁରୁଷୋତ୍ତମ କ୍ଷେତ୍ରର ଏପରି ମହିମା ଯେ ଉହିଁରେ ଗର୍ଦ୍ଦଭ ମଧ୍ୟ ଚତୁର୍ଭୁଜରୂପେ ଦୃଷ୍ଟ ହୁଏ । ଏହି କ୍ଷେତ୍ରରେ ପ୍ରବେଶ କଲେ କାହାର ଆଉ ପୁନର୍ଜନ୍ମ ହୁଏ ନାହିଁ ।

ଶ୍ରୀପୁରୁଷୋତ୍ତମ କ୍ଷେତ୍ରର ଅନ୍ୟ ନାମ ଶ୍ରୀକ୍ଷେତ୍ର, ଶଙ୍ଖକ୍ଷେତ୍ର, ନୀଳାଚଳଧାମ, ପୁରୀ ଓ ଦଶାବତାରକ୍ଷେତ୍ର । ଏହାର ବିସ୍ତାର ପାଞ୍ଚକୋଶ । ଏହି ପାଞ୍ଚକୋଶ ମଧ୍ୟରୁ ତୀର୍ଥରାଜ ସମୁଦ୍ର ତଟବର୍ତ୍ତୀ ଦୁଇକୋଶ ଅତଶୟ ପବିତ୍ର । ଏହା ସୁବର୍ଣ୍ଣ ବାଲୁକାରେ ସମାକୀର୍ଣ୍ଣ ଓ ନୀଳଗିରିଦ୍ୱାରା ସୁଶୋଭିତ । ଏହି କ୍ଷେତ୍ରର ଆକାର ଶଙ୍ଖପରି । ଏହାର ମସ୍ତକ ଦେଶରେ ପଶ୍ଚିମ ସୀମା ଏବଂ ଏହାର ଅଗ୍ରଭାଗରେ ଶ୍ରୀନୀଳକଣ୍ଠ ମହାଦେବ ଅବସ୍ଥିତ । ଏହି କୋଣେକ

ପଇମିଡ଼ ସ୍ଥଳୀ ଅତ୍ୟନ୍ତ ସୁଦୁର୍ଲଭ । ସାକ୍ଷାତ୍ ନାରାୟଣଙ୍କର ଏ କ୍ଷେତ୍ରଟି ଅତ୍ୟନ୍ତ ପାବନ । ଏହି ଶଙ୍ଖର ଉଦର ଦେଶଟି ସମୁଦ୍ର ଜଳରେ ନିମଗ୍ନ । ଏ କ୍ଷେତ୍ରର ସମ୍ପର୍କ ହେତୁ ସମୁଦ୍ର ତୀର୍ଥରାଜ । ଏ କ୍ଷେତ୍ରର ଆକୃତି ଦକ୍ଷିଣାବର୍ତ୍ତି ଶଙ୍ଖତୁଲ୍ୟ । ପରଂବ୍ରହ୍ମ ପରମାତ୍ମା ଶ୍ରୀ ଶ୍ରୀଜଗନ୍ନାଥ ରୁଦ୍ରଙ୍କୁ କ୍ଷେତ୍ରସ୍ୱାମୀରୂପେ ସବୁ ଦିଗରେ ସ୍ଥାପନ କରି ତନ୍ମଧ୍ୟରେ ସ୍ୱୟଂ ଅବସ୍ଥାନ କରିଅଛନ୍ତି—ଯଥା (୧) କପାଳ ମୋଚନ (୨) କ୍ଷେତ୍ରପାଳ (୩) ଯମେଶ୍ୱର (୪) ମାର୍କଣ୍ଡେୟେଶ୍ୱର (୫) ଈଶାନେଶ୍ୱର (୬) ବିଲ୍ୱେଶ୍ୱର (୭), ନୀଳକଣ୍ଠ (୮) ବଟେଶ୍ୱର । ଏହି ଅଷ୍ଟ ଲିଙ୍ଗଙ୍କୁ ଦର୍ଶନ ଓ ପୂଜାକଲେ ମୁକ୍ତି ଲାଭ ହୁଏ ।

ପୂର୍ବରୁ କଥିତ ହୋଇଛି ଯେ ଶ୍ରୀପୁରୁଷୋତ୍ତମ କ୍ଷେତ୍ର ପରଂବ୍ରହ୍ମଙ୍କର କଳେବର । ଏଥିରେ ଅନ୍ତର୍ବେଦୀସ୍ଥାନ ତାହାଙ୍କ ହୃଦୟ । ଏହି ଅନ୍ତର୍ବେଦୀ ରକ୍ଷା ପାଇଁ ଅଷ୍ଟଶକ୍ତି ରହିଅଛନ୍ତି ଯଥା (୧) ବଟମୂଳରେ ମଙ୍ଗଳା (୨) ପଶ୍ଚିମରେ ବିମଳା (୩) ଶଙ୍ଖର ପୃଷ୍ଠଭାଗରେ ସର୍ବ ମଙ୍ଗଳା (୪) ଉତ୍ତର ଦିଗରେ ଅର୍ଦ୍ଧାଶନୀ (ମାଉସୀ ମା) (୫) ଆଲମ୍ବା (ଆଲମ ଚଣ୍ଡୀ) (୬) ଦକ୍ଷିଣ ଦିଗରେ କାଳରାତ୍ରି (୭) ପୂର୍ବରେ ମରୀଚିକା (୮) ଚଣ୍ଡରୂପା (ଚାମୁଣ୍ଡା) । ଏହି ଅଷ୍ଟ ମୂର୍ତ୍ତିଙ୍କର ଦର୍ଶନ ଓ ନାମ କୀର୍ତ୍ତନରେ ସକଳ ପାପ ନାଶ ହୁଏ ଓ ଅଶ୍ୱମେଧ ଯଜ୍ଞର ଫଳ ଲାଭ ହୁଏ ।

ଏହି ଶଙ୍ଖାକାର କ୍ଷେତ୍ରର ନାଭିଦେଶରେ ରୋହିଣୀକୁଣ୍ଡ, ଅକ୍ଷୟ ବଟ ଓ ଦାରୁବ୍ରହ୍ମ ରହିଅଛନ୍ତି ।

କପାଳମୋଚନଙ୍କଠାରୁ ଅର୍ଦ୍ଧାଶନୀଙ୍କ ପର୍ଯ୍ୟନ୍ତ ସ୍ଥାନ ଶଙ୍ଖର ମଧ୍ୟ ଦେଶ ବୋଲି କଥିତ ଅଟେ ।

ପୁରାଣରୁ ଉଦ୍ଧୃତ ଏସବୁ ଉକ୍ତିକୁ ଭାରତର ହିନ୍ଦୁ ନରନାରୀ ବିଶ୍ୱାସର ଗଣ୍ଠିଧନ କରି ମୁକ୍ତିକାମନାରେ ଶ୍ରୀକ୍ଷେତ୍ରକୁ ସ୍ମରଣାତୀତ କାଳରୁ ସହସ୍ର ସହସ୍ର ସଂଖ୍ୟାରେ ନିତ୍ୟ ଧାବମାନ ରହିଅଛନ୍ତି । ଜଡ଼ବାଦୀ ପାଶ୍ଚାତ୍ୟ ସଭ୍ୟତାର ମୁଖ୍ୟ ଆୟୁଧ ବିଜ୍ଞାନର ମାପକାଠିରେ ଏ ବିଶ୍ୱାସର ଭିତ୍ତି ପରୀକ୍ଷଣୀୟ ହୋଇ ନ ପାରେ । ଇତିହାସର ମାନଚିତ୍ରୁ କରଣି ଶ୍ରୀକ୍ଷେତ୍ରର ବାହ୍ୟରୂପକୁ କେତେ କେତେ ବେଳେ ସ୍ପର୍ଶ କରିଅଛି ସତ୍ୟ, କିନ୍ତୁ ଦେବଦେବ ଶ୍ରୀ ଶ୍ରୀଜଗନ୍ନାଥଙ୍କ ଶାଶ୍ୱତ ଆସ୍ଥାନ ରୂପେ ଏହା ଅନାଦି କାଳରୁ ଅବସ୍ଥିତ ରହିଅଛି ଓ ଅନନ୍ତ ଭବିଷ୍ୟତକୁ ମଧ୍ୟ ଅବସ୍ଥିତ ରହିଥିବ । ଭୂମଣ୍ଡଳର ପ୍ରଳୟ ଏହାକୁ ସ୍ପର୍ଶ କରେ ନାହିଁ । ଇତିହାସର ଚକ୍ରବାତ୍ୟା ଓ କଳାପାହାଡ଼ କାଳର ଭ୍ରୂକୁଟୀରେ ବୁଦ୍‌ବୁଦ୍ ପରି ଅଦୃଶ୍ୟ ହୋଇଯାଆନ୍ତି କିନ୍ତୁ ଶାଶ୍ୱତ ଶ୍ରୀ ଶ୍ରୀଜଗନ୍ନାଥଧାମ ଶ୍ରୀ ଶ୍ରୀଜଗନ୍ନାଥଧାମହିଁ ହୋଇ ରହେ । ଅନାଦି ବସ୍ତୁର ଆଦି ଖୋଜିବା ଏବଂ ଅପ୍ରାକୃତ ବସ୍ତୁର ପ୍ରାକୃତ ଇତିହାସ ଖୋଜିବା ବାଲିକାରେ ଦଉଡ଼ି ବଳି ବସିବା ପରି ନିରର୍ଥକ । ଏଥିପାଇଁ ବେଦ ଯେଉଁ ଶ୍ରୌତ ପ୍ରମାଣ ଉପରେ ଜୋର ଦେଇ ଆସିଛି ଧାର୍ମିକ ହିନ୍ଦୁଜନତା ତାକୁହିଁ ସମ୍ବଳ କରି ସନାତନ ଧର୍ମର ଅଟଳ ଭିତ୍ତି ଉପରେ ଦଣ୍ଡାୟମାନ ରହି ବିଶ୍ୱାସର ସନାତନ ସରଣୀରେ ପଥିକ ହୋଇ ଆସିଛି ।

ପରମିତ ସ୍ଥଳୀ ଅତ୍ୟନ୍ତ ସୁଦୁର୍ଲଭ । ସାକ୍ଷାତ୍ ନାରାୟଣଙ୍କର ଏ କ୍ଷେତ୍ରଟି ଅତ୍ୟନ୍ତ ପାବନ । ଏହି ଶଙ୍ଖର ଉଦର ଦେଶଟି ସମୁଦ୍ର ଜଳରେ ନିମଗ୍ନ । ଏ କ୍ଷେତ୍ରର ସମ୍ପର୍କ ହେତୁ ସମୁଦ୍ର ତୀର୍ଥରାଜ । ଏ କ୍ଷେତ୍ରର ଅବୃତ୍ତ ଦକ୍ଷିଣାବର୍ତ୍ତ ଶଙ୍ଖତୁଲ୍ୟ । ପରଂବ୍ରହ୍ମ ପରମାତ୍ମା ଶ୍ରୀ ଶ୍ରୀଜଗନ୍ନାଥ ରୁଦ୍ରଙ୍କୁ କ୍ଷେତ୍ରସ୍ୱାମୀରୂପେ ସବୁ ଦିଗରେ ସ୍ଥାପନ କରି ତନ୍ମଧ୍ୟରେ ସ୍ୱୟଂ ଅବସ୍ଥାନ କରିଅଛନ୍ତି—ଯଥା (୧) କପାଳ ମୋଚନ (୨) କ୍ଷେତ୍ରପାଳ (୩) ଯଜ୍ଞେଶ୍ୱର (୪) ମାର୍କଣ୍ଡେୟେଶ୍ୱର (୫) ଈଶାନେଶ୍ୱର (୬) ବିଲ୍ୱେଶ୍ୱର (୭) ନୀଳକଣ୍ଠ (୮) ବଟେଶ୍ୱର । ଏହି ଅଷ୍ଟ ଲିଙ୍ଗଙ୍କୁ ଦର୍ଶନ ଓ ପୂଜାକଲେ ମୁକ୍ତି ଲାଭ ହୁଏ ।

ପୂର୍ବରୁ କଥିତ ହୋଇଛି ଯେ ଶ୍ରୀପୁରୁଷୋତ୍ତମ କ୍ଷେତ୍ର ପରଂବ୍ରହ୍ମଙ୍କର କଳେବର । ଏଥିରେ ଅନ୍ତର୍ବେଦୀସ୍ଥାନ ତାହାଙ୍କ ହୃଦୟ । ଏହି ଅନ୍ତର୍ବେଦୀ ରକ୍ଷା ପାଇଁ ଅଷ୍ଟଶକ୍ତି ରହିଅଛନ୍ତି ଯଥା (୧) ବଟମୂଳରେ ମଙ୍ଗଳା (୨) ପଶ୍ଚିମରେ ବିମଳା (୩) ଶଙ୍ଖର ପୃଷ୍ଠଭାଗରେ ସର୍ବ ମଙ୍ଗଳା (୪) ଉତ୍ତର ଦିଗରେ ଅର୍ଦ୍ଧାଶନୀ (ମାଉସୀ ମା) (୫) ଆଲମ୍ବା (ଆଲମ ଚଣ୍ଡୀ) (୬) ଦକ୍ଷିଣ ଦିଗରେ କାଳରାତ୍ରି (୭) ପୂର୍ବରେ ମରୀଚିକା (୮) ଚଣ୍ଡରୂପା (ଚାମୁଣ୍ଡା) । ଏହି ଅଷ୍ଟ ମୂର୍ତ୍ତିଙ୍କର ଦର୍ଶନ ଓ ନାମ କୀର୍ତ୍ତନରେ ସକଳ ପାପ ନାଶ ହୁଏ ଓ ଅଶ୍ୱମେଧ ଯଜ୍ଞର ଫଳ ଲାଭ ହୁଏ ।

ଏହି ଶଙ୍ଖାକାର କ୍ଷେତ୍ରର ନାଭିଦେଶରେ ରୋହିଣୀକୁଣ୍ଡ, ଅକ୍ଷୟ ବଟ ଓ ଦାରୁବ୍ରହ୍ମ ରହିଅଛନ୍ତି ।

କପାଳମୋଚନଙ୍କଠାରୁ ଅର୍ଦ୍ଧାଶନୀଙ୍କ ପର୍ଯ୍ୟନ୍ତ ସ୍ଥାନ ଖଣ୍ଡର ମଧ୍ୟ ଦେଶ ବୋଲି କଥିତ ଅଟେ ।

ପୁରାଣରୁ ଜଣାଯାଏ ଏସବୁ ତଥ୍ୟକୁ ଭାରତର ହିନ୍ଦୁ ନରନାରୀ ବିଶ୍ୱାସର ଗଣ୍ଠିଧନ କରି ମୁକ୍ତିକାମନାରେ ଶ୍ରୀକ୍ଷେତ୍ରକୁ ସ୍ମରଣାତୀତ କାଳରୁ ସହସ୍ର ସହସ୍ର ସଂଖ୍ୟାରେ ନିତ୍ୟ ଧାବମାନ ରହିଅଛନ୍ତି । ଜଡ଼ବାଦୀ ପାଶ୍ଚାତ୍ୟ ସଭ୍ୟତାର ମୁଖ୍ୟ ଆୟୁଧ ବିଜ୍ଞାନର ମାପକାଠିରେ ଏ ବିଶ୍ୱାସର ଭିତ୍ତି ପରୀକ୍ଷଣୀୟ ହୋଇ ନ ପାରେ । ଇତିହାସର ମାନଦଣ୍ଡ କରଣି ଶ୍ରୀକ୍ଷେତ୍ରର ବାହ୍ୟରୂପକୁ କେତେ କେତେ ବେଳେ ସ୍ପର୍ଶ କରିଅଛି ସତ୍ୟ, କିନ୍ତୁ ଦେବଦେବ ଶ୍ରୀ ଶ୍ରୀଜଗନ୍ନାଥଙ୍କ ଶାଶ୍ୱତ ଅଧିଷ୍ଠାନ ରୂପେ ଏହା ଅନାଦି କାଳରୁ ଅବସ୍ଥିତ ରହିଅଛି ଓ ଅନନ୍ତ ଭବିଷ୍ୟତକୁ ମଧ୍ୟ ଅବସ୍ଥିତ ରହିଥିବ । ଭୂମଣ୍ଡଳର ପ୍ରଳୟ ଏହାକୁ ସ୍ପର୍ଶ କରେ ନାହିଁ । ଇତିହାସର ରକ୍ତବାହୁ ଓ କଳାପାହାଡ଼ କାଳର ଭ୍ରୂକୁଟୀରେ ବୁଦ୍‌ବୁଦ୍ ପରି ଅଦୃଶ୍ୟ ହୋଇଯା'ନ୍ତି କିନ୍ତୁ ଶାଶ୍ୱତ ଶ୍ରୀ ଶ୍ରୀଜଗନ୍ନାଥଧାମ ଶ୍ରୀ ଶ୍ରୀଜଗନ୍ନାଥଧାମହିଁ ହୋଇ ରହେ । ଅନାଦି ବସ୍ତୁର ଆଦି ଖୋଜିବା ଏବଂ ଅପ୍ରାକୃତ ବସ୍ତୁର ପ୍ରାକୃତ ଇତିହାସ ଖୋଜିବା ବାଲିକାରେ ଦଉଡ଼ି ବଳା ବସିବା ପରି ନିରର୍ଥକ । ଏଥିପାଇଁ ବେଦ ଯେଉଁ ଶ୍ରୌତ ପ୍ରମାଣ ଉପରେ ଜୋର ଦେଇ ଆସିଛି ଧାର୍ମିକ ହିନ୍ଦୁଜନତା ତାକୁହିଁ ସମ୍ବଳ କରି ସନାତନ ଧର୍ମର ଅଟଳ ଭିତ୍ତି ଉପରେ ଦଣ୍ଡାୟମାନ ରହି ବିଶ୍ୱାସର ସନାତନ ସରଣୀରେ ପଥିକ ହୋଇ ଆସିଛି ।

ଗୀତକଳ୍ପତରୁର ପ୍ରଥମଶାଖା ଗୌରଚରଣ

ଶ୍ରୀ ଶ୍ରୀନୀଳମାଧବ
ଓ
ଶ୍ରୀ ଶ୍ରୀଜଗନ୍ନାଥ,
ଶ୍ରୀ ଶ୍ରୀବଳଭଦ୍ର,
ଶ୍ରୀ ଶ୍ରୀସୁଭଦ୍ରା ଓ
ଶ୍ରୀ ଶ୍ରୀ ସୁଦର୍ଶନ

ଗୀତାବଳୀର ମୁଖବନ୍ଧରେ କଥିତ ହୋଇଅଛି ଯେ ସତ୍ୟ, ତ୍ରେତା, ଦ୍ୱାପର ଓ କଳି ଏ ଚତୁରଯୁଗକୁ ଏକତ୍ରେ ଚତୁର୍ଯୁଗୀ କୁହାଯାଏ । ଗୋଟିଏ ଚତୁର୍ଯୁଗୀର ପରିମାଣ ୪୩,୨୦,୦୦୦ ବର୍ଷ ( ଏଥିରୁ କଳିଯୁଗର ପରିମାଣ ୪,୩୨,୦୦୦ ବର୍ଷ, ଦ୍ୱାପର ଯୁଗର ପରିମାଣ ୮,୬୪,୦୦୦ ବର୍ଷ, ତ୍ରେତାଯୁଗର ପରିମାଣ ୧୨,୯୬,୦୦୦ ବର୍ଷ ଓ ସତ୍ୟଯୁଗର ପରିମାଣ ୧୭,୨୮,୦୦୦ ବର୍ଷ ) ବ୍ରହ୍ମାଙ୍କ ଦିନକର ପରିମାଣ ୧୦୦୦ ଚତୁର୍ଯୁଗୀ ଅର୍ଥାତ ୪୩୨,୦୦୦୦୦୦୦ ବର୍ଷ ଓ ବ୍ରହ୍ମାଙ୍କ ରାତ୍ରକର ପରିମାଣ ୧୦୦୦ ଚତୁର୍ଯୁଗୀ ଅର୍ଥାତ୍ ୪୩୨,୦୦୦୦୦୦୦ ବର୍ଷ । ବ୍ରହ୍ମାଙ୍କ ଅହୋରାତ୍ରର ପରିମାଣ ୮୬୪,୦୦୦୦୦୦୦ ବର୍ଷ । ବ୍ରହ୍ମାଙ୍କ ବର୍ଷକର ପରିମାଣ ୮୬୪୦୦୦୦୦୦୦୦×୩୬୦= ୩୧୧୦୪୦୦୦୦୦୦୦୦୦ ବର୍ଷ । ବ୍ରହ୍ମାଙ୍କ ପରମାୟୁ ୧୦୦ ( ଦେବ ) ବର୍ଷ=୩୧୧୦୪୦୦୦୦୦୦୦୦୦ × ୧୦୦= ୩୧୧୦୪୦୦୦୦୦୦୦୦୦୦୦ ( ମାନୁଷ ) ବର୍ଷ ।

ବ୍ରହ୍ମାଙ୍କ ପରମାୟୁର ପ୍ରଥମ ୫୦ ( ଦେବ ) ବର୍ଷକୁ ପ୍ରଥମ ପରାର୍ଦ୍ଧ ଓ ଦ୍ୱିତୀୟ ୫୦ (ଦେବ) ବର୍ଷକୁ ଦ୍ୱିତୀୟ ପରାର୍ଦ୍ଧ କୁହାଯାଏ । ବ୍ରହ୍ମାଙ୍କ ପ୍ରଥମ ପରାର୍ଦ୍ଧ ଗତ

ହୋଇଅଛି । ବର୍ତ୍ତମାନ ବ୍ରହ୍ମାଙ୍କ ପରମାୟୁର ୫୧ (ଦେବ) ବର୍ଷର ୧ମ ଦିନ ।

ବ୍ରହ୍ମାଙ୍କ ପ୍ରଥମ ପରାର୍ଦ୍ଧଠାରୁ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରର ଅଧିଷ୍ଠାତା ଶ୍ରୀ ଶ୍ରୀ ନୀଳମାଧବ ଥିଲେ । ଅବନ୍ତୀରେ ଅବସ୍ଥିତ ଭାରତର ସାର୍ବଭୌମ ନରପତି ଇନ୍ଦ୍ରଦ୍ୟୁମ୍ନ ଅତ୍ୟନ୍ତ ବିଷ୍ଣୁଭକ୍ତପରାୟଣ ଥିଲେ ଏବଂ ଜଣେ ଜଟାଧାରୀ ପରିବ୍ରାଜକ ସନ୍ୟାସୀଙ୍କ ଠାରୁ ଶ୍ରୀ ପୁରୁଷୋତ୍ତମକ୍ଷେତ୍ରରେ ଅବସ୍ଥିତ ଶ୍ରୀ ଶ୍ରୀନୀଳମାଧବଙ୍କର ନିମ୍ନଲିଖିତ ବାର୍ତ୍ତା ପାଇ ସେ ଶ୍ରୀପୁରୁଷୋତ୍ତମକ୍ଷେତ୍ର ଓ ଶ୍ରୀ ଶ୍ରୀନୀଳମାଧବଙ୍କୁ ଠାବ କରିବା ପାଇଁ ତାଙ୍କ ପୁରୋହିତଙ୍କ ଭ୍ରାତା ବିଦ୍ୟାପତିଙ୍କୁ ଉତ୍କଳକୁ ପ୍ରେରଣ କରିଥିଲେ । ଉତ୍କଳରେ ଅବସ୍ଥାନ କରି ଶ୍ରୀ ଶ୍ରୀ ନୀଳମାଧବଙ୍କ ସେବାରେ ଜୀବନ ବ୍ୟତୀତ କରି ଦେବାକୁ ସେ ସିଦ୍ଧାନ୍ତ କରିଥିଲେ ।

ଜଟାଧାରୀ ସନ୍ନ୍ୟାସୀ ମହାରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ କହିଥିଲେ "ଉତ୍କଳ ନାମକ ଗୋଟିଏ ପବିତ୍ର ଦେଶ ଅଛି । ସେଠାରେ ଅନେକ ତୀର୍ଥସ୍ଥାନ ଅଛି । ଦକ୍ଷିଣ ସମୁଦ୍ର ତଟରେ ଶ୍ରୀପୁରୁଷୋତ୍ତମ ନାମକ କ୍ଷେତ୍ରରେ ନୀଳଗିରି ବୋଲି ଗୋଟିଏ ପର୍ବତ ଅଛି । ତାହାର ଚତୁର୍ଦ୍ଦିଗ ବନଦ୍ୱାରା ଆଚ୍ଛାଦିତ ଏବଂ ତନ୍ମଧ୍ୟରେ ଏକକୋଶ ଆୟତନର ଗୋଟିଏ କଳ୍ପବଟ ଅଛି । ଉକ୍ତ ବଟର ଛାୟା ସ୍ପର୍ଶ କଲେ ବ୍ରହ୍ମହତ୍ୟାଦି ସମସ୍ତ ପାପ ବିନଷ୍ଟ ହୁଏ । ତହିଁର ପଶ୍ଚିମ ଦିଗରେ ରୋହିଣୀ ନାମକ ଗୋଟିଏ କୁଣ୍ଡ ଅଛି—ତାହା

ପବିତ୍ର ଜଳରେ ପୂର୍ଣ୍ଣ ଓ ସେ ଜଳ ସ୍ପର୍ଶକଲା ମାତ୍ରେ ମୁକ୍ତି ଲାଭ ହୁଏ । ଏହି କୁଣ୍ଡର ପୂର୍ବ ତଟରେ ନୀଳକାନ୍ତମଣି ନିର୍ମିତ ଭଗବାନ ବିଷ୍ଣୁଙ୍କର ନୀଳମାଧବ ନାମଧେୟ ମୂର୍ତ୍ତି ବିରାଜିତ । ସେ ସାକ୍ଷାତ ମୁକ୍ତିଦାୟକ । ଯେଉଁ ବ୍ୟକ୍ତି ଏହି କୁଣ୍ଡରେ ସ୍ନାନ କରି ଶ୍ରୀପୁରୁଷୋତ୍ତମଙ୍କୁ ଅର୍ଥାତ ନୀଳମାଧବଙ୍କୁ ଦର୍ଶନ କରେ ସେ ସହସ୍ର ଅଶ୍ୱମେଧଯଜ୍ଞର ଫଳଭାଗୀ ହୋଇ ମୁକ୍ତି ଲାଭ କରେ । ତହିଁର ପଶ୍ଚିମକୁ ଶବରଦୀପକ ବୋଲି ଗୋଟିଏ ସ୍ଥାନଅଛି—ତାହା ଶବରମାନଙ୍କ ଗୃହରେ ପରିପୂର୍ଣ୍ଣ । ସେହି ସ୍ଥାନରୁ ଶ୍ରୀ ଶ୍ରୀନୀଳମାଧବଙ୍କ ମନ୍ଦିରକୁ ଯିବାକୁ ହୁଏ । ସେଥିପାଇଁ ଗୋଟିଏ ମାତ୍ର ଏକପଦୀ ମାର୍ଗ ଅଛି । ସେ ସ୍ଥାନରେ ଶଙ୍ଖ ଚକ୍ର ଗଦା ପଦ୍ମ ଧାରଣ କରି ସାକ୍ଷାତ ଶ୍ରୀ ଶ୍ରୀଜଗନ୍ନାଥ ଶ୍ରୀ ଶ୍ରୀନୀଳମାଧବ ରୂପରେ ବିରାଜିତ ଅଛନ୍ତି ।''

ମହାରାଜା ଇନ୍ଦ୍ରଦ୍ୟୁମ୍ନଙ୍କଦ୍ୱାରା ଉତ୍କଳକୁ ପ୍ରେରିତ ହୋଇ ବିଦ୍ୟାପତି ଶବରଦୀପକର ଅଧିପତି ଶବରରାଜ ବିଶ୍ୱାବସୁଙ୍କ ସହିତ ସଖ୍ୟ ସ୍ଥାପନ କଲେ ଓ ତାଙ୍କଠାରୁ ଜଟାଧାରୀ ସନ୍ନ୍ୟାସୀଙ୍କ କଥିତ ସମସ୍ତ ତଥ୍ୟର ସାକ୍ଷାତ ଗୂଢ଼ ପ୍ରମାଣ ପାଇ କୃତକୃତ୍ୟ ହେଲେ । ସେ ଅବନ୍ତୀକୁ ହର୍ଷୋତ୍ଫୁଲ୍ଲ ହୃଦୟରେ ଫେରିଆସି ମହାରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ଆଗରେ ଶ୍ରୀ ଶ୍ରୀନୀଳମାଧବଙ୍କର ନିମ୍ନଲିଖିତ ବର୍ଣ୍ଣନା ଦେଲେ "ପୂର୍ବ ଦିଗରେ ବେଦୀର ମଧ୍ୟ ଭାଗରେ ଶଙ୍ଖଚକ୍ର ଗଦା ପଦ୍ମଧାରୀ ପ୍ରଭୁ ବିରାଜିତ ଅଛନ୍ତି । ତାଙ୍କର ମୂର୍ତ୍ତି ଇନ୍ଦ୍ରନୀଳମଣିନିର୍ମିତ । ମୂର୍ତ୍ତିର ଉଚ୍ଚତାର ପରିମାଣ

୮୧ ଅଙ୍ଗୁଳି । ଏହି ମୂର୍ତ୍ତି ସ୍ୱର୍ଣ୍ଣପଦ୍ମ ଉପରେ ଅବସ୍ଥିତ ଅଛନ୍ତି । ତାହାଙ୍କ ଲଲାଟ, ନୟନଯୁଗଳ ଓ ସୁଧାମୟ ମୁଖ ଦର୍ଶନ କଲେ ଚିତ୍ତର ଶାନ୍ତିହୁଏ । ଏହି ଇନ୍ଦ୍ରମଣିମୟ ମୂର୍ତ୍ତି ମାଧବଙ୍କ ନାସିକାଦ୍ୱୟ ତିଳଫୁଲ ପରି ସୁଶୋଭିତ । ତାଙ୍କ ଶରୀର ପାଷାଣ ନିର୍ମିତ ହେଲେ ମଧ୍ୟ ଅଧର ହାସ୍ୟମୟ, ଗଣ୍ଡଯୁଗଳ ଦର୍ପୋଜ୍ଜ୍ୱଳ, ଚିବୁକ ଅତୀବ ମନୋହର, ଓଷ୍ଠର ଦୁଇପ୍ରାନ୍ତ ଭାଗର ଗଠନ ଅପୂର୍ବ ଓ ଗଣ୍ଡଦ୍ୱୟର ନିମ୍ନଭାଗ ହାସ୍ୟୋଦ୍ଦୀପକ ରୂପେ ଶୋଭା ପାଉଅଛି । ତାହାଙ୍କ କର୍ଣ୍ଣଯୁଗଳ ମକରକୁଣ୍ଡଳ ଦ୍ୱାରା ସୁଶୋଭିତ । କଣ୍ଠଦେଶ ଅତ୍ୟନ୍ତ ମନୋହର ଓ ଭୂଷଣରେ ପରିପୂର୍ଣ୍ଣ । ସେ ଗୋଟିଏ ହସ୍ତରେ ଦକ୍ଷିଣାବର୍ତ୍ତ ଶଙ୍ଖ ଧରିଅଛନ୍ତି । ତାହାଙ୍କ ଚତୁର୍ବାହୁ ଆଜାନୁଲମ୍ବିତ, ସ୍କନ୍ଧଯୁଗଳ ଉଚ୍ଚ ଓ ବିସ୍ତୃତ । ବକ୍ଷସ୍ଥଳରେ ମନୋହର ସୁନ୍ଦର ହାର, ଗଳାରେ ଦିବ୍ୟ କୌସ୍ତୁଭମଣି, ସେଥିରେ ଚତୁର୍ଦ୍ଦଶ ଜଗତର ମୂର୍ତ୍ତି ପ୍ରତିବିମ୍ବିତ ହେଉଥିବା ଦେଖାଯାଏ । ତାହାଙ୍କ ଗଭୀର ନାଭିହ୍ରଦରେ ସୂକ୍ଷ୍ମ ରୋମାବଳୀ ସୁଶୋଭିତ । କଣ୍ଠାଲମ୍ବିତ ହାର ତ୍ରିବଳୀର ମଧ୍ୟଭାଗ ସ୍ପର୍ଶକରୁଛି । ପ୍ରଭୁ ନୀଳମାଧବ ଦେବ ସ୍ଥାଣୁପରି ଅଚଳ-ଭାବରେ ବିରାଜିତ ଅଛନ୍ତି । ପୀତବସନ ପରିଧାନ କରି ଅଛନ୍ତି ଓ ମୁକ୍ତାମାଳା ଜଘନ ପର୍ଯ୍ୟନ୍ତ ବିଲମ୍ବିତ ହୋଇଅଛି । ମନୋହର ଜାନୁଯୁଗଳ ସ୍ତମ୍ଭପରି ସୁଶୋଭିତ ହୋଇଅଛି । ପ୍ରଭୁଙ୍କ ଚରଣଦ୍ୱୟ ଆନୁପୂର୍ବିକ ଭାବରେ ଗୋଲାକାର । ଜାନୁଯୁଗଳଠାରୁ ପାଦପର୍ଯ୍ୟନ୍ତ ଲମ୍ବିତ ମାଳାରେ

ଓ ରତ୍ନବଳୟ ଦ୍ୱାରା ଅଦ୍ଭୁତ ଶୋଭା ଧାରଣ କରିଅଛୁ । ହାରକେୟୁର, କଙ୍କଣମୁକୁଟ ପ୍ରଭୃତି ଆଭରଣରେ ଗାତ୍ର ଶୋଭିତ ହୋଇଅଛୁ । ଚତୁର୍ଦ୍ଦିଗ ଆଲୋକିତ କରି ପ୍ରଭୁ ନୀଳାଚଳ ଶିଖରରେ ବିରାଜିତ ଅଛନ୍ତି । ତାହାଙ୍କୁ ଦର୍ଶନ କରି ଭକ୍ତିପୂର୍ବକ ପ୍ରଣାମ କଲେ ଜୀବ ଦେହବନ୍ଧନରୁ ମୁକ୍ତ ହୁଏ । ପ୍ରଭୁଙ୍କ ବାମପାର୍ଶ୍ୱରେ ଲକ୍ଷ୍ମୀଦେବୀ ପଦ୍ମ ହସ୍ତରେ ପ୍ରଭୁଙ୍କୁ ଆଲିଙ୍ଗନ କରିଅଛନ୍ତି । ନିଖିଳ ଲାବଣ୍ୟର ଆଧାର ମହାଲକ୍ଷ୍ମୀ ଅଶେଷ ଅଳଙ୍କାରରେ ଭୂଷିତା ହୋଇ ପ୍ରଭୁଙ୍କ ମୁଖାରବିନ୍ଦ ପ୍ରତି ଦୃଷ୍ଟିପାତ ସହ ବୀଣାବାଦନ କରୁଅଛନ୍ତି । ଜଗତର ମାତାପିତା ପ୍ରଭୁ ଜଗନ୍ନାଥ ଓ ଲକ୍ଷ୍ମୀଦେବୀ ସେହି ନୀଳାଚଳ ଧାମରେ ରହି ସହାସ୍ୟ ମୁଖରେ ଦର୍ଶକମାନଙ୍କୁ ଅନୁଗୃହୀତ କରୁଥିବା ପରି ଦେଖିଲି । ତାହାଙ୍କ ପଶ୍ଚାଦ୍‌ଭାଗରେ ଅନନ୍ତ ନାଗ ନିଜ ଫଣାଦ୍ୱାରା ଛତ୍ରାକାର ପରି ରହିଅଛନ୍ତି । ଭଗବାନଙ୍କ ସମ୍ମୁଖରେ ଭକ୍ତ ଗରୁଡ଼ କୃତାଞ୍ଜଳିପୁଟରେ ଦଣ୍ଡାୟମାନ ଅଛନ୍ତି ॥”

**ଶ୍ରୀ ଶ୍ରୀଜଗନ୍ନାଥ-ଦେବଙ୍କ ଆବିର୍ଭାବ ଓ ପ୍ରତିଷ୍ଠା**

କିନ୍ତୁ ମହାପ୍ରଭୁ ଶ୍ରୀ ଶ୍ରୀପୁରୁଷୋତ୍ତମଙ୍କର ଏ ରୂପ ବ୍ରହ୍ମାଙ୍କ ଦ୍ୱିତୀୟ ପରାର୍ଦ୍ଧ ଉପସ୍ଥିତ ହେବାରୁ ବିଦ୍ୟାପତିଙ୍କର ନୀଳାଚଳ ଧାମରୁ ବିଦାୟ ନେବାପରେ, ଅନ୍ତର୍ହିତ ହେଲେ; ସ୍ୱର୍ଣ୍ଣ-ବାଲୁକାପ୍ରୋଥିତ ହୋଇ ସେ ପାତାଳପୁରକୁ

ଗମନକଲେ । ମହାରାଜା ଇନ୍ଦ୍ରଦ୍ୟୁମ୍ନ ଶ୍ରୀ ଶ୍ରୀନୀଳମାଧବଙ୍କୁ ଦର୍ଶନ କରିବାର ସୌଭାଗ୍ୟରୁ ବଞ୍ଚିତ ହୋଇ ତାଙ୍କ ବିରହରେ ନୀଳାଚଳରେ ଦେହତ୍ୟାଗ କରିବାର ସଂକଳ୍ପ କଲେ । ତ୍ରିକାଳଦର୍ଶୀ ଦେବର୍ଷି ନାରଦ ଇନ୍ଦ୍ରଦ୍ୟୁମ୍ନଙ୍କ ସଙ୍ଗରେ ଥିଲେ । ସେ ତାଙ୍କୁ ସାନ୍ତ୍ୱନା ଦେଇ କହିଲେ ଯେ ପରଂବ୍ରହ୍ମ ଶ୍ରୀ ଶ୍ରୀପୁରୁଷୋତ୍ତମଙ୍କ ଇଚ୍ଛା ନିରଙ୍କୁଶ । ବ୍ରହ୍ମାଙ୍କ ଦ୍ୱିତୀୟ ପରାର୍ଦ୍ଧରେ ମର୍ତ୍ତ୍ୟଲୋକରେ ଚର୍ମଚକ୍ଷୁରେ ତାଙ୍କ ନୀଳମାଧବ ମୂର୍ତ୍ତି କେହି ଦେଖିବେ ନାହିଁ । ଏହା ହିଁ ତାଙ୍କର ବିଧାନ; କିନ୍ତୁ ତୁମ୍ଭ ପ୍ରତି ତାଙ୍କର ଅପାର କରୁଣା । ଏ ଦ୍ୱିତୀୟପରାର୍ଦ୍ଧଯାକ ସେ ଶ୍ରୀ ଶ୍ରୀଜଗନ୍ନାଥ, ଶ୍ରୀ ଶ୍ରୀବଳଭଦ୍ର ଶ୍ରୀ ଶ୍ରୀସୁଭଦ୍ରା ଓ ଶ୍ରୀ ଶ୍ରୀସୁଦର୍ଶନ, ଏହି ଚାରି ଦାରୁମୟ ମୂର୍ତ୍ତି ଧରି ନୀଳାଚଳରେ ବିଦ୍ୟମାନ ରହିବେ । ତୁମ୍ଭର ସହାୟ ହୋଇ ନିଜେ ବ୍ରହ୍ମା ଆସି ଏ ଧାମରେ ତାଙ୍କୁ ପ୍ରତିଷ୍ଠା କରିଯିବେ । ତୁମ୍ଭେ ଏହି ଶଙ୍ଖକ୍ଷେତ୍ରର ଅଗ୍ରଭାଗରେ ଅବସ୍ଥିତ ଶ୍ରୀ ଶ୍ରୀନୀଳକଣ୍ଠେଶ୍ୱରଙ୍କ ନିକଟସ୍ଥ ସମତଳ ଭୂମିରେ ସହସ୍ର ଅଶ୍ୱମେଧଯଜ୍ଞ ଅନୁଷ୍ଠାନ କର । ଶ୍ରୀ ଶ୍ରୀନରସିଂହ ଦେବଙ୍କୁ ଆଗ ପ୍ରତିଷ୍ଠାକଲେ ଶ୍ରୀ ଶ୍ରୀନୀଳକଣ୍ଠ ଓ ସେ ତୁମ୍ଭର ସମସ୍ତ ବିଘ୍ନ ବିନାଶ କରିବେ । ମହାରାଜା ଇନ୍ଦ୍ରଦ୍ୟୁମ୍ନ ଦେବର୍ଷିଙ୍କ ଉପଦେଶ କ୍ରମେ ସହସ୍ର ଅଶ୍ୱମେଧ ଯଜ୍ଞ ଅନୁଷ୍ଠାନ କଲେ ।

ଶେଷ ସାହସ୍ରିକ ଅଶ୍ୱମେଧଯଜ୍ଞ ସମାପ୍ତିର ସପ୍ତମ ଦିବସରେ ପରଂବ୍ରହ୍ମ ଶ୍ରୀ ବିଷ୍ଣୁଙ୍କ ପରମାନୁଗ୍ରହର ଦିବ୍ୟ ସୂଚନା ରୂପେ ମହାରାଜା ଇନ୍ଦ୍ରଦ୍ୟୁମ୍ନ ସ୍ୱପ୍ନରେ ଦେଖିଲେ

ସ୍ଫଟିକ ନିର୍ମିତ ଶ୍ୱେତଦ୍ୱୀପ, ତାହାର ଚତୁର୍ଦ୍ଦିଗରେ ଜୀବଗଣ ଅବସ୍ଥିତ ଅଛନ୍ତି । ସେଠାରେ ବୃହତ୍ କଳ୍ପଦ୍ରୁମ ପୁଷ୍ପର ସୁଗନ୍ଧ ଅନୁଭୂତ ହେଉଅଛି । ଦ୍ୱୀପର ମଧ୍ୟଭାଗରେ ଦିବ୍ୟମଣି ନିର୍ମିତ ସୂର୍ଯ୍ୟକିରଣ ସଦୃଶ ଆଭାଯୁକ୍ତ ରତ୍ନସିଂହାସନରେ ଶଙ୍ଖଚକ୍ରଗଦାପଦ୍ମଧାରୀ ବିଷ୍ଣୁ ବିରାଜମାନ । ଦକ୍ଷିଣରେ ଧରଣୀଧର ଅନନ୍ତଦେବ, ବାମରେ ସୁଲକ୍ଷଣୀ ଲକ୍ଷ୍ମୀ ଓ ଅଗ୍ରଭାଗରେ ବ୍ରହ୍ମା କୃତାଞ୍ଜଳି ପୁଟରେ ଅବସ୍ଥିତ । ସନକ ସନନ୍ଦାଦି ମୁନୀନ୍ଦ୍ରମାନେ ସ୍ତବ କରୁଅଛନ୍ତି । ପରଂବ୍ରହ୍ମ ବିଷ୍ଣୁଙ୍କୁ ଏପରି ଅବସ୍ଥାରେ ଦର୍ଶନ କରି ରାଜା ବିନମ୍ର ହୋଇ କୃପାଭିକ୍ଷା କଲେ ଏବଂ ତତ୍ପରେ ଦିନେ ମହୋଦଧିରେ ରକ୍ତବର୍ଣ୍ଣ ଓ ଶଙ୍ଖଚକ୍ରଚିହ୍ନଦ୍ୱାରା ଶୋଭିତ ଗୋଟିଏ ମହାବୃକ୍ଷ ଭାସିଆସି କୂଳରେ ଲାଗିଲା । ତ୍ରିକାଳଦର୍ଶୀ ଦେବର୍ଷି ନାରଦ ମହାପ୍ରଭୁଙ୍କୁ ଚାହିଁ କହିଲେ ଯେ ଭକ୍ତବତ୍ସଳ ଭଗବାନ ସ୍ଥାଣୁରୂପରେ ପୃଥିବୀରେ ଅବତୀର୍ଣ୍ଣ ହେବେ । ଏ ମହାବୃକ୍ଷକୁ ସମ୍ୟକ୍ପୂଜା ସହିତ ବେଦୀ ଉପରେ ସ୍ଥାପନ କରାଯାଉ ।

ମହାରାଜା ଇନ୍ଦ୍ରଦ୍ୟୁମ୍ନ ସ୍ୱପ୍ନାବସ୍ଥାରେ ଶ୍ରୀ ଶ୍ରୀଜଗନ୍ନାଥଙ୍କର ଯେଉଁ ଚତୁର୍ଭୁଜ ମୂର୍ତ୍ତି ଦେଖିଥିଲେ ସମ୍ପ୍ରତି ଚତୁର୍ଭୁଜସ୍ୱରୂପ ଚତୁଃଶାଖାସମ୍ପନ୍ନ ବୃକ୍ଷରାଜଙ୍କୁ ଦର୍ଶନକରି ତାଙ୍କର ଶ୍ରୀ ଶ୍ରୀନୀଳମାଧବଙ୍କର ଅଦର୍ଶନଜନିତ ଦୁଃଖ ତିରୋହିତ ହେଲା । ସେ ଆନନ୍ଦରେ ତରୁବରଙ୍କୁ ପ୍ରଣାମ-କରି ତାଙ୍କୁ ବ୍ରାହ୍ମଣମାନଙ୍କ ଦ୍ୱାରା ଆନୟନ କଲେ । ଯେଉଁ

ଗ୍ଳେକଦ୍ୱାର ଙ୍କ ପ୍ରକାରେ ବର୍ତ୍ତମାନ ପ୍ରତିମା ଗଠନ ହେଲା ଗଲେ ଭଗବାନ ପରଂବ୍ରହ୍ମଙ୍କ ରୂପ ପ୍ରକଟ ହେବ ମହାରାଜା ଇନ୍ଦ୍ରଦ୍ୟୁମ୍ନ ଦେବର୍ଷି ନାରଦଙ୍କ ସଙ୍ଗେ କଥୋପକଥନ କରୁ କରୁ ହଠାତ୍ ସକଳ ସଂଶୟ ମୋଚନ ପୂର୍ବକ ନିମ୍ନ ଲିଖିତ ଆକାଶବାଣୀ ହେଲା ।

ଅପୌରୁଷେୟୋ ଭଗବାନ୍ ବଗ୍ଧୁରପଥମାସ୍ଥିତଃ
ସୁଗୁପ୍ତାୟାଂ ମହାବେଦ୍ୟାଂ ସୋଽବତଣ୍ଷ୍ୟତି
ପ୍ରଚ୍ଛାଦ୍ୟତାଂ ଦିନାନ୍ୟେବ ଯାବତ ପଞ୍ଚଦଶାନିବୈ
ଉପସ୍ଥିତୋଽୟଂ ଯୋ ବୃଦ୍ଧଃ ଶସ୍ତ୍ରପାଣିସ୍ତୁ ବର୍ଦ୍ଧକୀ
ଏନ ମନ୍ତଂ ପ୍ରବଶ୍ୟୈବ ଦ୍ୱାରଂ ବଧ୍ନନ୍ତୁ ଯନ୍ତ୍ରତଃ
ବହିର୍ବାଦ୍ୟାନି କୁର୍ବନ୍ତୁ ଯାବତ୍ତଦ୍ ଘଟନା ଭବେତ୍ ।

ଅର୍ଥାତ—ଅପୌରୁଷେୟ ଭଗବାନ ସ୍ୱୟଂ ନିଜ ମୂର୍ତ୍ତିର ବିଷୟ ବଗ୍ଧୁରକର ଏହି ଆବରଣ ବେଷ୍ଟିତ ମହାବେଦୀରେ ଅବତୀର୍ଣ୍ଣ ହେବେ । ତୁମ୍ଭେମାନେ ପଞ୍ଚଦଶ ଦିବସ ପର୍ଯ୍ୟନ୍ତ ବେଦୀଗୃହକୁ ଆଚ୍ଛାଦିତ କରିରଖିବ । ଯେଉଁ ବୃଦ୍ଧ ବର୍ଦ୍ଧକୀ (ବଢ଼େଇ) ହାତ ହତିଆର ସହ ଉପସ୍ଥିତ ହୋଇଅଛନ୍ତି ତାହାଙ୍କୁ ବେଦୀଗୃହ ମଧ୍ୟକୁ ନେଇ ଗୃହର ଦ୍ୱାର ଯନ୍ତ୍ର ସହକାରେ ବନ୍ଦକରିବ । କାର୍ଯ୍ୟ ସମ୍ପନ୍ନ ହେବାପର୍ଯ୍ୟନ୍ତ ନିବିଡ଼ର ବହିର୍ଭାଗରେ ନାନାବିଧ ବାଦ୍ୟ ବଜାଇବ ।

ଏହାପରେ ବେଦୀଗୃହ ଚତୁର୍ଦ୍ଦିଗରେ ନାନାବିଧ ବାଦ୍ୟ ବଜାଗଲା । କିଛିଦିନପରେ ଅପୂର୍ବ ଦିବ୍ୟଗନ୍ଧ ଅନୁଭୂତ ହେଲା । ସ୍ୱର୍ଗୀୟ ସଙ୍ଗୀତ ଓ ଅନ୍ୟାନ୍ୟ ଛନ୍ଦୋଲହର

ଗୀତଧ୍ୱନି ମଧ୍ୟ ଶୁଣାଗଲା । ଆକାଶଗଙ୍ଗାର ସୂକ୍ଷ୍ମ ସୂକ୍ଷ୍ମ ବିନ୍ଦୁ ରୂପରେ ଜଳବୃଷ୍ଟି ହେଲା । ଅଶ୍ୱମେଧଯଜ୍ଞ ଉପଲକ୍ଷରେ ଯେଉଁ ଦେବତାମାନେ ଆସିଥିଲେ ସେମାନେ ହରିଙ୍କ ଆବିର୍ଭାବ ଦେଖି ଉପାସନା କଲେ । କ୍ରମେ କ୍ରମେ ପଞ୍ଚଦଶ ଦିବସ ଅତୀତ ହୁଅନ୍ତେ ପୂର୍ବ କଥିତ ଅନୁସାରେ ସ୍ୱୟଂ ଶ୍ରୀ ଶ୍ରୀଜଗନ୍ନାଥଦେବ ବୃଦ୍ଧ ବଢ଼େଇ ରୂପରେ ନିଜ ମୂର୍ତ୍ତି ଗଠନ କଲେ । ଶ୍ରୀ ଶ୍ରୀଜଗନ୍ନାଥ, ଶ୍ରୀ ଶ୍ରୀବଳଭଦ୍ର, ଶ୍ରୀ ଶ୍ରୀସୁଭଦ୍ରା ଓ ଶ୍ରୀ ଶ୍ରୀସୁଦର୍ଶନ ଚକ୍ର ଦିବ୍ୟସିଂହାସନରେ ଆବିର୍ଭୂତ ହୁଅନ୍ତେ ସ୍ୱୟଂ ପରଂବ୍ରହ୍ମ ଉକ୍ତ ମୂର୍ତ୍ତିଚତୁଷ୍ଟୟରେ ପ୍ରକାଶିତ ହେଲେ । ମହାରାଜା ଇନ୍ଦ୍ରଦ୍ୟୁମ୍ନ ଶ୍ରୀ ଶ୍ରୀଜଗନ୍ନାଥ, ଶ୍ରୀ ଶ୍ରୀବଳଭଦ୍ର, ଶ୍ରୀ ଶ୍ରୀସୁଭଦ୍ରା ଓ ଶ୍ରୀ ଶ୍ରୀସୁଦର୍ଶନଙ୍କୁ ପାଟବସ୍ତ୍ର ଓ ନାନାଅଳଙ୍କାରରେ ସୁଦୃଢ଼ ଆବରଣ କରାଇ ମୂର୍ତ୍ତି ଚତୁଷ୍ଟୟଙ୍କୁ ସୁବର୍ଣ୍ଣ ଶିଳାକାର ଦ୍ୱାରା ସୁରକ୍ଷିତ କରାଇଲେ । ପରେ ମହାବେଦୀକୁ ଯାଇ ତାର ଦ୍ୱାର ଉନ୍ମୁକ୍ତ କଲେ ।

ରତ୍ନସିଂହାସନରେ ଶ୍ରୀ ଶ୍ରୀଜଗନ୍ନାଥ, ଶ୍ରୀ ଶ୍ରୀବଳଭଦ୍ର, ଶ୍ରୀ ଶ୍ରୀସୁଭଦ୍ରା ଓ ଶ୍ରୀ ଶ୍ରୀସୁଦର୍ଶନ ବିରାଜିତ ଥିବାର ସମସ୍ତେ ଦେଖିଲେ । ଶ୍ରୀ ଶ୍ରୀଜଗନ୍ନାଥଙ୍କ ବକ୍ଷସ୍ଥଳ ଉନ୍ନତ ଓ ଦିବ୍ୟ ଅଳଙ୍କାର ଦ୍ୱାରା ଭୂଷିତ ହୋଇଅଛି, ମୁଖମଣ୍ଡଳ ଈଷତ-ହାସ୍ୟ ଧାରଣ କରିଅଛି । ନୟନଦ୍ୱୟ ପ୍ରଫୁଲ୍ଲ ଓ ଶ୍ୱେତପଦ୍ମ ତୁଲ୍ୟ ଶୋଭା ପାଉଅଛି । ଅଧର ଯୁଗଳ ହାସ୍ୟର ରାଗରେ ରକ୍ତିମ ହୋଇଅଛି । ଦେହ ନୀଳମେଘ ସଦୃଶ ଦେଖା ଯାଉଅଛି । ଶ୍ରୀ ଶ୍ରୀବଳଭଦ୍ରଙ୍କ ମୁଖପଦ୍ମ ଅଟ୍ଟହାସଦ୍ୱାରା ଶୋଭିତ ଓ ନାଗରାଜାଙ୍କ ଫଣାମାନ ଛତ୍ରପରି ରହିଅଛି ।

ବକ୍ଷସ୍ଥଳ କୋମଳ ଓ ଉନ୍ନତ, ପୃଷ୍ଠଦେଶ କଛପ ଅବନତ । ଦେହର ଉପର ଭାଗ କୁଣ୍ଡଳାକାର । ଗଳଦେଶରେ ବନମାଳା ଓ ହସ୍ତରେ ହଳ, ଚକ୍ର, ପଦ୍ମ ଓ ମୂଷଳ ଶୋଭା ପାଉଅଛି । ସେ ହାର କୁଣ୍ଡଳ କେୟୂର କିରୀଟ ଓ ମୁକୁଟ ଅଳଙ୍କାର ଧାରଣ କରିଛନ୍ତି । ଶ୍ରୀ ଶ୍ରୀଜଗନ୍ନାଥ ଓ ଶ୍ରୀ ଶ୍ରୀବଳଭଦ୍ରଙ୍କ ମଧ୍ୟ ଦେଶରେ ଭଦ୍ରରୂପିଣୀ ଶ୍ରୀ ଶ୍ରୀସୁଭଦ୍ରା ବସିଅଛନ୍ତି । ମୁଖମଣ୍ଡଳ ପଦ୍ମପରି ବିକଶିତ, ହସ୍ତଦ୍ୱୟରେ ବରପଦ୍ମ ଓ ଅଭୟ ଧାରଣ କରିଅଛନ୍ତି । ସେ ସାକ୍ଷାତ ମହାଲକ୍ଷ୍ମୀ ଅଟନ୍ତି । ଶ୍ରୀ ଶ୍ରୀଜଗନ୍ନାଥଙ୍କ ବାମ ପାର୍ଶ୍ୱରେ ଦାରୁର ଶାଖାଗ୍ର ନିର୍ମିତ ଚକ୍ର ନବୋଦିତ ସୂର୍ଯ୍ୟପରି ତୀକ୍ଷ୍ଣକାନ୍ତି ଦେଖା ଯାଉଛନ୍ତି । ଇନ୍ଦ୍ରଦ୍ୟୁମ୍ନ ଏହି ଦିବ୍ୟ ମୂର୍ତ୍ତିମାନଙ୍କୁ ଦର୍ଶନକରି ଆନନ୍ଦ ସାଗରରେ ନିମଗ୍ନ ହେଲେ ଏବଂ କୃତାଞ୍ଜଳି ପୂର୍ବକରେ ସମ୍ମୁଖରେ ଦଣ୍ଡାୟମାନ ହେଲେ । ମହର୍ଷି ନାରଦ ମହାରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ କହିଲେ "ତୁମ୍ଭେ ଜଗତରେ ଏକମାତ୍ର ଭାଗ୍ୟବାନ୍ । ଯୋଗୀମାନେ ଯାହାଙ୍କ ଦର୍ଶନପାଇଁ ନିଜେ ସଂଯତ ହୋଇ ଯୋଗାଭ୍ୟାସ କରନ୍ତି ସେହି ଭଗବାନ ସାକ୍ଷାତ ଦାରୁରୂପରେ ତୁମ୍ଭଙ୍କୁ ଦର୍ଶନ ଦେଲେ ।"

ଏହାପରେ ଶ୍ରୀମନ୍ଦିର ନିର୍ମାଣପାଇଁ ମହାରାଜ ଇନ୍ଦ୍ରଦ୍ୟୁମ୍ନ ପ୍ରଚୁର ଅର୍ଥ ବ୍ୟୟକରିଥିଲେ ।

**ଶ୍ରୀ ଶ୍ରୀଜଗନ୍ନାଥ ମନ୍ଦିର**

ନାନା ଦେଶରୁ ସମ୍ପତ୍ତିଶାଳୀ ରାଜାମାନଙ୍କୁ ଆହ୍ୱାନ କରି ସେ କହିଲେ ଯେ ପୂର୍ବକାର ହାତ ଅଂଶ୍ୱାଦଶ ଦ୍ୱୀପରୁ ସେ ଯେଉଁ ଅର୍ଥ ଉପାର୍ଜନ କରି

ଅତନ୍ତ୍ର ତାହା ଏହ ପ୍ରାସାଦନିର୍ମାଣ କାର୍ଯ୍ୟରେ ବ୍ୟୟିତ ନହେବ । ହରିଙ୍କ ପ୍ରିୟତମା ମହାଲକ୍ଷ୍ମୀଙ୍କ ଅନୁଗ୍ରହରୁ ଯେଉଁ ଧନ ସମ୍ପତ୍ତି ହୋଇଅଛି ତାହା ତାଙ୍କ ପ୍ରାସାଦ ନିର୍ମାଣ କାର୍ଯ୍ୟରେ ବ୍ୟୟ କରିପାରିଲେ ସେ କୃତାର୍ଥ ହେବେ । ସେତେବେଳେ ଭାରତ ବର୍ଷରେ ଯେଉଁ ରାଜାମାନେ ଥିଲେ ସେ ସମସ୍ତଙ୍କୁ ଇନ୍ଦ୍ରଦ୍ୟୁମ୍ନଙ୍କ ଏହ ପ୍ରାସାଦ ନିର୍ମାଣ କାର୍ଯ୍ୟର ତତ୍ତ୍ୱ ନେବା ପାଇଁ ନିଯୁକ୍ତ କରିଥିଲେ ଏବଂ ସେମାନେ ପରସ୍ପର ସହିତ ମିଳିତହୋଇ ସମସ୍ତ କାର୍ଯ୍ୟ ସୁଚାରୁରୂପେ ସମ୍ପନ୍ନ କରିଥିଲେ । ମନ୍ଦିର ସ୍ଥାନେ ସ୍ଥାନେ କାଞ୍ଚନ ଓ ରତ୍ନରାଜି ଥିବାରୁ ଉଜ୍ଜ୍ୱଳ ଦେଖାଯାଉଥିଲା । କୌଣସି କୌଣସି ସ୍ଥାନରେ ନୀଳ କାନ୍ତମଣିର ସନ୍ନିବେଶ ଥିବାରୁ ନୀଳ ମେଘପରି ଶୋଭା ପାଉଥିଲା ଓ ଚଳଭ୍ରାଗ ସ୍ଫଟିକ ପଥର ଦ୍ୱାରା ନିର୍ମିତ ହୋଇଥିଲା । ଏପରି ମନୋହର ପ୍ରାସାଦ ସୁସମ୍ପନ୍ନ ହେଉଥିବାରୁ ଇନ୍ଦ୍ରଦ୍ୟୁମ୍ନ ତାହାର ଗର୍ଭ ପ୍ରତିଷ୍ଠାକଲେ ଓ ବଜ୍ରପାତ ପ୍ରଭୃତି ନିବାରଣ କରିବା ଉଦ୍ଦେଶ୍ୟରେ ଶିଳ୍ପଶାସ୍ତ୍ରୋକ୍ତ ଅନୁସାରେ ସ୍ତ୍ରୀ ଓ ପୁରୁଷ ଅବୃତ ଗଠନପାଇଁ ମଣିବିନ୍ୟାସ କଲେ । ପୃଥିବୀ ମଧ୍ୟରେ ଏପରି ଦେବଗୃହ କେବେ ପ୍ରସ୍ତୁତ ହୋଇ ନ ଥିଲା । ମହାରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ନିର୍ମିତ ମନ୍ଦିର ସହସ୍ର କରମୁଷ୍ଟି ଉଚ୍ଚ ବା ଅଜ୍ଜ କାଲିର ମାପରେ ୧୫୦୦ ଫୁଟ ଉଚ୍ଚଥିଲା ।

**ଚତୁର୍ଦ୍ଧାମୂର୍ତ୍ତିଙ୍କର ବ୍ରହ୍ମାଙ୍କଦ୍ୱାରା ପ୍ରତିଷ୍ଠା**

ବ୍ରହ୍ମାଙ୍କ ଦ୍ୱିତୀୟ ପରାର୍ଦ୍ଧର ଆରମ୍ଭରେ ଅର୍ଥାତ ଶ୍ୱେତ ବରାହକଳ୍ପର ସ୍ୱାୟମ୍ଭୁବ ମନ୍ୱନ୍ତର ହେଲା । ୭୧ ଚତୁର୍ଯୁଗୀରେ ଗୋଟିଏ ଗୋଟିଏ ମନ୍ୱନ୍ତର ହୁଏ । ସେହି ହିସାବରେ ସ୍ୱାୟମ୍ଭୁବ ମନୁଙ୍କ ପ୍ରାରମ୍ଭ କାଳରୁ ଏ ପର୍ଯ୍ୟନ୍ତ ୧୯୭୨୯୪୯୦୫୩ (ଏକଶତ ସତାନବେ କୋଟି ଅଣତିରିଶ ଲକ୍ଷ ଅଣଚାଶ ହଜାର ତେପନ) ବର୍ଷ ଗତ ହୋଇଅଛି । ସ୍ୱାୟମ୍ଭୁବ ମନୁଙ୍କ ପ୍ରଥମ ଚତୁର୍ଯୁଗ ବା ୪୩,୨୦୦୦୦ ବର୍ଷ ଗତହେଲା ପରେ ତାଙ୍କ ଦ୍ୱିତୀୟ ଚତୁର୍ଯୁଗୀରେ ଦାରୁବ୍ରହ୍ମଙ୍କ ଆବିର୍ଭାବ ହୋଇ ଥିଲା । ତେଣୁ ୧୯୭୨୯୪୯୦୫୩ ବର୍ଷରୁ ୪୩୨୦୦୦୦ ବର୍ଷ ବାଦଦେଲେ ଦାରୁବ୍ରହ୍ମଙ୍କ ଆବିର୍ଭାବ ୧୯୬୮୬୨୯୦୫୩ (ଏକଶତ ଛୟାନବେକୋଟି ଛୟାଅଶିଲକ୍ଷ ଅଣତିରିଶହଜାର ତେପନ) ବର୍ଷ ତଳେ ହୋଇଥିଲା ବୋଲି ଜଣାଯାଉଛି । ତାପରେ ଦାରୁବ୍ରହ୍ମଙ୍କର ପ୍ରତିଷ୍ଠା ।

ଦାରୁବ୍ରହ୍ମଙ୍କ ପ୍ରତିଷ୍ଠା ନିମନ୍ତେ ଦେବର୍ଷି ନାରଦଙ୍କ ସହିତ ମହାରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ବ୍ରହ୍ମଲୋକକୁ ଯାଇ ବ୍ରହ୍ମାଙ୍କୁ ମର୍ତ୍ତ୍ୟକୁ ନିମନ୍ତ୍ରଣ କରି ଆଣିବାକୁ ହୋଇଥିଲା । ସହସ୍ର ଅଶ୍ୱମେଧ ଯଜ୍ଞ ଅନୁଷ୍ଠାନ କଲା ପରେ ମହାରାଜା ଇନ୍ଦ୍ରଦ୍ୟୁମ୍ନ ଜୀବନ୍ମୁକ୍ତ ହୋଇଥିଲେ । ତେଣୁ ବ୍ରହ୍ମଲୋକକୁ ସଦେହରେ ଯିବାକୁ ତାଙ୍କ ପକ୍ଷରେ କୌଣସି ପ୍ରତ୍ୟବାୟ ନ ଥିଲା । ତଥାଚ ବ୍ରହ୍ମଲୋକରେ ଜୀବନ୍ମୁକ୍ତ ଭାବରେ ସେ

ବ୍ରହ୍ମାଙ୍କ ସହିତ ସାକ୍ଷାତକରି ତାଙ୍କୁ ନିମନ୍ତ୍ରଣ କରି ଆଣିବାରେ ଯେଉଁ ସମୟ ବ୍ୟତୀତ କରିବାକୁ ହୋଇଥିଲା ତହିଁରେ ସ୍ୱାୟମ୍ଭୁବମନୁଙ୍କ ଅବଶିଷ୍ଟ ରାଜତ୍ୱକାଳ ଅର୍ଥାତ ୭୦ଟି ଚତୁର୍ଯୁଗୀ ବା ୩୦୨୪୦୦୦୦୦ ମାନୁଷ ବର୍ଷ ଅତୀତ ହୋଇଯାଇଥିଲା । ମହାରାଜାଙ୍କ ଇନ୍ଦ୍ରଦ୍ୟୁମ୍ନଙ୍କ ବଂଶ ବିଲୁପ୍ତି ଘଟିଥିଲା । ଦ୍ୱିତୀୟ ମନୁ ସ୍ୱାରୋଚିଷଙ୍କ ପ୍ରଥମ ସତ୍ୟଯୁଗର ବୈଶାଖ ଶୁକ୍ଳ ଅଷ୍ଟମୀ ତିଥି ପୁଷ୍ୟା ନକ୍ଷତ୍ର ଯୁକ୍ତ ଗୁରୁବାରରେ ସ୍ୱୟଂ ବ୍ରହ୍ମା ଉକ୍ତ ଦାରୁବିଗ୍ରହମାନଙ୍କୁ ନୀଳାଚଳସ୍ଥ ମନ୍ଦିରରେ ପ୍ରତିଷ୍ଠା କରିଥିଲେ । ତେଣୁ ଶ୍ରୀ ଶ୍ରୀ ଦାରୁବିଗ୍ରହମାନଙ୍କ ଆବିର୍ଭାବ କାଳ ୧୯୬୮୬୨୯୦୫୩ ବର୍ଷରୁ ଏ ୩୦୨୪୦୦୦୦୦ ବର୍ଷ ବାଦଦେଲେ ଜଣାଯାଏ ଯେ ଆଜିକୁ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରରେ ଠିକ ୧୬୬୬୨୨ ୯୦୫୩ ( ଏକଶତ ଛଅଷଠୀ କୋଟି ବାଷଠୀ ଲକ୍ଷ ଅଣତିରିଶି ହଜାର ତେପନ ) ବର୍ଷତଳେ ଦାରୁବ୍ରହ୍ମଙ୍କ ଚତୁର୍ଦ୍ଧାମୂର୍ତ୍ତି ପ୍ରତିଷ୍ଠିତ ହୋଇଥିଲେ ।

**ସ୍ୱୟଂ ଦାରୁବ୍ରହ୍ମଙ୍କର ଇନ୍ଦ୍ରଦ୍ୟୁମ୍ନଙ୍କୁ ବରଦାନ ପୂଜା ଓ ଉତ୍ସବାଦି ବର୍ଣ୍ଣନା**

ପ୍ରତିଷ୍ଠାପରେ ବ୍ରହ୍ମା ଦାରୁବ୍ରହ୍ମ ଶ୍ରୀଶ୍ରୀଜଗନ୍ନାଥଙ୍କୁ ପ୍ରାର୍ଥନା କଲେ କି "ହେ ଦେବଦେବେଶ ! ଏହି ଇନ୍ଦ୍ରଦ୍ୟୁମ୍ନ ଆପଣଙ୍କୁ ଭକ୍ତି ସହକାରେ ଆରାଧନା କରିବାରେ ତାଙ୍କର ସହସ୍ରଜନ୍ମ ଅତୀତ ହେଲାଣି । ଅଦ୍ୟାବଧି ସେ ଆପଣଙ୍କ ଦର୍ଶନ ପାଇ ନ ଥିଲେ । ବର୍ତ୍ତମାନ

ଆପଣଙ୍କ ଦର୍ଶନରେ ସେ କପରି ମୁକ୍ତ ପାଇବେ ଏବଂ ଦେଶ କାଳ ବୃତ୍ତାଦ ଓ ଅନ୍ୟାନ୍ୟ ଉପଚାରଦ୍ୱାରା ଆପଣଙ୍କୁ ଭକ୍ତିଯୋଗରେ କପରି ଆରାଧନା କରିବେ ସେ ବିଷୟରେ ଦୟାକରି ଆଦେଶ ଓ ସଦୁପଦେଶ ଦଅନ୍ତୁ । ସେ ଆପଣଙ୍କ ମୁଖପଦ୍ମ ନିର୍ଗତ ଆଜ୍ଞାରୂପ ଅମୃତ ରସ ପାନ କରିବାକୁ ଇଚ୍ଛୁକ ।"

ବ୍ରହ୍ମାଙ୍କ ପ୍ରାର୍ଥନାନୁସାରେ ସ୍ୱୟଂ ଜଗନ୍ନାଥ ଦେବ ଦାରୁମୟ ହେଲେ ସୁଦ୍ଧା ହସି ହସି ଗମ୍ଭୀର ସ୍ୱରରେ କହିଲେ "ହେ ଇନ୍ଦ୍ରଦ୍ୟୁମ୍ନ ! ତୁମର ଭକ୍ତି ଓ ନିଷ୍କାମ କର୍ମମାନଙ୍କ ଦ୍ୱାରା ମୁଁ ପ୍ରସନ୍ନ ହୋଇଅଛି । ତୁମ୍ଭ ବ୍ୟତୀତ ଅନ୍ୟ କେହି ଏପରି ସମ୍ପଦ ଲାଭ କରି ପାରିନାହିଁ । ହେ ଭୂପ ! ମୁଁ ତୁମ୍ଭଙ୍କୁ ଏହି ବର ଦେଉଅଛି ଯେ ମୋ ପ୍ରତି ତୁମ୍ଭର ଅଚଳା ଭକ୍ତି ରହିବ । ଯେଉଁଠିବେଳେ ତୁମ୍ଭେ କୋଟି କୋଟି ରତ୍ନ ବ୍ୟୟ କରି ମୋର ମନ୍ଦିର ନିର୍ମାଣ କରି ଅଛ ତାହା ଭଗ୍ନ ହେଲେ ସୁଦ୍ଧା ମୁଁ ଭକ୍ତସ୍ଥାନ ପରିତ୍ୟାଗ କରିବନାହିଁ । ବ୍ରହ୍ମାଙ୍କ ଦ୍ୱିତୀୟ ପରାର୍ଦ୍ଧକାଳ ପର୍ଯ୍ୟନ୍ତ ଏହି ଦାରୁମୟ ଶରୀରରେ ମୁଁ ଅବସ୍ଥାନ କରିବ । ସ୍ୱାୟଂଭୁବମନୁଙ୍କ ଦ୍ୱିତୀୟ ଚତୁର୍ଯୁଗୀୟ ପ୍ରଥମ ସତ୍ୟ-ଯୁଗର ପ୍ରଥମାଂଶରେ ତୁମ୍ଭ ଯଜ୍ଞ ପ୍ରଭାବରୁ ହେତୁ ମୋର ଆବିର୍ଭାବ ହୋଇ ଅଛି; ଏଣୁ ଏହିଦିନ ମୋହର ଜନ୍ମଦିନ ଅଟେ । ଏହି ଦିନ ମୋର ପ୍ରତିମାକୁ ଅଧିବାସର କର୍ମାନୁଷ୍ଠାନ ସହି ମହାସମାରୋହରେ ମହାସ୍ନାନ କରାଇବ । ମୁଁ ଦର୍ଶକ-ମାନଙ୍କର କୋଟି କୋଟି ଜନ୍ମର ପାପରାଶିକୁ ବିନାଶ

ଭଇବ । ହେ ରାଜେନ୍ଦ୍ର ! ଯେଉଁମାନେ ମୋର ଏହି ସ୍ନାନଯାତ୍ରା ଦର୍ଶନ କରିବେ ସେମାନଙ୍କର ସମୁଦାୟ ତୀର୍ଥସେବା ସକଳବିଧି ଯଜ୍ଞାନୁଷ୍ଠାନ ଓ ସର୍ବବିଧ ଦାନର ଫଳ ନିଶ୍ଚୟ ଲାଭ ହେବ । ଏହି ବଟବୃକ୍ଷର ଉତ୍ତର ଦିଗରେ ସର୍ବତୀର୍ଥମୟ ଗୋଟିଏ କୂପ ଅଛି । ସମ୍ପ୍ରତି ତାହା କଣ୍ଟକ ମୃତ୍ତିକାଦ୍ୱାରା ଆବୃତ ଅଛି । ପୂର୍ବରେ ସ୍ନାନ ପାଇଁ ଏହି କୂପ ନିର୍ମାଣ କରିବାପରେ ମୁଁ ଅବଗତ ହୋଇଅଛି । ତେଣୁ ତୁମ୍ଭେ ସମ୍ପ୍ରତି ସେହି କୂପକୁ ନିର୍ଣ୍ଣୟ କରି ତାହାକୁ ଆବିଷ୍କାର କର । ରକ୍ଷକ, କ୍ଷେତ୍ରପାଳ ଓ ଦିକପାଳମାନଙ୍କ ଉଦ୍ଦେଶ୍ୟରେ ଯଥାବିଧି ବଳି ପ୍ରଦାନ ପୂର୍ବକ ଶଙ୍ଖ, କାହାଳୀ ଓ ମୃଦଙ୍ଗାଦି ବାଦ୍ୟ ବାଦନ ସଙ୍ଗେ ଚତୁର୍ଦ୍ଦଶୀ ତିଥିରେ ଏହି କୂପର ସଂସ୍କାର କରିବ । ଦ୍ୱିଜାତି-ମାନେ ସ୍ୱର୍ଣ୍ଣକୁମ୍ଭଦ୍ୱାରା ସେଠାରୁ ଜଳ ଉତ୍ତୋଳନ କରିବେ ଏବଂ ସେହି ଜଳଦ୍ୱାରା ଜ୍ୟେଷ୍ଠମାସ ପୂର୍ଣ୍ଣିମାର ପ୍ରାତଃ-କାଳରେ ବ୍ରାହ୍ମଙ୍କ ସହିତ ମୋତେ ବଳରାମ ଓ ସୁଭଦ୍ରାଙ୍କୁ ସ୍ନାନ କରାଇଲେ ମୋର ସାଯୁଜ୍ୟ ମୁକ୍ତିଲାଭ ହେବ । ହେ ନୃପଶ୍ରେଷ୍ଠ ! ଯେଉଁମାନେ ସ୍ନାନକାଳରେ ମୋତେ ଦର୍ଶନ କରିବେ ସେମାନଙ୍କୁ ପୁଣି ଦେହବନ୍ଧନରେ ଆବଦ୍ଧ ହେବାକୁ ପଡ଼ିବ ନାହିଁ । ହେ ରାଜନ୍ ! ଈଶାନଦିଗରେ ଚନ୍ଦନ ଜଳଦ୍ୱାରା ସେଚନକର ଚନ୍ଦ୍ରାତପ ସୁଶୋଭିତ ଗୋଟିଏ ସୁସଜ୍ଜିତ ସୁଦୃଢ଼ ମଞ୍ଚ ନିର୍ମାଣ କରିବ । ତଦୁପରି ବଳଭଦ୍ର ଓ ସୁଭଦ୍ରାଙ୍କ ସହିତ ମୋତେ ସ୍ନାନ କରାଇ ପୁନଶ୍ଚ ନିଜସ୍ଥାନକୁ ନେଇଯିବ । ମୋର ଦକ୍ଷିଣ ଅଙ୍ଗମୂର୍ତ୍ତି ମାହାସଂମନ୍ଦିରରେ

ଯେଉଁ ଲୋକମାନେ ମୋତେ ଭକ୍ତିଭାବରେ ଦର୍ଶନ କରିବେ ସେମାନେ ମନରେ ଯାହା କାମନା କରିବେ ସେ ସମସ୍ତ ସିଦ୍ଧହେବ । ଏପରି ଭାବରେ ଦେବସ୍ଥାନ ପ୍ରତିଷ୍ଠା ଶେଷ କରିବ । ପଦର ଦିନ ପର୍ଯ୍ୟନ୍ତ ମୋର ଅଙ୍ଗରାଗ ବିହୀନ ବିରୂପ ଅବସ୍ଥାକୁ ଯେପରି କେହି ଦର୍ଶନ ନ କରନ୍ତି ସେ ପ୍ରକାର ବ୍ୟବସ୍ଥା କରିବ । ମୋର ଏହି ଜ୍ୟେଷ୍ଠ ପୂର୍ଣ୍ଣିମା ସ୍ନାନୋତ୍ସବ ଯେଉଁମାନେ ଭକ୍ତି ସହକାରେ ଦର୍ଶନ କରିବେ ସେମାନେ ମୁକ୍ତିଲାଭ କରିବେ ।

ହେ କ୍ଷିତୀଶ୍ୱର ! ଏତଦ୍‌ଭିନ୍ନ ତୁମ୍ଭେ ମୋର ଗୁଣ୍ଡିଚା ନାମକ ଯାତ୍ରା ଉତ୍ସବ କରିବ । ଏହି ଉତ୍ସବର ନାମକୀର୍ତ୍ତନ ମାତ୍ରେ ମାନବ ନିଷ୍ପାପ ହୁଏ । ମାଘମାସର ଶୁକ୍ଳପଞ୍ଚମୀ ଓ ଚୈତ୍ରମାସର ଶୁକ୍ଳ ଅଷ୍ଟମୀ ଗୁଣ୍ଡିଚା ଉତ୍ସବ ପାଇଁ ପ୍ରଶସ୍ତ କାଳ ଅଟେ । ବିଶେଷତଃ ଆଷାଢ଼ମାସର ଶୁକ୍ଳଦ୍ୱିତୀୟା ତିଥିରେ ମହୋତ୍ସବ ପ୍ରଶସ୍ତତର ଓ ମୋକ୍ଷଦାୟକ ବୋଲି ପ୍ରସିଦ୍ଧ ଅଟେ । ସେହି ଦିନ ପ୍ରଥମତଃ ବିପ୍ରମାନଙ୍କୁ ସନ୍ତୁଷ୍ଟ କରି ରଥରେ ବଳଭଦ୍ର ଓ ସୁଭଦ୍ରାଙ୍କ ସହିତ ମୋତେ ଆରୋହଣ କରାଇ ଗୁଣ୍ଡିଚା ମହୋତ୍ସବ କରିବ । ଏହି ଗୁଣ୍ଡିଚାମଣ୍ଡପ ସ୍ଥାନରେ ମୁଁ ପୂର୍ବେ ଆବିର୍ଭାବ ହୋଇଥିଲି ଏବଂ ଯେଉଁଠାରେ ତୁମ୍ଭେ ସହସ୍ର ସଂଖ୍ୟକ ଅଶ୍ୱମେଧଯଜ୍ଞ କରିଥିଲ ସେଠାରେ ମହାବେଦୀ ( ଗୁଣ୍ଡିଚା ମଣ୍ଡପ )କୁ ଆମ୍ଭମାନଙ୍କୁ ରଥଯାତ୍ରାରେ ନେଇଯିବ । ଏହିସ୍ଥାନ ଅପେକ୍ଷା ପୁଣ୍ୟତମସ୍ଥାନ ପୃଥିବୀରେ ଅନ୍ୟତ୍ର ନାହିଁ । ତୁମ୍ଭେ

ଏଥିପୂର୍ବେ ମୋର ପ୍ରୀତିପାଇଁ ବ୍ରହ୍ମାନ୍ଦ୍ରସୁତରେ ଶତ ଶତ ବର୍ଷକାଳ ହୋମ କରିଥିଲ । ଏହିସ୍ଥାନ ଅପେକ୍ଷା ମୋର ଅନ୍ୟତମ ପ୍ରୀତିକର ସ୍ଥାନ ଧରାତଳରେ ନାହିଁ । ସମ୍ପ୍ରତି ତୁମ୍ଭେ ବ୍ରହ୍ମାଙ୍କ ଅନୁରୋଧରେ ମହାସୁ ମନ୍ଦିର ପ୍ରତିଷ୍ଠା କରିଥିବାରୁ ନୀଳାଚଳ ମୋର ମହା ପ୍ରୀତିକର ସ୍ଥାନ ହୋଇଅଛି । ସେହିପରି ତୁମ୍ଭ ଅଶ୍ୱମେଧ ଯଜ୍ଞ ହେତୁ ମହା ବେଦୀସ୍ଥାନ ଶ୍ରୀନୃସିଂହ କ୍ଷେତ୍ରରୂପେ ମୋର ଅତି ପ୍ରିୟ ଅଟେ । ପୁଣି ମୋର ଜନ୍ମନିଳୟ ହେତୁ ଏହି ସ୍ଥାନ ମୋର ଅଖଣ୍ଡ ପ୍ରୀତିକର ବୋଲି ଜାଣିବ । ବହୁକାଳ ମୁଁ ଏହି ସ୍ଥାନରେ ରହିଥିଲି । ତେଣୁ ସେ ସ୍ଥାନରେ ମୋର ଅସୀମ ପ୍ରୀତି ରହିଅଛି । ହେ ରାଜନ୍ ! ଏହି ବ୍ରହ୍ମା ମୋର ଆତ୍ମାସ୍ୱରୂପ । ଏ ଯେତେବେଳେ ମୋତେ ଏ ପ୍ରାସାଦରେ ସ୍ଥାପିତ କରି ଅଛନ୍ତି ତାଙ୍କ ଅନୁରୋଧରେ ଓ ତୁମ୍ଭ ଭକ୍ତି ହେତୁ ମୁଁ ଏହି ସ୍ଥାନରେ ଚିରକାଳ ଅବସ୍ଥାନ କରିବି । ଗୁଣ୍ଡିଚା ମଣ୍ଡପକୁ ନଅଦିନ ପାଇଁ ଯାତ୍ରାକରିବ ଏବଂ ସେଠାରୁ ଏହି ସ୍ଥାନକୁ ପ୍ରତ୍ୟାବର୍ତ୍ତନ କରିବ । ସେଠାରେ ଯେଉଁ ସର୍ବତୀର୍ଥମୟ ସରୋବର ଅଛି ତୁମ୍ଭପ୍ରତି ଅନୁଗ୍ରହ ପ୍ରକାଶ ସ୍ୱରୂପ ତାହା ତଟରେ ମୁଁ ସାତଦିନ ଅବସ୍ଥାନ କରିବି । ସେଠାରେ ମୋର ଅବସ୍ଥିତି କାଳରେ ଯେଉଁମାନେ ମୋତେ ଦର୍ଶନ କରିବେ ସେମାନେ ମୋ ବୈକୁଣ୍ଠ ଧାମକୁ ଗମନ କରିବେ । ତ୍ରିଭୁବନ ମଧ୍ୟରେ ଯେଉଁ ସାଢେ ତିନିକୋଟି ତୀର୍ଥ ଅଛି ମୋ ସାନ୍ନିଧ୍ୟ ହେତୁ ସେମାନେ ସେହି ସରୋବରରେ ଉପସ୍ଥିତ ରହିବେ । ଏଣୁ ସେଠାରେ ଯଥାବିଧି ସ୍ନାନକରି

ଭକ୍ତରେ ଯେଉଁମାନେ ମୋତେ ଦର୍ଶନ କରିବେ ସେମାନଙ୍କୁ ପୁଣି ମାତୃଗର୍ଭରେ କ୍ଳେଶ ଭୋଗ କରିବାକୁ ହେବନାହିଁ । ନବମ ଦିନରେ ମୁଁ ଯାତ୍ରା କରୁଥିବା ସମୟରେ ଯେଉଁମାନେ ମୋତେ ଦର୍ଶନ କରିବେ ସେମାନେ ପ୍ରତି ପାଦକ୍ଷେପରେ ଅଶ୍ୱମେଧଯଜ୍ଞର ଫଳଭାଗୀ ହେବେ । ଇହ ଲୋକରେ ଇନ୍ଦ୍ରଙ୍କ ପରି ଉପଭୋଗକରି ଦେହାନ୍ତରେ ମୋର ସାଯୁଜ୍ୟ ମୁକ୍ତି ଲାଭ କରି ପାରିବେ ।

ଏହି ପ୍ରକାରରେ ମୋର ଶୟନ, ପାର୍ଶ୍ୱପରିବର୍ତ୍ତନ, ଉତ୍ଥାପନ, ମାର୍ଗଶୀର ମାସରେ ପ୍ରାବରଣ, ପୁଷ୍ୟାସ୍ନାନ ଏବଂ ଫାଲ୍‌ଗୁନ ମାସରେ ଦୋଳଯାତ୍ରା ରୂପ ମହୋତ୍ସବ କରିବ । ଉକ୍ତ ଦୋଳଯାତ୍ରା ଓ ପୁଷ୍ୟାସ୍ନାନ ମହୋତ୍ସବରେ ମାନବମାନେ ମୋତେ ଦର୍ଶନ, ଅର୍ଚ୍ଚନ ଓ ପ୍ରଣିପାତ କଲେ ପ୍ରତ୍ୟେକ କାର୍ଯ୍ୟପାଇଁ ଅଶ୍ୱମେଧ ଯଜ୍ଞର ଫଳଭାଗୀ ହେବେ । ଚୈତ୍ରମାସର କୃଷ୍ଣ ଚତୁର୍ଦ୍ଦଶୀରେ ଦାମପ୍ରସୂନନାମକ ଉତ୍ସବ କରିବ । ବୈଶାଖ ମାସର ଶୁକ୍ଳପକ୍ଷ ଅକ୍ଷୟ ତୃତୀୟାରେ ମୋତେ ସୁନ୍ଦରରୂପେ ଚନ୍ଦନଆଦି ଲେପନ କରିବ । ଯେଉଁମାନେ ମୋର ପ୍ରୀତିପାଇଁ ଉକ୍ତ ଉତ୍ସବମାନ କରିବେ ସେମାନଙ୍କ ସକାଶେ ପ୍ରତ୍ୟେକ ଉତ୍ସବ ଚତୁର୍ବର୍ଗ ଫଳପ୍ରଦ ହେବ ।”

ଦାରୁବ୍ରହ୍ମ ଭଗବାନ ଇନ୍ଦ୍ରଦ୍ୟୁମ୍ନଙ୍କୁ ଏପରି ବରଦାନ କରି ଈଷତ ହସିହସି ବ୍ରହ୍ମାଙ୍କୁ କହିଲେ “ହେ ଚତୁର୍ମୁଖ ! ତୁମ୍ଭ ପ୍ରୀତିପାଇଁ ତୁମ୍ଭର ସମସ୍ତ ଅଭୀଷ୍ଟ ସମ୍ପାଦନ କଲି । ତୁମ୍ଭେ

ଯାହାଙ୍କ ଇଚ୍ଛା ତାହାମଧ୍ୟ ମୋହର ଇଚ୍ଛା ଅଟେ ଯେହେତୁ ତୁମ୍ଭେ ଓ ମୋ ମଧ୍ୟରେ କିଛି ପ୍ରଭେଦନାହିଁ । ପୂର୍ବେ ତୁମ୍ଭେ ମୋ ନିକଟରେ ଯେଉଁ ମାଧବମୂର୍ତ୍ତି ଧାରଣ ପାଇଁ ପ୍ରାର୍ଥନା କରିଥିଲ ତାହାର ପରିଣତ ସ୍ୱରୂପ ମୁଁ ଜଗନ୍ନାଥ ଦେବରୂପୀ ଅବତାର ମୂର୍ତ୍ତି ଧାରଣ କରିଅଛି । ଏହି ସ୍ଥଳରେ ମୋତେ ଦର୍ଶନ ଓ ଅର୍ଚ୍ଚନା କରି ଯେ କେହି ପ୍ରାଣତ୍ୟାଗ କରିବ ସେ ନିଶ୍ଚୟ ସଂସାରରୁ ମୁକ୍ତ ହେବ ଏବଂ ସେ କ୍ରମେ କ୍ରମେ ତୁମ୍ଭ ସହିତ ମୋର ସାଯୁଜ୍ୟ ଲାଭ କରିବ । ସମ୍ପ୍ରତି ତୁମ୍ଭେ ସତ୍ୟଲୋକକୁ ଗମନ କର ଏବଂ ଦେବତାମାନେ ସ୍ୱର ଲୋକକୁ ଗମନ କରନ୍ତୁ । ମୁଁ ତୁମ୍ଭ ଆୟୁପୂରଣକାଳ (ଆୟୁଶେଷ) ପର୍ଯ୍ୟନ୍ତ ଏହି ସ୍ଥଳରେ ଅବସ୍ଥାନ କରିବି ।''

ଶ୍ରୀଶ୍ରୀ ଜଗନ୍ନାଥଦେବଙ୍କ ଆବିର୍ଭାବ ଓ ପ୍ରତିଷ୍ଠା ବିଷୟରେ ଯେଉଁସବୁ ତଥ୍ୟର **ପୁରାଣ ଓ ଇତିହାସ** ଉଲ୍ଲେଖ କରାଗଲା—ସେ ସବୁ ପୁରାଣରୁ ଗୃହୀତ—ପୌରାଣିକ ।

ଆଧୁନିକ ଇତିହାସ ସେ ସବୁକୁ ସ୍ୱୀକାର କରିବ ନାହିଁ କାରଣ ସଭ୍ୟମାନବର ସୃଷ୍ଟି ଯେ ଏତେ ପ୍ରାଚୀନ ହୋଇପାରେ ଏ ଧାରଣା ଆଧୁନିକ ବହୁ ଐତିହାସିକ ପୋଷଣ କରିବାକୁ ପରାଙ୍ମୁଖ । ପାଶ୍ଚାତ୍ୟ ପଣ୍ଡିତ ଡାରଉଇନଙ୍କର ସେମାନେ ଶିଷ୍ୟ । ଡାରଉଇନଙ୍କ ଶିକ୍ଷାନୁସାରେ ମାନବ ଜାତି ସ୍ୱତନ୍ତ୍ର ହୋଇ ସୃଷ୍ଟ ହୋଇ ନ ଥିଲା—ଜଳୀୟ ଜୀବ ଅବସ୍ଥାରୁ କ୍ରମବିକାଶର ପଥରେ

ସ୍ଥଳଗୃଷ୍ଟ ସରୀସୃପ ପଶୁଆଦି ଅବସ୍ଥା ଅତିକ୍ରମକରି ବାମାଘରେ ପରିଣତ ହେବାପରେ ସେ ବାନରରୂପ ଓ ସ୍ମୃତି 'ତ୍ୟାଗକଲ ଓ ଅସଭ୍ୟ ମନୁଷ୍ୟଅବସ୍ଥାରେ ଉପନୀତ ହେଲ । ମାନବ ସଭ୍ୟତା ଡାରଉଇନପନ୍ଥୀଙ୍କ ମତାନୁସାରେ ସାତ ଆଠ ହଜାର ବର୍ଷ ହେଲ ବିକଶିତ ହୋଇ ବର୍ତ୍ତମାନର ଆଣବିକ ଯୁଗରେ ଉପନୀତ ହୋଇଛି ।

ତେଣୁ ଇତିହାସ ଦେଖି ଶ୍ରୀ ଶ୍ରୀଦାରୁବିଗ୍ରହମାନଙ୍କ ଅବିର୍ଭାବଠାରୁ ଏପର୍ଯ୍ୟନ୍ତ ଯେଉଁ ଏକଶତ ଛିୟାନବେ କୋଟି ଛୟାଶି ଲକ୍ଷ ଅଣନ୍ଦିଶ ହଜାର ତେପନ ବର୍ଷ ଗତ ହୋଇଅଛି ତାହାର ବିଗ୍ଭର କରିବାର କୌଣସି ବାଟ ନାହିଁ । ଆଧୁନିକ ଭୌଗୋଳିକମାନଙ୍କର ବିଗ୍ଭରରେ ପୃଥିବୀର ଆବିର୍ଭାବ ମଧ ଦୁଇଶ କୋଟି ବର୍ଷ ତଳର କଥା ମାତ୍ର । କୌଣସି ଅପ୍ରାକୃତ ବ୍ୟବସ୍ଥାକୁ ପ୍ରାକୃତ ବୁଦ୍ଧିରେ ବିଗ୍ଭର କରିବା ସମ୍ଭବ ନୁହେ । ତପସ୍ୟାଦ୍ୱାରା ପ୍ରଜ୍ଞାର ଉଦ୍‌ଭବ ନ ହେଲେ ଅତୀତ ଉପରେ ପଡ଼ିଥିବା ପରଦା ଟେକି ଅତୀତର ଗର୍ଭକୁ ନିରୀକ୍ଷଣ କରିବା ସାଧ୍ୟର ଅତୀତ । ଭାରତୀୟ ଆର୍ଯ୍ୟମାନେ ଋଷିମୁନିଙ୍କର ସନ୍ତାନ । ତେଣୁ ଶ୍ରୌତ ପ୍ରମାଣ ଅନୁସାରେ ସେମାନେ ବିଜ୍ଞାନଦ୍ୱାରା ଅନାବିଷ୍କୃତ ପ୍ରୋକ୍ତ ତଥ୍ୟକୁ ପ୍ରକୃତ ତଥ୍ୟ ବୋଲି ବିଶ୍ୱାସକରି ଜୀବନପଥରେ ଧର୍ମପାଳନ ପୂର୍ବକ ଗତି କରୁଛନ୍ତି ।

ଇତିହାସରୁ ମିଳେ ଯେ ବର୍ତ୍ତମାନର ଶ୍ରୀ ମନ୍ଦିରକୁ ଉତ୍କଳର ସମ୍ରାଟ ଅନଙ୍ଗଭୀମଦେବ ୧୧୯୭ ଖ୍ରୀଷ୍ଟାବ୍ଦରେ

ନିର୍ମାଣ କରାଇଥିଲେ । ଏଥିରେ ପନ୍ଦର ଲକ୍ଷ ମାଢ଼ ସୁନା ବା ସାଢ଼େ ସାତକୋଟି ଟଙ୍କା ବ୍ୟୟ ହୋଇଥିଲା । ତାଙ୍କ ପୂର୍ବରୁ କେଶରୀ ବଂଶର ରାଜା ଜନ୍ମେଜୟଙ୍କ ପୁତ୍ର ଯଯାତିକେଶରୀ ମଧ୍ୟ ଥରେ ଶ୍ରୀମନ୍ଦିର ଷଷ୍ଠ ଶତାବ୍ଦୀରେ ନିର୍ମାଣ କରାଇଥିଲେ ବୋଲି ପ୍ରମାଣ ଅଛି । ଇନ୍ଦ୍ରଦ୍ୟୁମ୍ନଙ୍କ କାଳରୁ ଏହିପରି ବହୁ ରାଜ୍ଜୁ ଙ୍କଣ୍ଠିମାନ ରାଜାମହାରାଜା ଶ୍ରୀମନ୍ଦିର ନିର୍ମାଣ କରାଇ ଧନ୍ୟ ହୋଇଥିବେ । ଇତିହାସ ସେମାନଙ୍କ ନାମ ସଞ୍ଚିତ କରି ରଖିନାହିଁ । ଆଧ୍ୟାତ୍ମିକପ୍ରଜ୍ଞାବିବର୍ଜିତ ମାନବର ସ୍ମୃତି ଖୁବ୍ ସୀମାବଦ୍ଧ କାଳମଧ୍ୟରେ ସଂଗ୍ରହ କରେ । ତେଣୁ ଐତିହାସିକ ଜ୍ଞାନ ଏପରି ଖଣ୍ଡିତ ।

ଶ୍ରୀମନ୍ଦିର ଓଡ଼ିଶାର ସ୍ଥାପତ୍ୟ ଓ ଭାସ୍କର୍ଯ୍ୟର ଗୋଟିଏ ଉଜ୍ଜ୍ୱଳ ନିଦର୍ଶନ । କୋଣାର୍କର ସୂର୍ଯ୍ୟମନ୍ଦିର ବା ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର ପରି ଏହାର କଳା ଅତ୍ୟନ୍ତ ସୂକ୍ଷ୍ମ କୋଟିର ନ ହେଲେ ମଧ୍ୟ କଳା ଦିଗରୁ ସେ ଦୁଇ ମନ୍ଦିର ତଳକୁ ଏହାର ସ୍ଥାନ । ଏଥିର ଅଂଶବିଶେଷ ବିଭିନ୍ନ ସମୟରେ ନିର୍ମିତ ହୋଇଥିବାର ପ୍ରମାଣ ଅଛି । ଭୋଗମଣ୍ଡପ ଏଥିର ଉଦାହରଣ ସ୍ଥଳୀୟ । ନିର୍ମାଣରେ ବ୍ୟବହୃତ ପ୍ରସ୍ତରର ବର୍ଣ୍ଣ ଦୃଷ୍ଟିରୁ ପାଶ୍ଚାତ୍ୟମାନେ ଏହାକୁ **White Pagodal** ଶ୍ୱେତ ମନ୍ଦିର ) ଓ କୋଣାର୍କ ମନ୍ଦିରକୁ ( **Black Pagoda** ) ( କୃଷ୍ଣ ମନ୍ଦିର ) ଆଖ୍ୟା ଦେଇଅଛନ୍ତି । ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ ଦୃଷ୍ଟିରୁ ମଧ୍ୟ ଏହାର ପୃଥିବୀରେ ସମୁଚ୍ଚ ସ୍ଥାନ ରହିଅଛି ।

ଓଡ଼ିଆ ଜାତୀୟ ଜୀବନର ଯାବତୀୟ ସର୍ବୋତ୍କୃଷ୍ଟ ସୃଷ୍ଟି ଶ୍ରୀ ମନ୍ଦରରେ ପୁଞ୍ଜୀଭୂତ । ଓଡ଼ିଆ ର ଅମୃତ ଦେବ ଭୋଗ୍ୟ ସାମଗ୍ରୀର ଆବିଷ୍କାର କରି ପାରିଥିଲା ଶ୍ରୀ ମନ୍ଦରର ଅଶେଷ ପ୍ରକାର ମହାପ୍ରସାଦ ତହିଁର ନିଦର୍ଶନ । ଅନନ୍ତ-କାଳରୁ ଶ୍ରୀ ଶ୍ରୀଜଗନ୍ନାଥଙ୍କ ସନ୍ନିଧିରେ ରହି ଓଡ଼ିଆଜାତି ସ୍ୱଚ୍ଛନ୍ଦ ସୁସ୍ଥ ଜୀବନର ସର୍ବବିଧ ଉତ୍କର୍ଷ କରଗତ କରି ପାରିଥିଲା । ସାକ୍ଷାତ ପରଂବ୍ରହ୍ମଙ୍କୁ ନିକଟରେ ପାଇ କି ଓତପ୍ରୋତ ଭାବରେ ଓଡ଼ିଆଜାତି ତାଙ୍କ ସହିତ ପରମାତ୍ମୀୟତା ସଂସ୍ଥାପନ କରିବାର ପ୍ରଚେଷ୍ଟା କରି ଅଛି ତାହା ଗୌରଚରଣ ଅଧିକାରୀ ଓ ବନମାଳୀ ଦାସପ୍ରଭୃତିଙ୍କ ଲକ୍ଷଣମାନ ଅନୁଧ୍ୟାନକଲେ ସ୍ପଷ୍ଟ ଉପଲବ୍‌ଧ ହେବେ । ମହାପ୍ରଭୁଙ୍କ ସାନ୍ନିଧ ଓଡ଼ିଆ ଜାତିକୁ ଧନ୍ୟ କରିଅଛି । ଶ୍ରୀ ଶ୍ରୀପୁରୁଷୋତ୍ତମ ଧାମରେ ୧୨୭ ଟି ମଠଅଛି । ସେ ସବୁ ପୂଜା ବୈଭବର ଅଧିଷ୍ଠାନ ।

ଶ୍ରୀ ଶ୍ରୀଜଗନ୍ନାଥ ବେଦପ୍ରତିପାଦିତ ପରଂବ୍ରହ୍ମ ମୂର୍ତ୍ତି ।

ଶ୍ରୀ ଶ୍ରୀଜଗନ୍ନାଥ ଓ ଶ୍ରୀ ଶ୍ରୀକୃଷ୍ଣାବତାର

ଶ୍ରୀ ଶ୍ରୀବଳଭଦ୍ର ସ୍ୱୟଂଅନନ୍ତ ଓ ଶ୍ରୀ ଶ୍ରୀସୁଭଦ୍ରା ସ୍ୱୟଂ ମହାଲକ୍ଷ୍ମୀ । ସେମାନଙ୍କର ଅନ୍ୟାନ୍ୟ ଦେବ ଦେବୀଙ୍କ ପରି ପାଦକରପଲ୍ଲବ ଓ କର୍ଣ୍ଣ ନ ଥିବା ଶ୍ୱେତାଶ୍ୱତର ଉପନିଷଦର ନିମ୍ନୋକ୍ତ ବଚନରୁ ସୁସ୍ପଷ୍ଟ ହେଉଅଛି ।

ଅପାଣିପାଦୋ ଜବନୋ ଗ୍ରହୀତା
ପଶ୍ୟତ୍ୟଚକ୍ଷୁଃ ସଶୃଣୋତ୍ୟକର୍ଣ୍ଣଃ
ସ ବେତ୍ତି ବେଦ୍ୟଂ ନ ଚ ତସ୍ୟାସ୍ତି ବେତ୍ତା
ତମାହୁରଗ୍ର୍ୟଂ ପୁରୁଷଂ ମହାନ୍ତମ୍ ।

ଏହାର ଅର୍ଥ ପରମାତ୍ମା ପରଂବ୍ରହ୍ମଙ୍କ କରପଲ୍ଲବ ନ ଥିଲେ ସୁଦ୍ଧା ସେ ଗ୍ରହଣ କରନ୍ତି ଏବଂ ପାଦ ନ ଥିଲେ ସୁଦ୍ଧା ସେ ବେଗଗାମୀ ଅଟନ୍ତି । ଚକ୍ଷୁ ନ ଥିଲେ ସୁଦ୍ଧା ସେ ଦେଖନ୍ତି ଏବଂ କର୍ଣ୍ଣ ନ ଥିଲେ ସୁଦ୍ଧା ଶୁଣନ୍ତି । ସେ ସମସ୍ତ ବେଦ୍ୟ ବସ୍ତୁ ଜାଣନ୍ତି ମାତ୍ର ତାଙ୍କୁ କେହୁ ଜାଣି ପାରନ୍ତି ନାହିଁ । ବେଦବିଦ୍‌ମାନେ ସେ ମହାନ ପୁରୁଷଙ୍କୁ ଅଗ୍ର୍ୟ ଅର୍ଥାତ ଆଦ୍ୟ ବୋଲି କହନ୍ତି ।

ଓଡ଼ିଆ ଦେଉଳତୋଳା ବହିରେ ଲେଖାଅଛି ଯେ ଅନନ୍ତ ମହାରଣା ୨୧ ଦିନରେ ଦାରୁବିଗ୍ରହମାନଙ୍କୁ ଗଢ଼ି ଦେବେ ବୋଲି କଣ୍ଟ କରିଥିଲେ, କିନ୍ତୁ ଇନ୍ଦ୍ରଦ୍ୟୁମ୍ନଙ୍କ ରାଣୀଙ୍କ ଆଦେଶରେ ନିର୍ମାଣର ନିରୋଧ ଦ୍ୱାର ୧୪ ଦିନରେ ଖୋଲି ଦିଆଯିବାରୁ ବିଗ୍ରହମାନଙ୍କର ହାତଗୋଡ଼ ନ ଥାଇ ଖଣ୍ଡିଆ କଳେବର ଦେଖାଗଲା । ଏହା ନିତାନ୍ତ ମନଗଢ଼ା କଥା ।

ମୂଳ ସଂସ୍କୃତ ପୁରାଣରେ ଲେଖାଅଛି ଯେ ସ୍ୱୟଂ ନାରାୟଣ ବର୍ଦ୍ଧକୀ ହୋଇ ନିଜ ଦେହସିଦ୍ଧ ଦାରୁବିଗ୍ରହ ୧୫ ଦିନରେ ଗଢ଼ିଥିଲେ । ଜଗତକୁ ଯେଉଁ ରୂପରେ ପ୍ରତିଭାତ ହେବାର ତାଙ୍କ ଇଚ୍ଛା ସେ ତାଙ୍କର ସେହିରୂପ ଗଢ଼ିଥିଲେ । ଭଗବଦିଚ୍ଛା ନିରଙ୍କୁଶ । ତାଙ୍କ କଳେବର ଖଣ୍ଡିଆ ହୋଇଛି ବୋଲି ଯେ ଲେଖିଲେ ସେ ଲୋକଙ୍କୁ ବିଭ୍ରାନ୍ତ କଲେ ମାତ୍ର ।

ପୁନଶ୍ଚ ଓଡ଼ିଆ ବହିରେ ଲେଖାଅଛି ଶ୍ରୀକୃଷ୍ଣଙ୍କ ତିରୋଧାନପରେ ତାଙ୍କ ଅଦଗ୍ଧଶରୀର ଦାରୁରୂପରେ ନୀଳାଚଳ ନିକଟସ୍ଥ ମହୋଦଧିରେ ଭାସୁଥିଲା । ତହିଁରୁ

ଅନନ୍ତ ମହାରଣା ଶ୍ରୀ ଶ୍ରୀଜଗନ୍ନାଥଙ୍କ ଦାରୁମୂର୍ତ୍ତିଙ୍କୁ ଗଠନ କଲେ । ଏହା ମଧ୍ୟ ନିତାନ୍ତ ମନଗଢ଼ା କଥା ।

ମୂଳ ସଂସ୍କୃତ ପୁରାଣରେ ଦାରୁମୂର୍ତ୍ତିଙ୍କ ଗଠନ ବିଷୟରେ ଉଲ୍ଲିଖିତ ପ୍ରକୃତ କଥା ଆଗରୁ କୁହା ଯାଇଅଛି । ତାହାହିଁ ସତ୍ୟ । ପୃଥିବୀର ସର୍ବପ୍ରାଚୀନ ବେଦରେ ମଧ୍ୟ ଅପୌରୁଷେୟ ଦାରୁରୁ ଚତୁର୍ଦ୍ଧାମୂର୍ତ୍ତି ଗଠିତ ହୋଇଛନ୍ତି ବୋଲି ସ୍ପଷ୍ଟ ଲେଖା ହୋଇଅଛି ଯଥାଃ—

ଅଦୋ ଯଦ୍ଦାରୁ ପ୍ଳବତେ ସିନ୍ଧୋଃ ପାରେ ଅପୁରୁଷମ୍
ତଦା ରଭସ୍ୱ ଦୁର୍ହଣୋ ତେନ ଗଚ୍ଛ ପରସ୍ତରମ୍ ॥

( ଏହାର ଅର୍ଥ ହେଉଛି ଦୂରବର୍ତ୍ତୀ ସ୍ଥାନରେ ବର୍ତ୍ତମାନ ନିର୍ମାତୃପୁରୁଷରହିତ ଯେଉଁ ଦାରୁମୟ ପୁରୁଷୋତ୍ତମ ନାମକ ଭଗବଦ୍‌ବିଗ୍ରହ ସମୁଦ୍ର ତୀରରେ ବିରାଜମାନ, ହେ ଅପରସ୍ତୁତିକାରି ! ସେହି ଦାରୁବ୍ରହ୍ମଙ୍କୁ ଆଶ୍ରୟ କର ଏବଂ ତାହାଙ୍କ ଉପାସନା ଦ୍ୱାରା ଶ୍ରେଷ୍ଠ ବସ୍ତୁ ଲୋକକୁ ଗମନ କର ) ।

ଶ୍ରୀ ଶ୍ରୀଦାରୁବିଗ୍ରହଙ୍କ ମୂର୍ତ୍ତି ଗଠନ ୧୯୬୮୭୨୯୦୫୩ ହେଲା ହୋଇଅଛି ବୋଲି ଆଗରୁ ସପ୍ରମାଣ ଉଲ୍ଲେଖ କରାଯାଇଛନ୍ତି—ଅର୍ଥାତ୍ ଏହା ସ୍ୱାୟମ୍ଭୁବମନୁଙ୍କ ଦ୍ୱିତୀୟ ଚତୁର୍ଯୁଗର କଥା । କିନ୍ତୁ ଶ୍ରୀକୃଷ୍ଣଙ୍କ ତିରୋଧାନ ଗତ ଦ୍ୱାପର ଯୁଗର ଶେଷ ଓ କଳିଯୁଗର ଆରମ୍ଭରେ ଅର୍ଥାତ୍ ମାତ୍ର ୫୦୫୩ ବର୍ଷ ହେଲା ହୋଇଅଛି । ତାଙ୍କ ଅଦଗ୍ଧ ଶରୀରର ପ୍ରଶ୍ନ ବା ଏ ପ୍ରସଙ୍ଗରେ କପର ଉଠିପାରେ ?

ଶ୍ରୀକୃଷ୍ଣଙ୍କ ଭାଇ ଶ୍ରୀ ବଳରାମଙ୍କର ଓ ଭଉଣୀ ଶ୍ରୀ ସୁଭଦ୍ରାଙ୍କର ଆବିର୍ଭାବ ମଧ୍ୟ ଗତ ଦ୍ୱାପରରେ ଅର୍ଥାତ ୫୦୫୩ ବର୍ଷତଳେ । କିନ୍ତୁ ଶ୍ରୀ ମନ୍ଦିରର ବଳଭଦ୍ର ଓ ସୁଭଦ୍ରାଙ୍କର ଆବିର୍ଭାବ ୧୯୬୮୭୨୯୦୫୩ ବର୍ଷ ତଳର କଥା ।

ଏ ପ୍ରସଙ୍ଗରେ "ଶ୍ରୀ ପୁରୁଷୋତ୍ତମକ୍ଷେତ୍ରର ଇତିହାସ ଓ ମାହାତ୍ମ୍ୟ"ର ପ୍ରଣେତା ପଣ୍ଡିତ ଶ୍ରୀକୃଷ୍ଣଚନ୍ଦ୍ର ଅଗ୍ରୱାଲ ଯାହା ଲେଖିଅଛନ୍ତି ତାହା ଅତୀବ ସମୀଚୀନ । ନିମ୍ନରେ ତାହା ଉଦ୍ଧାର କରି ଦିଆଗଲା ।

"ସୁଭଦ୍ରା ବିଷ୍ଣୁଙ୍କର ପ୍ରିୟତମା ଲକ୍ଷ୍ମୀ [ ସୁଭଦ୍ରା ଗୁରୁ-ବଦନା ବରାବ୍ଜାଭୟଧାରିଣୀ । ଲକ୍ଷ୍ମୀଃ ପ୍ରାଦୁର୍ଭବେତ୍ସ୍ୱୟଂ ସର୍ବଚୈତନ୍ୟରୂପିଣୀ ] ଅଟନ୍ତି । ଏହା ଜାଣିବା ଆବଶ୍ୟକ ଯେ ବଳଭଦ୍ର ଓ ସୁଭଦ୍ରା ଗତ ଦ୍ୱାପର ଯୁଗର କୃଷ୍ଣାବତାର ସମୟର ବହୁ ପୂର୍ବରୁ କଥିତ ହୋଇଥିଲେ । ଦ୍ୱାପରଯୁଗର ସୁଭଦ୍ରାଙ୍କ ଇତିହାସ ଏହି ଯେ କୃଷ୍ଣଙ୍କ ବିମାତା ରୋହିଣୀଙ୍କ ଗର୍ଭରୁ ତାହାଙ୍କର ଜନ୍ମ ଓ ତାଙ୍କୁ ଅର୍ଜୁନ ବିବାହ କରିଥିଲେ । ଅର୍ଜୁନଙ୍କ ଔରସରେ ତାଙ୍କ ଗର୍ଭରୁ ଅଭିମନ୍ୟୁ ଜାତ ହୋଇଥିଲେ । ପାଣ୍ଡବମାନଙ୍କ ବନବାସ କାଳରେ ସୁଭଦ୍ରା ପୁତ୍ର ସହିତ ପିତୃ ଗୃହରେ ଅବସ୍ଥାନ କଲେ । କୁରୁକ୍ଷେତ୍ର ଯୁଦ୍ଧରେ ଅଭିମନ୍ୟୁଙ୍କର ମୃତ୍ୟୁ ହେବାରୁ ସେ ଶୋକସନ୍ତପ୍ତା ହେଲେ । କିନ୍ତୁ ଅଭିମନ୍ୟୁଙ୍କ ସ୍ତ୍ରୀ ଉତ୍ତରାଙ୍କ ଗର୍ଭରୁ ପରୀକ୍ଷିତଙ୍କର ଜନ୍ମ ହେବାରୁ ସେ କିଞ୍ଚିତ ସାନ୍ତ୍ୱନା ଲାଭ କଲେ । ପରେ

ପାଣ୍ଡବମାନେ ମହାପ୍ରସ୍ଥାନ କରବାରୁ ପୌତ୍ର ଅର୍ଥାତ୍ ପରୀକ୍ଷିତଙ୍କୁ ସଙ୍ଗରେ ଘେନି ସୁଭଦ୍ରା ହସ୍ତିନାରେ ରହି ଶେଷ ଜୀବନ ଯାପନ କଲେ । ନୀଳାଚଳ ବିହାରୀ ଦାରୁବ୍ରହ୍ମ ଜଗନ୍ନାଥଙ୍କ ପ୍ରକୃତ ସ୍ୱରୂପିଣୀ ( ନୀଳାଚଳ ମନ୍ଦିରରେ ବିରାଜିତା ) ସୁଭଦ୍ରାଦେବୀଙ୍କୁ ଶ୍ରୀକୃଷ୍ଣଙ୍କ ବୈମାତ୍ରେୟ ଭଗିନୀ ଓ ଅର୍ଜୁନଙ୍କ ସ୍ତ୍ରୀ ବୋଲି ଗଣିତ କରିବା ଅତୀବ ହାସ୍ୟାସ୍ପଦ ଓ ଅନୁଚିତ ।''

ଏହି ମୂର୍ତ୍ତିଙ୍କୁ ବୌଦ୍ଧମାନେ ଓ ହିନ୍ଦୁ ଧର୍ମର ବିଭିନ୍ନ ସମ୍ପ୍ରଦାୟର ଅନୁଗାମୀମାନେ ନିଜ ନିଜର ଆରାଧ୍ୟ ବୋଲି ସେମାନଙ୍କୁ ନିମ୍ନଲିଖିତ ପ୍ରକାରରେ ଅଭିହିତ କରିଅଛନ୍ତି । ସାକ୍ଷାତ ପରଂବ୍ରହ୍ମ "ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାନ୍ତଥୈବ ଭଜାମ୍ୟହଂ" ନୀତିରେ ସାଦରେ ସେସବୁ ଅଭିଧା ଆତ୍ମସାତ୍ କରି ସମସ୍ତଙ୍କୁ ଅଭୟ ଦେଇଅଛନ୍ତି ।

ବୌଦ୍ଧମାନେ ତାଙ୍କୁ କହୁଛନ୍ତି—ବୁଦ୍ଧ, ସଘ ଓ ଧର୍ମ

ବୈଷ୍ଣବମାନେ ତାଙ୍କୁ କହୁଛନ୍ତି—ଗୁରୁ, ଜୀବ ଓ କୃଷ୍ଣ

ପାଶୁପତମାନେ କହୁଛନ୍ତି—ପଶୁ, ପାଶ ଓ ପତି

ବେଦାନ୍ତୀମାନେ କହୁଛନ୍ତି—ଈଶ୍ୱର, ମାୟା, ବ୍ରହ୍ମ

ଶ୍ରୀ ଶ୍ରୀ ଜଗନ୍ନାଥଙ୍କ କୃଷ୍ଣାବତାର ସମ୍ପର୍କରେ କବି ଭୂପତିପଣ୍ଡିତଙ୍କ ପ୍ରେମପଞ୍ଚାମୃତ ଗ୍ରନ୍ଥର ନିମ୍ନଲିଖିତ ପଂକ୍ତିମାନ ପ୍ରଣିଧାନ ଯୋଗ୍ୟ ।

ବସୁଦେବ ଉବାଚ

"ଅନେକ ତୀର୍ଥ ଯାତ୍ରା କଲୁଁ । ଶ୍ରୀ ପୁରୁଷୋତ୍ତମରେ ଥିଲୁଁ

ଯେ ଶୁଦ୍ଧ ଦକ୍ଷିଣ ପାରୁଶ । ରହିଲେଁ ଭକ୍ତ ଚତୁର୍ଦ୍ଦିଶ
ବୈଷ୍ଣବ ଗୋଷ୍ଠୀ ମଧ୍ୟେ ଥିଲେ । ତାଙ୍କ ପ୍ରଧାନ ଅଟିଲେଁ

×　　×　　×　　×

ତୁଳସୀ ଜପମାଳା ଧରି । ଜପୁଛନ୍ତି ନାମ ସଂଖ୍ୟା କରି
ଗୋବିନ୍ଦ ଗରୁଡ଼ବାହନ । ତତକ୍ଷେ ଦେଲେ ଦରଶନ

×　　×　　×　　×

ମୋତେ ବୋଇଲେ ଚକ୍ରଧର । ହେ ମହାତ୍ମା ମାଗ ବର
ତୁମଙ୍କୁ ହୋଇଲି ପ୍ରସନ୍ନ । ଯେ ବାଞ୍ଛା ମାଗ ବର ଧନ

×　　×　　×　　×

ବୋଇଲି ଗଦ୍‌ଗଦବଚନେ । କୋପ ନ କରିବୁଟି ମନେ
ତୁ ଯେଣୁ କରୁଣା ସାଗର । ଏଣୁ ଏ ଭରସା ମୋହର
ଭକ୍ତବତ୍ସଳ ବାନା ଶୁଣି । ଯେ ମନୋରଥ ମନେ ଗୁଣି
ହେ ନାଥ ! ତୁମ୍ଭ ପଶ୍ଚାନ୍ତର । ମାଗୁଛି ମୁଁ ଦୁଇ କୁମର
ତୁମ୍ଭର ରୂପଗୁଣ ଘେନି । ଜନ୍ମିବେ ମୋର ପୁତ୍ର ବେନି
ଆନନ୍ଦେ ରୂପ ଦେଖୁଥିବି । କୋଳେ ଘେନିଣ ତୁମ୍ଭେ ଦେବ
ସଙ୍ଗତେ ଭୁଞ୍ଜାଇ ଭୁଞ୍ଜିବି । ପଲଙ୍କେ ଘେନି ପହୁଡ଼ିବି
ଏ ବର ଦିଅ ଭଗବାନ । ମୋତେ ପ୍ରସନ୍ନ ଯେବେ ମନ
ସନ୍ତୁଷ୍ଟ ହେଲେ ନାରାୟଣ । ଏ ବର ଦେଲି ହେ ପ୍ରମାଣ
ଆମ୍ଭର ଆମ୍ଭ ପଶ୍ଚାନ୍ତର । ଆମ୍ଭେ ହୋଇବୁ ତୋ କୁମର
ଦ୍ୱାପର ଯୁଗ ହେବ ଶେଷ । ଆମ୍ଭେ ହୋଇବୁଁ ତୋର ଶିଷ"

ଭକ୍ତ ଦିବାକର ଦାସ ତାଙ୍କ ଜଗନ୍ନାଥ ଚରିତାମୃତରେ ମଧ୍ୟ ଲେଖିଛନ୍ତି ।

"ଯେହୁ ଗୋଲୋକ ମଧ୍ୟସ୍ଥଳ । ସେହୁ ଟି ଗିରି ନୀଳାଚଳ
କୋଟିଏ ଯୁଗ ଯେବେ ଯାଇ । ଏଥିର ଲୀଳା ନ ଚଳଇ
ଶ୍ରୀ ଜଗନ୍ନାଥେ ଷୋଳ କଳା । ଏଥୁଁ କଳାଏ ନନ୍ଦବଳା
କଳାକେ ଷୋଳକଳା ହୋଇ । ଯେଣ ଜନ୍ମିଲେ ଗୋପେଯାଇ"

ପୁଣି ଶ୍ରୀମଦ୍‌ଭାଗବତରେ ଅଛି

"ଏତେ ଚାଂଶକଳା ପୁଂସା କୃଷ୍ଣସ୍ତୁ ଭଗବାନ୍ ସ୍ୱୟଂ"

ସ୍ୱୟଂ ଭଗବାନ ଶ୍ରୀ ଶ୍ରୀ ଜଗନ୍ନାଥ ଶ୍ରୀକୃଷ୍ଣ ରୂପଧାରଣ କରି ଶ୍ରୀ ପୁରୁଷୋତ୍ତମରୁ ଗୋପ ମଥୁରା ଓ ଦ୍ୱାରକା ଲୀଳା ପାଇଁ ପୂର୍ଣ୍ଣକଳା ନେଇ ମର୍ତ୍ତ୍ୟକୁ ଯାଇଥିଲେ ଏହାହିଁ ଏ ବାକ୍ୟର ଅର୍ଥ ।।

ତେଣୁ ଶ୍ରୀ ଶ୍ରୀ ଜଗନ୍ନାଥ ସାକ୍ଷାତ ପରଂବ୍ରହ୍ମ ନାରାୟଣ, ଶ୍ରୀ ଶ୍ରୀ ବଳଭଦ୍ର ଅନନ୍ତ ଦେବ, ଶ୍ରୀ ଶ୍ରୀ ସୁଭଦ୍ରା ସାକ୍ଷାତ ମହାଲକ୍ଷ୍ମୀ ଓ ଶ୍ରୀ ଶ୍ରୀ ସୁଦର୍ଶନ ନିଖିଳ ବୈଷ୍ଣବାସ୍ତ୍ରର ନିକେତନ ।

ଏ ଜଗନ୍ନାଥଜଣାଣ ଭଜନର ଭକ୍ତକବିମାନେ ଅପୌରୁଷେୟ ଦାରୁମୟ ପରଂବ୍ରହ୍ମଙ୍କର ବା ତାଙ୍କ ଅବତାର ମାନଙ୍କର ବନ୍ଦନା କରି ଭକ୍ତସମାଜପାଇଁ ଅପୂର୍ବ ସମ୍ଭାର ସଞ୍ଚୟ କରିଯାଇଅଛନ୍ତି । ଜଣାଣ ଭଜନମାନଙ୍କର ପ୍ରତି ଛନ୍ଦରୁ ଅମୃତ ନିଃସ୍ୟନ୍ଦିତ ହୋଇ ପଡ଼ୁଛି । ପରଂବ୍ରହ୍ମଙ୍କ ମହିମାଗାନ କରି ରସନା କଣ୍ଠ ଶୁଦ୍ଧି ତଥା ଜୀବନକୁ ଧନ୍ୟ କରିବା ନିମନ୍ତେ ଓଡ଼ିଆ ଭାଷାରେ ଏହା ଅଦ୍ୱିତୀୟ

ଛନ୍ନ ହୋଇଅଛି । ଏ ସଂକଳନ ଓ ରଚନାର ଅବକାଶ ଯୁଟାଇ ମହାପ୍ରଭୁ ମୋ ଭଳି ପତିତଜନଙ୍କୁ କୃତାର୍ଥ କରିଅଛନ୍ତି । ନିରନ୍ତର ଭବଭୀତ ମୁଁ ଅଧମ ମାନସିକ ଭାବରେ ଗରୁଡ଼ ପଛରେ ରହି ସଦାସର୍ବଦା ମହାପ୍ରଭୁ ଶ୍ରୀ ଶ୍ରୀ ନୀଳାଚଳସାମନ୍ତଙ୍କୁ ରୁଦ୍ଧକଣ୍ଠରେ ଆକୁଳ ନିବେଦନ କରୁଛି

ବଡ଼ ଦାଣ୍ଡ ଧୂଳି ହବ !

ବିଭୂତି ହେବ କି ଅଙ୍ଗେ ମୋହର ହେ

ବିଦେହ ହେବ ଶ୍ରୀମୁଖ ହେର

ସାମନ୍ତ ହେ !

ଜୟ ମା କଳିଙ୍ଗ ଭାରତୀ

| | |
|---|---|
| କଳିଙ୍ଗ ଭାରତୀ ଭଞ୍ଜଜୟନ୍ତୀ<br>୧୬ । ୫ । ୫୬<br>କଟକ | ଶ୍ରୀ ବିଚ୍ଛନ୍ଦଚରଣ ପଟ୍ଟନାୟକ<br>ପ୍ରତିଷ୍ଠାତା-ସଭାପତି<br>କଳିଙ୍ଗ ଭାରତୀ |



ଓଁ

# ଶ୍ରୀ ଶ୍ରୀ ଜଗନ୍ନାଥାର୍ପଣମ୍

ଚଳିତ ଅଗଷ୍ଟ ମାସ ୧୨ ତାରିଖ ରବିବାର ଦିନ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରରେ ଶ୍ରୀମନ୍ଦିର ଗରୁଡ଼ସ୍ତମ୍ଭ ନିକଟରେ ଦିନ ସାଢ଼େ ଏଗାର ଘଣ୍ଟାଠାରୁ ସନ୍ଧ୍ୟା ସାଢ଼େ ଛଅ ଘଣ୍ଟା ପର୍ଯ୍ୟନ୍ତ ଶ୍ରୀ ଶ୍ରୀ ଜଗନ୍ନାଥ ଜଣାଣ ଭଜନର ଶହେଆଠ ଗୀତ ମୁଁ ଗାନ କରି ପୂର୍ବ ସଂକଳ୍ପମତେ ଶ୍ରୀ ଶ୍ରୀ ମହାପ୍ରଭୁ ଜଗନ୍ନାଥଙ୍କୁ ସମର୍ପଣ କରିଅଛି । ସମର୍ପଣବେଳେ ମୋ ସହିତ ଉତ୍କଳ ଯୁବ ସାହିତ୍ୟ ସମାଜର ସମ୍ପାଦକ ଶ୍ରୀମାନ୍ ଶରତ କୁମାର କର ରହିଥିଲେ । ଏଣିକି ଏ ଗ୍ରନ୍ଥ ପ୍ରଚାରିତ ହୋଇପାରିବ । ଗତ ମେ ମାସରେ ଭଞ୍ଜଜୟନ୍ତୀ ଉପଲକ୍ଷେ ପ୍ରକାଶିତ ହୋଇଥିଲେ ସୁଦ୍ଧା ସମର୍ପଣ ହୋଇ ନ ପାରିଥିବାରୁ ଏହାର ପ୍ରଚାର ସ୍ଥଗିତ ରଖା ଯାଇଥିଲା ।

ବିନୀତ

କଳିଙ୍ଗ ଭାରତୀ ଭବନ
କଟକ-୨
୧୦ । ୮ । ୫୬

ଶ୍ରୀ ବଛନ୍ଦ ଚରଣ ପଟ୍ଟନାୟକ
ପ୍ରତିଷ୍ଠାତା-ସଭାପତି, କଳିଙ୍ଗ ଭାରତୀ ଓ
ଉତ୍କଳ ଯୁବ ସାହିତ୍ୟ ସମାଜ

# କୃତଜ୍ଞତା

ଏ ଗ୍ରନ୍ଥର ମୁଖବନ୍ଧ ଲେଖିବାରେ ଗୌଡ଼ୀୟ ମିଶନ ପ୍ରକାଶିତ ଶ୍ରୀକ୍ଷେତ୍ର ( ବଙ୍ଗଳା ) ୰ଅଧ୍ୟାପକ ଲକ୍ଷ୍ମୀକାନ୍ତ ଚୌଧୁରୀଙ୍କ ସମ୍ପାଦିତ ପ୍ରେମପଞ୍ଚାମୃତ, ଦିବାକର ଦାସଙ୍କ ରଚିତ ଶ୍ରୀଜଗନ୍ନାଥ ଚରିତାମୃତ ଓ ପଣ୍ଡିତ ଶ୍ରୀ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟଙ୍କ ପ୍ରଣୀତ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରର ଇତିହାସ ଓ ମାହାତ୍ମ୍ୟ ପୁସ୍ତକମାନଙ୍କର ସାହାଯ୍ୟ ନିଆଯାଇଛି । ସ୍କନ୍ଦ ପୁରାଣର ଭିତ୍ତିରେ ଲିଖିତ ଶେଷୋକ୍ତ ପୁସ୍ତକର ଅଂଶବିଶେଷ ଅବିକଳ ଏଥିରେ ଉଦ୍ଧାର କରାଯାଇଛି । ଏଥିପାଇଁ ମୁଁ ଗ୍ରନ୍ଥକାରମାନଙ୍କ ନିକଟରେ କୃତଜ୍ଞ ।

କଳିଙ୍ଗ ଭାରତୀ ଭବନ
କଟକ-୨
୧୪ । । ୫୬

ଶ୍ରୀ ବିନ୍ଦୁବନ୍ଦ ଚରଣ ପଟ୍ଟନାୟକ
ପ୍ରତିଷ୍ଠାତା-ସଭାପତି, କଳିଙ୍ଗ ଭାରତୀ ଓ
ଉତ୍କଳ ଶିଶୁ ସାହିତ୍ୟ ସମାଜ

# ଶ୍ରୀ ଶ୍ରୀ ଜଗନ୍ନାଥ ଜଣାଣ ଭଜନ

## ପ୍ରଥମ ପଂକ୍ତିମାନଙ୍କ ଆଦ୍ୟ ବର୍ଣ୍ଣମାଳାନୁସାରୀ

# ସୂଚୀପତ୍ର

( ଚ )

ପଂକ୍ତି   କବି   ପୃଷ୍ଠା

( ଧ )

ପଂକ୍ତି କବି ପୃଷ୍ଠା

( ନ )

ପଂକ୍ତି | ଭକ୍ତ | ପୃଷ୍ଠା

| ସଂଖ୍ୟା | ରଚନା | ପୃଷ୍ଠା |
|---|---|---|

( ଘ )

୧୦୮ । ଷୀରମସ୍ତ୍ୱ-ସିନ୍ଧୁ-
ଜେମା-ପ୍ରାଣବନ୍ଧୁ !
(ଶ୍ରୀ ଜଗନ୍ନାଥପଦଶରଣ ଜଣାଣ)
ଭକ୍ତସୂର୍ଯ୍ୟ ବଳଦେବ ରଥ ୧୪୩



# ଗୀତକଳ୍ପତରୁ

## ଦ୍ୱିତୀୟ ଶାଖା

## ଶ୍ରୀ ଶ୍ରୀ ଜଗନ୍ନାଥ ଜଣାଣ ଭଜନ



( ଏକ )

### ଶ୍ରୀ ଶ୍ରୀ ଜଗନ୍ନାଥାଷ୍ଟକ

ଶ୍ରୀ ଶ୍ରୀ ମହାପ୍ରଭୁ ଶ୍ରୀଚୈତନ୍ୟ
( ପଞ୍ଚଦଶ ଶତାବ୍ଦୀ )

ପଦ୍ୟାର—ଶ୍ରୀ ବଚ୍ଛନ୍ଦଚରଣ ପଟ୍ଟନାୟକ
( ବିଂଶ ଶତାବ୍ଦୀ )

କ ଦା ଚି ତ୍ କାଳିନ୍ଦୀତଟ-ବିପିନ-ସଙ୍ଗୀତକରବୋ
ମୁଦାଭୀରୀ-ନା ରୀ-ବ ଦ ନ କ ମ ଳା ସ୍ୱା ଦ-ମ ଧୁ ପଃ
ରମା-ଶମ୍ଭୁ-ବ୍ର ହ୍ମା ମ ର ପ ତି ଗ ଣେ ଶା ର୍ଚ୍ଚି ତ ପ ଦୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୧।

[ ରାଗ—ଶ୍ରୀ ]

(ପୟାର)

ଗୋପଅଙ୍ଗନା-ବଦନ- କମଳୁଁ ଯେ ମଧୁପାନ
କଲେକ ଅଧର ଯାଙ୍କ ମୁରଲୀ-ନାଦ
କାଳନ୍ଦୀ-ତଟ-ବିପିନ କଲେକ ମୋଦେ ମଗନ
ରମ୍ବା ଶମ୍ଭୁ ଆଦରେ ଯେ ପୂଜିତ-ପଦ
ପଥୁଁକ ମୋ ନୟନପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ ସେ ଜଗନ୍ନାଥେ ।୧।

ଭୁଜେ ସବ୍ୟେ ବେଣୁଂ ଶିରସି ଶିଖିପୁଚ୍ଛଂ କଟୀତଟେ
ଦୁକୂଳଂ ନେତ୍ରାନ୍ତେ ସହଚର କଟାକ୍ଷଂ-ବିଲସୟନ୍
ସଦାଶ୍ରୀମଦ୍ ବୃନ୍ଦାବନବସତିଲୀଳା-ପ ରି ଚ ୟୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୨।

(ପୟାର)

ବାମକରେ ମୁରଳିକା * ଶିରେ ଶିଖିପୁଚ୍ଛଶିଖା †
କଟୀତଟେ ପୀତାମ୍ବର ଯାଙ୍କ ଶୋଭିତ
କଟାକ୍ଷବାଣ ପ୍ରହାରି ମୋହନ୍ତ ଯେ ଗୋପନାରୀ
ଶ୍ରୀବୃନ୍ଦାକାନନେ ନିତ୍ୟ ହୋଇଣ ସ୍ଥିତ
ପଥୁଁକ ମୋ ନୟନପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ ସେ ଜଗନ୍ନାଥେ ।୨।

* ମୁରଳିକା—ବଂଶୀ † ଶିଖିପୁଚ୍ଛଶିଖା—ମୟୂରଚନ୍ଦ୍ରିକା ଚୂଳ

ମହାମ୍ଭୋଧେସ୍ତୀରେ କନକରୁଚିରେ ନୀଳଶିଖରେ
ବସନ୍ ପ୍ରାସାଦାନ୍ତଃ ସହଜ ବଳଭଦ୍ରେଣ ବଳିନା
ସୁଭଦ୍ରାମଧ୍ୟସ୍ଥଃ ସକଳସୁରସେବାବସରଦୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୩।

(ପୟାର)

ଯେଉଁ ମହୋଦଧିତୀରେ ସ୍ୱର୍ଣ୍ଣକାନ୍ତି ନୀଳାଦ୍ରିରେ
ସ୍ଥିତ ମହାମନ୍ଦରରେ ନିତ୍ୟ ସ୍ୱଳିତ
ସାଦରେ ସଙ୍ଗତେ ଘେନି ବଳଭଦ୍ର ଭଦ୍ରା ବେନି
ଦେବଙ୍କୁ ସମ୍ପୃରସେବା କାରଣ ଦତ୍ତ
ପଡ଼ୁନ୍ତୁ ମୋ ନୟନପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ ସେ ଜଗନ୍ନାଥେ ।୩।

କୃପାପାରାବାରଃ ସଜଳଜଳଦଶ୍ରେଣୀରୁଚିରୋ
ରମାବାଣୀରାମଃ ସ୍ଫୁରଦମଳପଙ୍କେରୁହମୁଖଃ
ସୁରେନ୍ଦ୍ରୈରାରାଧ୍ୟଃ ଶ୍ରୁତିଗଣଶିଖାଗୀତଚରିତୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୪।

(ପୟାର)

ଯେଉଁ କୃପା-ପାରାବାର ନବନୀରଦରୁଚିର
ରମାବାଣୀ-ବିନୋଦନ କମଳାନନ
ଲକ୍ଷକୋଟି ଦେବରାଜ ଶିରେ ଯାଙ୍କ ପଦରଜ
ବହନ୍ତି ବେଦାନ୍ତ ଯାଙ୍କୁ କରେ ବଖାଣ
ପଡ଼ୁନ୍ତୁ ମୋ ନୟନପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ ସେ ଜଗନ୍ନାଥେ ।୪।

ରଥାରୂଢୋ ଗଚ୍ଛନ୍ ପଥି ମିଳିତଭୂଦେବପଟଳୈଃ
ସ୍ତୁତିପ୍ରାଦୁର୍ଭାବଂ ପ୍ରତିପଦମୁପାକର୍ଣ୍ଣ୍ୟ ସଦୟଃ
ଦୟାସିନ୍ଧୁର୍ବନ୍ଧୁଃ ସକଳଜଗତାଂ ସିନ୍ଧୁସୁତାୟାଃ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୫।

(ପୟାର)

ଜୟ ପ୍ରଭୁ କରୁଣାସିନ୍ଧୁ ଅଖିଳ ଜଗତବନ୍ଧୁ
ସିନ୍ଧୁ-ସୁତା-ଶଚ୍-ଇନ୍ଦୁ ଗମନ୍ତେ ରଥେ
ବିପ୍ରଗଣ ପଥେ ମିଳି ଗାଆନ୍ତେ ସ୍ତୁତିଆବଳୀ
ଯେନା ଯେ କରନ୍ତି ସ୍ତୁତିକଥା ଶୁଣତେ
ପଡୁକ ମୋ ନୟନପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ ସେ ଜଗନ୍ନାଥେ ।୫।

ପରବ୍ରହ୍ମାପୀଡଃ କୁବଳୟଦଳୋତ୍ଫୁଲ୍ଲନୟନୋ
ନିବାସୀ ନୀଳାଦ୍ରୌ ନିହିତଚରଣୋଽନନ୍ତଶିରସି
ରସାନନ୍ଦୋ ରାଧାସରସବପୁରାଲିଙ୍ଗନସୁଖୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୬।

(ପୟାର)

ବ୍ରହ୍ମଶିରଭୂଷଣ ପଦ୍ମପଲାଶଲୋଚନ
ନୀଳାଦ୍ରିବିହାରୀ ଯେ ଅନନ୍ତ-ମସ୍ତକେ
ପୟର ଥାପି ଆସୀନ ସଦା ରସାନନ୍ଦ ଘନ
ମଗନ ଶ୍ରୀରାଧାଅଙ୍ଗ-ଆଶ୍ଳେଷସୁଖେ
ପଡୁକ ମୋ ନୟନପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ ସେ ଜଗନ୍ନାଥେ ।୬।

ନ ବୈ ଯାଚେ ରାଜ୍ୟଂ ନ ଚ କନକମାଣିକ୍ୟବିଭବଂ
ନ ଯାଚେଽହଂ ରମ୍ୟାଂ ସକଳଜନକାମ୍ୟାଂ ବରବଧୂମ୍
ସଦା କାଲେ କାଲେ ପ୍ରମଥପତିନା ଗୀତଚରିତୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୭।

(ପଦ୍ୟାର)

ନ ମାଗଇଁ ରାଜ୍ୟସୁଖ ନ ମାଗେଁ ମଣି ମାଣିକ୍ୟ
ନ ମାଗେଁ ନୟନନନ୍ଦ ବର କାମିନୀ
ଯାହାଙ୍କ ଚରିତାବଳୀ ଗାଆନ୍ତି ଚନ୍ଦ୍ରମଉଳି *
ପଦ୍ମଣ ଲୋଡ଼େ ମୋ ତାଙ୍କୁ ଦିନଯାମିନୀ
ପଡ଼ନ୍ତୁ ମୋ ନୟନପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ ସେ ଜଗନ୍ନାଥେ ।୭।

ହର ତ୍ୱଂ ସଂସାରଂ ଦ୍ରୁତତରମସାରଂ ସୁରପତେ
ହର ତ୍ୱଂ ପାପାନାଂ ବିତତିମପାରାଂ ଯାଦବପତେ
ଅହୋ ଦୀନାନାଥେ ନିହିତମଚଲଂ ନିଶ୍ଚିତପଦଂ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୮।

(ପଦ୍ୟାର)

ଅସାର ସଂସାର ବନ୍ଧ ଛେଦ ମୋ ଶୀଘ୍ରେ ମୁକୁନ୍ଦ !
ଅତଳ ପାପପୟୋଧି ଦିଅ ଶୁଖାଇ
ହେ ନାଥ ! ଦୀନ ଅନାଥ ପାଇଁ ଶାଶ୍ୱତ ନିଶ୍ଚିତ
ପ୍ରେମପଦ ଯେବେ ଏଥି ଅଛ ରଖାଇ

---

* ଚନ୍ଦ୍ରମଉଳି—ମହାଦେବ

ପଥୁକ ମୋ ନୟନପଥେ
ତୁଅନ୍ତୁ ପ୍ରାଣସ୍ୱାମୀ ମୋ ସେ ଜଗନ୍ନାଥେ ।୮।

ଜଗନ୍ନାଥାଷ୍ଟକଂ ପୁଣ୍ୟଂ ଯଃ ପଠେତ୍ ପ୍ରଯତଃ ଶୁଚିଃ
ସର୍ବପାପବିଶୁଦ୍ଧାତ୍ମା ବିଷ୍ଣୁଲୋକଂ ସ ଗଚ୍ଛତି ।୯।

(ପୟାର)

ପ୍ରାକୃତ ପଦେ ପୟାର ରଚିଲା ବିଚ୍ଛନ୍ଦ ସ୍ୱର
ସ୍ଥିରମନେ ଶୁଣିମନ୍ତ ହୋଇ ଗାଇଲେ
ପାତକ-ପାତକମାନ ତୁଅଇ ହୋଇଲେ ଦହନ
ଅନ୍ତେ ବିଷ୍ଣୁଲୋକେ ଗତ ହୁଏ ତା'ଭଲେ
ଜୟ ଜୟ ଶ୍ରୀ ଜଗନ୍ନାଥ
ନିତ୍ୟକାଳ ପଦେ ତୁମ୍ଭ ଲୋଟୁ ମୋ ମାଥ ।୯।



( ଦୁଇ )

# ଶ୍ରୀ ଶରଣାଗତିସ୍ତୋତ୍ର

## ଶ୍ରୀମତ୍ ଯମୁନାଚାର୍ଯ୍ୟ

(ନବମ ଶତାବ୍ଦୀ)

ପଦ୍ୟାନ୍ତର—ଶ୍ରୀ ବଞ୍ଛନ୍ଦଚରଣ ପଟ୍ଟନାୟକ

( ବିଂଶ ଶତାବ୍ଦୀ)

ନମୋ ନମୋ ବାଙ୍ମନସାତିଭୂତୟେ
ନମୋ ନମୋ ବାଙ୍ମନସୈକଭୂତୟେ
ନମୋ ନମୋଽନନ୍ତମହାବିଭୂତୟେ
ନମୋ ନମୋଽନନ୍ତଦୟୈକସିନ୍ଧବେ ।୧।

ରାଗ ଓଗ୍ରୁଷ ]

(ପୟାର)

ନମଇଁ ପୁରୁଷୋତ୍ତମ ନମଇଁ ତତ୍ତ୍ୱ ପରମ
ବାକ୍ୟ ମନ ନ ପାରନ୍ତି ତୁମ୍ଭଙ୍କୁ ଗମି
ଅତଏବ ବାକ୍ୟ ମନର ଏକଇ ତୁମ୍ଭେ ଆବର;
ଅନନ୍ତ ମହାବିଭୂତିଧର ହେ ସ୍ୱାମି !
ଅନନ୍ତ କୃପାର ସାଗର
ନାହିଁ ନାହିଁ ଏଡ଼େ କୃପାବନ୍ତ ଠାକୁର ।୧।

ନ ଧର୍ମନିଷ୍ଠୋଽସ୍ମି ନ ଚାତ୍ମବେଦୀ
ନ ଭକ୍ତିମାଂସ୍ତ୍ୱଚ୍ଚରଣାରବିନ୍ଦେ
ଅକିଞ୍ଚନୋଽନନ୍ୟଗତିଃ ଶରଣ୍ୟଂ
ତ୍ୱତ୍ପାଦମୂଲଂ ଶରଣଂ ପ୍ରପଦ୍ୟେ ।୨।

(ପୟାର)

ଧର୍ମେ ନିଷ୍ଠା ନାହିଁ ମୋର    ଆତ୍ମା ନାହିଁ ମୋ ଗୋଚର
ତୁମ୍ଭ ଚରଣାରବିନ୍ଦେ ନାହିଁ ଭକତି
ମୁଁ ଯେ ଦୀନ ଅକିଞ୍ଚନ    ଗତି ମୋର ନାହିଁ ଆନ
ତୁମ୍ଭରେ ଶରଣ ବିନା ଅହେ ଶ୍ରୀପତି !
ତୁମ୍ଭେ ଯେ ଶରଣସୋଦର
* କାରଣ କରିବା ମୋରେ କରୁଣାକର ! ।୨।

ନ ନିନ୍ଦିତଂ କର୍ମ ତଦସ୍ତି ଲୋକେ
ସହସ୍ରଶୋ ଯନ୍ନମୟା ବ୍ୟଧାୟି
ସୋଽହଂ ବିପାକାବସରେ ମୁକୁନ୍ଦ
କ୍ରନ୍ଦାମି ସମ୍ପ୍ରତ୍ୟଗତିସ୍ତବାଗ୍ରେ ।୩।

(ପୟାର)

ନିନ୍ଦିତ କର୍ମ ଏମନ୍ତେ    ନାହିଁ ଗୋଟିଏ ଜଗତେ
ଯାହା ମୁଁ ନାହିଁ ଆଚରି ସହସ୍ରବାର
ଫଳ ଆଜି ସେ ସବୁର    ଭୋଗି ମୁଁ ଅତି କାତର
ନ ଦେଖିଣ ଗତି ଆନ ତୁମ୍ଭ ଆଗର
ବିକଳରେ ଘୁଚେଡ଼େ ବୋବାଳି
ଶରଣ ସମ୍ଭାଳ ମୋର ହେ ବନମାଳି !

---

* କାରଣ କରିବା—ସଦ୍‌ଗତି ପ୍ରଦାନ କରନ୍ତୁ

ନମସ୍ତତୋଽନନ୍ତ ଭବାର୍ଣ୍ଣବାନ୍ତଃ
ଶରଣ୍ୟ ମେ କୂଲମିବାସି ଲବ୍ଧଃ
ତ୍ୱୟ୍ୟାପି ଲବ୍ଧଂ ଭଗବନ୍ନିଦାନୀ
ଅନୁତ୍ତମଂ ପାତ୍ରମିଦଂ ଦୟାୟାଃ ।୪।

(ପୟାର)

ଅଥଳ ଭବ ସାଗରେ ବୁଡ଼ୁ ବୁଡ଼ୁ ମୁଁ କାତରେ
ଏତେ ଦିନେ ଥଳ କର ତୁମ୍ଭଙ୍କୁ ହରି !
ପାଇ ତରିଯିବ ବୋଲି ଆଶାନାଦ୍ ଅଛି ମୋର
କୃପାର ସୁପାତ୍ର ପୁଣି ତୁମ୍ଭେ ମୋ ସର
ଲଭିଅଛ ହେ ଜଗଦୀଶ !
ନିଅ ତାରି ନାଶି ତମ ଦଶାଇ * ଦଶ ।୪।

ଅଭୂତପୂର୍ବଂ ମମ ଭାବ କିଂ ବା
ସର୍ବଂ ସହେ ମେ ସହଜଂ ହି ଦୁଃଖମ୍
କିନ୍ତୁ ତ୍ୱଦଗ୍ରେ ଶରଣାଗତାନାଂ
ପରାଭବୋ ନାଥ ନ ତେଽନୁରୂପ ।୫।

(ପୟାର)

ତୁମ୍ଭ ଶ୍ରୀଚରଣଗତେ ଆଶ୍ରା ନେଉଁ, ଆଗମ୍ଭିତେ
ଆସିଲେ କର୍ମକଷଣ ନେବଇଁ ବାର
ଆବାଲ୍ୟଁ ଯେଣୁ ବିପତ୍ତି ଅଛଇ ମୋ ସାଙ୍ଗସାଥୀ
ଆଶ୍ରିତର କଦର୍ଥନା କଦ୍ଧା କାଯର

* ଦଶାଇ—ଦେଖାଇ

ଆଖି ଆଗେ କମଳାନନ !
ଦେଖିବ ଉଡ଼ାଇ ଖେଦଦାୟି-କେତନ ? ।୫।

ନାସ୍ତସକସ୍ୟାପି ନ ତାବଦୁସ୍ତହେ
ମହେଶ ହାତୁଂ ତବପାଦପଙ୍କଜମ୍
ରୁଷା ନିରସ୍ତୋଽପି ଶିଶୁଃ ସ୍ତନନ୍ଧୟଃ
ନ ଜାତୁ ମାତୁଶ୍ଚରଣୌ ଜହାସ୍ୟତି । ୬ ।

(ପୟାର)

ତୁମ୍ଭେ ଯଦି ଫିଙ୍ଗିଦିଅ ମୋତେ ହେ କରୁଣାମୟ !
ସାଉଁଟି ପୟର ତୁମ୍ଭ ଧରିବ ଦୃଢ଼େ
ଅନ ପାନ ଦେଉଁ ମାତା ହୋଇଣ ଯେବେ କୁପିତା
ଶିଶୁରେ ଏଡ଼ଇ ଶିଶୁ ତାରେ କି ଛାଡ଼େ ?
ତେବେହେଁ ମୁଁ ଯେ ତୁମ୍ଭ ଆଶ୍ରିତ
ମୁହିଁ ଅନାଥକୁ ତୁମ୍ଭେ ଜଗତନାଥ। ୬ ।

ତବାମୃତସ୍ୟନ୍ଦିନି ପାଦପଙ୍କଜେ
ନିବେଶିତାତ୍ମା କଥମନ୍ୟଦିଚ୍ଛତି
ସ୍ଥିତେଽରବିନ୍ଦେ ମକରନ୍ଦନିର୍ଭରେ
ମଧୁବ୍ରତୋ ନ କ୍ଷୁରକଂ ହି ବୀକ୍ଷତେ । ୭ ।

(ପୟାର)

ତୁମ୍ଭ ପାଦପଦ୍ମେ ଯାର ଚିତ୍ତ ହୋଇ ମଧୁକର
ଥରେକ ଲୁଗିଲ ସୁଧା ତହିଁ ଯା ଝରେ
ସେ କି ଆଉ ମୋହେ ପଡ଼ େ ନାଥ ହେ ! ତୁମ୍ଭଙ୍କୁ ଛାଡ଼
ମଜ୍ଜଇ ସପନେ ହେଲେ ଆନ ରସରେ ?

କମଳ-ଭୋଗିଲା ଭ୍ରମର
ବାସଙ୍ଗ ଫୁଲେ କି ଆଖି ପକାଏ ଆର ? * । ୭ ।

ଉଦୀର୍ଣ୍ଣ ସଂସାର ଦବାଶୁଶୁକ୍ଷଣିଂ
କ୍ଷଣେନ ନିର୍ବାପ୍ୟ ପରଂ ଚ ନିର୍ବୃତମ୍
ପ୍ରଯଚ୍ଛତି ତ୍ୱଚ୍ଚରଣାରୁଣାମ୍ବୁଜ
ଦ୍ୱୟାନୁରାଗାମୃତସିନ୍ଧୁଶୀକରଃ । ୮ ।

(ପଦ୍ୟାର)

ଏ ସଂସାର ଦାବାନଳ ଦ୍ୱୋଇଣେ ଅତି ପ୍ରବଳ
ମହାବେଗେ ଦହେ ଧ୍ୱଂସି ଜୀବନବନ
ତୁମ୍ଭର ରଙ୍ଗାଚରଣ- ଭକତିରୁ ଏକ କଣ
ମାତର ହୁଏ ସେ ଅନଳର ଶମନ ✝
ଉପୁଜାଇ ଶାଶ୍ୱତ ଶାନ୍ତି
ଦଅଇ ହୃଦୟେ ଭରି ପରା-ନିର୍ବୃତି । ୮ ।

ବଲାତ୍ସବନ୍ଧାନ୍ତପରିବର୍ଲଯ୍ୟଂ
ନମସ୍ୟଦାର୍ତ୍ତିକ୍ଷପଣେ କୃତକ୍ଷଣମ୍
ଧନଂ ମଦୀୟଂ ତବ ପାଦପଙ୍କଜମ୍
କଦା ନୁ ସାକ୍ଷାତ୍କରବାଣି ଚକ୍ଷୁଷା । ୯ ।

---

* ଆର—ଅନ୍ୟ  ✝ ଶମନ—ଶାନ୍ତିକାରୀ; ପରା—ପରମ

(ପୟାର)

ତୁମ୍ଭ କମଳ ଚରଣ    ଲୀଳାରେ ତିନି ଭୁବନ
ବ୍ୟାପନ୍ତେ ପାତାଳପୁରେ ଗଲ୍କ ବଳି
ତହିଁରେ କରୁଣାମୟ !    ଭକତ ଖେଦନାଶୟ
ନିରନ୍ତର ପଗ୍ରା ଦେଇଥାଅ ହି ଦଳି !
ସେ ଯେ ମୋର ନିଧି ଏକଇ
ନୟନେ ଦେଖିବ କେବେ ଦଅ ହେ କହି । ୯ ।

ଭ ବ ନ୍ତ ମେ ବା ନୁ ଚ ର ନ୍ନି ର ନ୍ତ ରଂ
ପ୍ରଶାନ୍ତ ନିଃଶେଷ ମନୋରଥାନ୍ତରଃ
କ ଦା ହ ମୈ କା ନ୍ତି କ ନି ତ୍ୟ କି ଙ୍କ ରଃ
ପ୍ରହର୍ଷୟିଷ୍ୟାମି ସନାଥ ଜୀବିତଃ । ୧୦ ।

(ପୟାର)

କାମନାର ଅବଶେଷ    ନ ରଖି ଶରୀରେ ଲେଶ
କେବେ ମୁଁ ଏକାନ୍ତେ ତୁମ୍ଭ ନିତ୍ୟ କିଙ୍କର
ହେବଇଁ ହେ ଜଗନ୍ନାଥ ;    ତୁମ୍ଭଙ୍କୁ କରି ମୋ ନାଥ
ସେବାରେ ଦେଇ ହରଷ ନିତ୍ୟକାଳର
ମୋରେ ତାହା ଦଅ ଦତାଇ
ଯେଣୁ କରି ମିନତି ମୋ ରାଧିକାଙ୍କାଇଁ । ୧୦ ।

ଅ ପ ରା ଧ ସ ହ ସ୍ର ଭା ଜ ନଂ
ପତିତଂ ଭୀମଭବାର୍ଣ୍ଣବୋଦରେ
ଅଗତିଂ ଶରଣାଗତଂ ହରେ
କୃପୟା କେବଳମାତ୍ମସାତ୍କୁରୁ । ୧୧ ।

(ପୟାର)

ସହସ୍ର ଅପରାଧରେ ଅପରାଧୀ ଶ୍ରୀପୟରେ
ଭୀମ * ଭବ-ଜଳଧିରେ ଯାଉଛନ୍ତି ବୁଡ଼ି
ନାହିଁ ଆନ ଗତି ମୋର ଶରଣ ନେଲେଁ ତୁମ୍ଭର
କ୍ଷମ ଯେତେ ଅପରାଧ କରିଛନ୍ତି ହୁଡ଼ି
ଆପଣାର ଗଣରେ ଗଣି
ଆପଣାର କର ମୋତେ ରାଧାରମଣି । ୧୧ ।

ନ ମୃଷା 'ପରମାର୍ଥମେବ ମେ
ଶୃଣୁ ବ ଜ୍ଞା ପ ନ ମେ କ ମ ଗ୍ର ତଃ
ଯଦି ମେ ନ ଦୟିଷ୍ୟସେ ତତୋ ଦୟ-
ନୀୟସ୍ତବ ନାଥ ଦୁର୍ଲଭଃ । ୧୨ ।

(ପୟାର)

ମିଛ କହୁ ନାହିଁ ହରି ! ସତ ଏ କଥା ମୋହର
ତୁମ୍ଭ ଶ୍ରୀଛାମୁରେ ମୋର ଏ ନିବେଦନ
ଦୟା ନ କଲେ ମୋ ପର ଦୟାକୁ ଯୋଗ୍ୟ ହେବାର
ନ ମିଳିବ ପାଇ କାହିଁ ତିନି ଭୁବନ

* ଭୀମ—ଭୟଙ୍କର

ତୁମ୍ଭେ ନାଥ ଦୟାସାଗର
ମୁଁ ପରା ପତିତାଧମ ପାତକୀ ଘୋର ।୧୨।

ତଦହଂ ତ୍ୱଦୃତେ ନ ନାଥବାନ୍
ମଦୃତେ ତ୍ୱଂ ଦୟନୀୟବାନ୍ ନ ଚ
ବିଧିନିର୍ମିତମେତଦନ୍ୱୟଂ ଭଗବନ୍
ପାଲୟ ମାସ୍ମ ଜୀହପଃ ।୧୨।

( ପୟାର )

ତୁମ୍ଭ ବିନୁଁ ନାଥ ମୋର     ମୋ ବିନୁ ତୁମ୍ଭ ଅପର
ଦୟାର ଏଡ଼େ ସୁପାତ୍ର ନାହିଁ ଟି କେହି
ତୁମ୍ଭେ ହେବ ସ୍ୱାମୀ ମୋର,     ମୁଁ ହେବଇଁ ପରିକର
ମଣେଁ ମୁଁ ଏହା ମୁକର ଲହିଛି ବହି
ବିହିଲିପି କର ସଫଳ
ଖଣ୍ଡନ ନ କର କେବେଁ ହେ ଆଦମୂଳ ।୧୩।

ବପୁରାଦିଷୁ ଯୋଽପି କୋଽପି ବା
ଗୁଣତୋଽସାନି ଯଥା ତଥାବିଧଃ
ତଦୟଂ ତବ ପାଦପଦ୍ମୟୋ
ରହମଦ୍ୟୈବ ମୟା ସମର୍ପିତଃ ।୧୪।

(ପୟାର)

ଏ ତନୁ ଯେଣୁ ମୁଁ ଯାହା     ପଛକେ ହୁଏଁ ହେ ନାହା !
ଗୁଣ ପଛେ ଥାଉ ଅବା ନ ଥାଉ ମୋର

ତୁମ୍ଭ ପାଦପଦ୍ମ ତଳେ    ଅଜାଠୁଁ ମତ୍ତ ନଷ୍ଟଲେ
ନଜରେ ଦେଲଇଁ ଝଂପି ହେ ବଂଶୀଧର !
କୃପା କର ଯେନବ ମୋରେ
ଖଟାଇବୁ ପଦେ ନିତ୍ୟ ଦାସ ପଦରେ ।୧୪।

ତବ ଦାସ୍ୟସୁଖୈକସଙ୍ଗିନାଂ
ଭବନେଷ୍ୱସ୍ତ୍ୱପି କୀଟଜନ୍ମ ମେ
ଇତରାବସଥେଷୁ ମାସ୍ମଭୂଦପି ମେ
ଜନ୍ମ ଚତୁର୍ମୁଖାତ୍ମନା ।୧୫।

(ପୟାର)

ଏକା ତୁମ୍ଭ ସେବାସୁଖେ    ପ୍ରମତ୍ତ ଯେବଣ ଲୋକେ
କୀଟଜନ୍ମ ଦିଅ ମୋରେ ବାସେ ତାଙ୍କର
ତୁମ୍ଭ ବିମୁଖ ଜନଙ୍କ    ବାସେ ହେ ପଙ୍କଜମୁଖ !
ବ୍ରହ୍ମା ହୋଇ ଜନ୍ମିବାକୁ ଅମଙ୍ଗ ମୋର
ତୁମ୍ଭ ଦାସଙ୍କର ସଙ୍ଗତ
ସବୁଠଉଁ ବଳି ଅଇଶ୍ୱର୍ଯ୍ୟ ସମ୍ପତ୍ତ ।୧୫।

ପିତା ତ୍ୱଂ ମାତା ତ୍ୱଂ ଦୟିତତନୟସ୍ତ୍ୱଂ ପ୍ରିୟସୁହୃଦ୍
ତ୍ୱମେବ ତ୍ୱଂ ମିତ୍ରଂ ଗୁରୁରସି ଗତିଶ୍ଚାସି ଜଗତାମ୍
ତ୍ୱଦୀୟସ୍ତ୍ୱଦ୍ଭୃତ୍ୟସ୍ତବ ପରିଜନସ୍ତ୍ୱଦ୍ଗତିରହଂ
ପ୍ରପନ୍ନଶ୍ଚୈବଂ ସତ୍ୟହମପି ତବୈବାସ୍ମି ହି ଭରଃ ।୧୬।

(ପୟାର)

ତୁମ୍ଭେ ମୋ ମାତା ପିତର   ସୁତ ବନ୍ଧୁ କାନ୍ତ ମୋର
ତୁମ୍ଭେ ଜଗତର ଗୁରୁ ବିଶ୍ୱଶରଣ
ମୁହିଁ କିଙ୍କର ତୁମ୍ଭର   ପୟରର ପରିକର
ତୁମ୍ଭେ ମୋ ଗତି ପରମ ରାଧାରମଣ !
ତେଣୁ ଭଲମନ୍ଦ ମୋହର
ତୁମ୍ଭଙ୍କୁ ଲାଗଇ ସିନା ହେ ବିଶ୍ୱମ୍ଭର ! ।୧୬।

ସ କୃ ଦ୍ୱ ଦା କା ର କ୍ଷି ଲୋ କ ନା ଶ ସ୍ୟା
ତୃ ଣୀ କୃ ତା ନୁ ତ୍ତ ମ ଭୁ କ୍ତି ମୁ କ୍ତି ଭିଃ
ମ ହା ତ୍ମ ଭି ର୍ମା ବ ଲୋ କ୍ୟ ତାଂ ନୟ
ଯକ୍ଷଣୋଽପି ତେ ଯଦ୍‌ବିରହୋଽତି ଦୁଃସହଃ

(ପୟାର)

ତାରେ ମାତ୍ର ବିଲୋକନ   କରିବା ପାଇଁ ମୋହନ-
ରୂପକୁ ତୁମ୍ଭର ଯେଉଁ ମହାତ୍ମା ଜନ
* ଭୁକ୍ତି ମୁକ୍ତି ଆଦି କରି   ତୁଚ୍ଛ କଲେ ତୃଣ ସରି
ମୋରେ ତାଙ୍କ ତୁଲ କରି ଦିଅ ବହନ
ନିତାଏକ ତୁମ୍ଭ ବିରହ
ସହୁ ନ ପାରଇଁ, ମୋର ତା ଯେ ଅସହ୍ୟ ।୧୭।

* ଭୁକ୍ତି—ସ୍ୱର୍ଗାଦି ଲୋକର ସୁଖଭୋଗ

ରଘୁବର ଯଦଭୂସ୍ତ୍ୱଂ ତାଦୃଶୋ ବାୟସସ୍ୟ
ପ୍ରଣତ ଇତି ଦୟାଳୁ ର୍ଯଚ୍ଚ ଚୈଦ୍ୟସ୍ୟ କୃଷ୍ଣ
ପ୍ରଭବମପରାଧମୁଗ୍ଧ ସାନୁଜ୍ୟଦଭୂ
ବଦ କମପଦଭାଗସ୍ତସ୍ୟ ତେଽସ୍ତି କ୍ଷମାୟୁଃ ।୧୮।

ନନୁ ପ୍ରପନ୍ନଃ ସକୃଦେବ ନାଥ
ତବାହମସ୍ମୀତି ଚ ଯାଚମାନ
ତବାନୁକମ୍ପ୍ୟ ସ୍ମର ତତ୍ପ୍ରତିଜ୍ଞାଂ
ମଦେକବର୍ଜ୍ଜଂ କିମିଦଂ ବ୍ରତଂ ତେ ।୧୯।

(ପୟାର)

ବାୟସ ସର ସଂସାରେ ଅପରାଧୀ ଶ୍ରୀପୟରେ
ଥିଲା କେ କହିବା ମୋତେ ହେ ରଘୁବର !
ନଅନ୍ତେ ପାଦେ ଶରଣ କ୍ଷମା ତ କଲ ଆପଣ
ଅହେ କୃଷ୍ଣ ! ଶିଶୁପାଳ ଚେଦ-ଈଶ୍ୱର
ଜନ୍ମେ ଜନ୍ମେ ହେଲା ଦୋରେହା
ତାରେ ମୁକ୍ତି ଦେବାରେ କି ନ କଲ ସ୍ପୃହା ? ।୧୮।

ତେଣୁ ମନେ ମୁଁ ଭାଳଇ କିଛି ଅପରାଧ ନାହିଁ
ଦୟାଳୁପଣକୁ ତୁମ୍ଭ ବଳି ଯା ଭାସି
ପଦେ ଯେ ନଏ ଶରଣ ଜଣାଇଁ "ମୁଁ ତୁମ୍ଭ ଜନ"
ତାହାରେ କ୍ଷମାନିଧାନ ! ଦଅ ହେ ତାର
ପତିତପାବନ ବୋଲାଅ
ଶରଣରକ୍ଷଣ ବୋଲି ବାନା ଉଡ଼ାଅ ।୧୯।

---

୧୮ । ବାୟସ—ଇନ୍ଦ୍ରଙ୍କ ପୁତ୍ର ଜୟନ୍ତ କାକରୂପରେ ସୀତା ଦେବୀଙ୍କ ରଙ୍ଗାଚରଣରେ ଚଞ୍ଚୁଦ୍ୱାରା କ୍ଷତ କରିଥିଲା ।

ତୁମ୍ଭର ଦୟାକୁ ପଣ ତୁମ୍ଭଙ୍କୁ ରମାରମଣ
ମୁଁ ପାମର ଦୀନଜନ ଦେଲ ଚେତାଇ
ସଭିଙ୍କି ଦେଇ ଶରଣ ମୋତେ ନ କର କାରଣ
ଅନାଉଁ ତ ନାହିଁ ମୋତେ ହେଲେ ହେଳାଇ
ମୁଁ କି ସଭିଙ୍କଠୁଁ ବାହାର
ମୋ ବେଳକୁ ଏଡ଼େ ପକ୍ଷପାତ ବିଗ୍ରହ ? ।୨୦।

ଓଡ଼ିଆ ଭାଷାରେ ଗୀତ ଗ୍ରନ୍ଥର ବିଚ୍ଛନ୍ଦ ରଚିତ
ଅପରାଧମାନ ତାର କ୍ଷମିବା ସନ୍ତେ
ପାତକୀ ତାରିବା ପାଇଁ ସନ୍ତ ରୂପ ସିନା ବହି
ଧରାରେ ବିଚରୁଛନ୍ତି ସକଳ ତୀର୍ଥେ
ସନ୍ତେ ଥିଲେ କରୁଣା କଲେ
ନିତ୍ୟସ୍ଥଳେ ସେବା ମୋତେ ମିଳିବ ଭଲେ ।୨୧।



୨୦ । କାରଣ—କୃତାର୍ଥ; ହେଳାଇ-ହେଳାରେ ସୁଦ୍ଧା

( ତନ )

# ଶ୍ରୀ ଶ୍ରୀ ପତିତପାବନାଷ୍ଟକ

## ସାଲବେଗ

(ସପ୍ତଦଶ ଶତାବ୍ଦୀ)

ଓଡ଼ିଆ ଧସ୍କାର—ଶ୍ରୀ ବଞ୍ଛନ୍ଦଚରଣ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

[କଥିତ ଅଛି, ଜଣେ ମୁସଲମାନ ସେନାପତି ଉତ୍କଳ ଆକ୍ରମଣ କାଳରେ ପୁରୀ ଜିଲ୍ଲାର ଦାଣ୍ଡମୁକୁନ୍ଦପୁର ଶାସନରୁ ଜଣେ ବ୍ରାହ୍ମଣ ଯୁବତୀଙ୍କ ହରଣ କରି ନେଇ ନିଜର ଦାସୀ କରିଥିଲେ । ତାହାର ଔରସରେ ଏହି ବ୍ରାହ୍ମଣୀ ଗର୍ଭରେ ସାଲବେଗଙ୍କ ଜନ୍ମ । ଥରେ ଯୁଦ୍ଧରେ କ୍ଷତ ବିକ୍ଷତ ହୋଇ ସାଲବେଗ ମୃତ୍ୟୁଶଯ୍ୟାରେ ପଡ଼ିଥିଲେ । ମାତାଙ୍କଠାରୁ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ମହିମା ଶ୍ରବଣ କରି ସେ ତାଙ୍କ ଶରଣାପନ୍ନ ହେବାରୁ ଶ୍ରୀଜଗନ୍ନାଥ ମହାପ୍ରଭୁ ସ୍ୱପ୍ନରେ ତାଙ୍କ ଆଗରେ ଆବିର୍ଭୂତ ହୋଇ ତାଙ୍କୁ ଅଦ୍ଭୁତଭାବରେ ପୂର୍ଣ୍ଣ ଆରୋଗ୍ୟ ପ୍ରଦାନ କରିଥିଲେ । ସେହିଦିନଠାରୁ ସେ ଗୃହତ୍ୟାଗୀ ହୋଇ ସନ୍ନ୍ୟାସ ଅବଲମ୍ବନ କରିଥିଲେ ଓ ଶ୍ରୀକ୍ଷେତ୍ରରେ ବାସ କରିଥିଲେ । କେହି କେହି କହନ୍ତି, ତାଙ୍କ କାତର ଆହ୍ୱାନରେ ଆକୃଷ୍ଟ ହୋଇ ଶ୍ରୀଜଗନ୍ନାଥ ମହାପ୍ରଭୁ ତାଙ୍କୁ ସାକ୍ଷାତ ଦର୍ଶନ ଦେଇ କୃତାର୍ଥ କରିବା ନିମନ୍ତେ ସିଂହଦ୍ୱାରରେ ପତିତପାବନ ମୂର୍ତ୍ତି ଧାରଣ କରି ପ୍ରକଟ ହୋଇଥିଲେ । ଅଦ୍ୟାବଧି ଶ୍ରୀକ୍ଷେତ୍ରର ବଳଗଣ୍ଡିଠାରେ ସାଲବେଗଙ୍କ ସମାଧି ରହିଅଛି ଏବଂ ରଥଯାତ୍ରା ସମୟରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ରଥ ତାଙ୍କୁ କୃପା ପ୍ରଦର୍ଶନ କରିବା ଉଦ୍ଦେଶ୍ୟରେ ସେଠାରେ କିଛି ସମୟ ବନ୍ଦ ରହିଥାନ୍ତି । ଦାର୍ଢ୍ୟତାଭକ୍ତି ଗ୍ରନ୍ଥରେ ସାଲବେଗଙ୍କ ଚରିତ ପଢ଼ନ୍ତୁ ।]

ସଖେନ୍ତ ଇବ ଲକ୍ଷସେ ସପଦ୍ଧ ମେ ଚରିତଂ ସ୍ମରନ୍
ପରଂ କଳିତ ସାହସଃ ପତିତପାବନତ୍ୱ-ବ୍ରତାତ୍
ନ ମାମଗଣୟଃ ପୁରା ନ ହି ବିଗ୍ଣରକାଲୋଽଧୁନା
ବ୍ରତଂ ବିସୃଜ ବାଥବା ବରଦ ପାରୟୈନଂ ଜନମ୍ ।୧।

(ପୟାର)

[ ରାଗ ଦେଶାକ୍ଷ ]

ମୋ ଘୋର ପାତକମାନ ସୁମରି କି ଭଗବାନ !
ଚିନ୍ତାରେ କୁଟିଳ କରିଅଛ ମାନସ
ପତିତପାବନ ବାନା ଉଡ଼ାଅ ବୋଲି ମୁଁ ସିନା
ଚିତ୍ତରେ ଅଛଇ ମୋର ବାନ୍ଧି ସାହସ
ମୋ ବିଷୟ ଚିତ୍ତକୁ ଆଣି
କେବେ କରୁ ନାହିଁ ଭଲ ହେ ଚକ୍ରପାଣି ! । ୧ ।

ମୋ ଦୋଷ ବିଗ୍ଣର ପାଇଁ ଏହା ତ ବେଳା ନୁହଇ
ତୁମ୍ଭଙ୍କୁ ସଙ୍କଟେ ପକାଇବାର ପାଇଁ
ପାଶେ ମୁଁ ତୁମ୍ଭ ଅଗତ; ଶୁଣ ଆହେ ଜଗନ୍ନାଥ !
ପାତକୀ ସାମାନ୍ୟ ମୋରେ ମଣିବ ନାହିଁ
ବର ଦେଇ ମୋରେ ଈଶ୍ୱର
ନୋହିଲେ ବନ୍ଧନ ଚକ୍ରୁ ଧ୍ୱଜା ଉତାର । ୨ ।

ନ ରାଘବ ! ସ ବାୟସୋ ନ ଖଳୁ କୃଷ୍ଣ ଚେଦ୍ୟୋଽସ୍ମ୍ୟହଂ
ନ ଖଲ୍ୱହମଜାମିଳୋ ନରକନାଶ ନାରାୟଣ !
ପ୍ରଧାନମପରାଧିନାଂ ପରିବୃଢଞ୍ଚ ମାଂ ପାପିନଂ
କ୍ଷମାଜଲନିଧେ ! ବିଦନ୍ ସପଦ୍ଧ ସାବଧାନୋ ଭବ । ୨ ।

(ପୟାର)

ଅହେ ରଘୁପତି ! ମୁହିଁ    ଖଗ ବାସ୍ୟେ ନୁହଇ
ନୁହଇ ମୁଁ ଅହେ କୃଷ୍ଣ ! ଚେଦିରାଜନ
ନାମ-ରଟନେ କୁଶଳ    ନୁହଇ ମୁଁ ଅଜାମିଳ
ନରକନାଶନବ୍ରତ ହେ ନାରାୟଣ !
ମୁଁ ପାତକକୁଳଭୂଷଣ
ମୋ ବିଷୟେ ଦିଅ ଚିତ୍ତ ସମାଧାନ ! । ୩ ।

ମଦ୍ବୃଦ୍ୟାଦଧଲେଖନାକଳନ    ଜାଗ୍ରଦଗ୍ରାଙ୍ଗୁଳି
ମି ଳ ତ୍    ପ୍ରଖରଲେଖନୀମୁଖବିଘାତତୋଦ୍ୟମାଃ
ଅଳଂ କଳ ଲଲନ୍ତିରେ ସପଦି ଚିତ୍ରଗୁପ୍ତାଦୟଃ
ସ ଏଷ ପତିତାଗ୍ରଣୀ ସଦୟ ରକ୍ଷ ଦକ୍ଷୋଽସି ଚେତ୍ ।

(ପୟାର)

ଜୀବନର ପ୍ରତିକ୍ଷଣ    କରେଁ ପାପ ଅରଜନ
ଯାହା ଲେଖି ଚିତ୍ରଗୁପ୍ତାଦିଙ୍କ ଲେଖନୀ-
ମୁନ ହୋଇଲାଣି ଘୋର    ଲାଜଭୟରେ ତେଣୁ କର
ହେଟମୁଖେ ସେହୁ ବିଲୋକନ୍ତି ଅବନୀ
ମୁଁ ଯେ ନାଥ ! ପତିତାଧମ
ତାର ମୋରେ ଯେବେ ତୁମ୍ଭେ ତାରଣେ କ୍ଷମ । ୪ ।

ବିଦନ୍ନପି ହୃଦନ୍ତରେ ପ୍ରତିପଦଂ ଯଦସ୍ମିଂକୃତେ
ଯତେ ଯଦୁପତେ ନ ତେ ବିଫଳତାବ୍ରତେ ସ୍ୟାଦିତି
ଯତୋଽସି ଜଗତୋ ଗୁରୁଃ ସ୍ମୃତିନିଷେଧଯନ୍ତ୍ରେ ତତୋ
ନ ନାମ ଚ ଭଜାମି ଯଦ୍ୟଥ ବୃଥା କ୍ରୁଧଂ ମା କୃଥାଃ ॥

(ପୟାର)

ପତିତପାବନ ବ୍ରତ ତୁମ୍ଭର ହେ ଯଦୁନାଥ !
ବ୍ୟର୍ଥ ନୁହଇ ଏହା ଭାଳି ମୁଁ ମନେ
ନିର୍ଭୟେ ପାପ ଆଚରେଁ ନାମ ତୁମ୍ଭ ନ ଉଚ୍ଚାରେ
ଶୂଦ୍ର ଶ୍ରୁତି ଉଚ୍ଚାରିବ ଅବା କେସନେ ?
ନାମ ତୁମ୍ଭ ଶ୍ରୁତି-ସ୍ୱରୂପ
ଶୂଦ୍ର ପାଇଁ ଶ୍ରୁତି-ପଢ଼ା ନୁହେ କି ପାପ ? । ୫ ।

ଅନନ୍ତ ! ତ୍ୱଦଘାବଲୀମନନ ସାବଧାନାତ୍ମକୈ
ର୍ନିଜୈ ଦୁରିତମଣ୍ଡଳେ ନିଖିଳସାକ୍ଷିଭିନେକ୍ଷତେ
ଜନା ଜଗତି ନିର୍ଭୟା ଜଯ୍ଯୁ ଜଟେସ୍ତୁତି ଜଳ୍ପନ୍ତ୍ୟମୁଂ
ପ୍ରଭୋ ଖଳଧୁରନ୍ଧର ପତିତପାବନସ୍ତ୍ୱେଦବଂ । ୫ ।

(ପୟାର)

ତେଣୁ ହେ ପ୍ରଭୁ ଅନନ୍ତ ! ବୃଥା କୋପ ଅନୁଚିତ
ମୋ ପାତକରାଶି ଦେଖି ଜଗତଜନ
ନିଜର ଯେତେ ଦୁଷ୍କୃତ ମଣନ୍ତି ତାରେ କଞ୍ଚିତ
ପାତକ-ବିଭବେ ମୋର ହୋଲନ୍ତି ଧନ୍ୟ
ଖଳଙ୍କ ଗୁରୁ ମୁଁ ଅଚ୍ୟୁତ !
ପତିତପାବନ ଯେବେ ତାର ପତିତ । ୬ ।

ଅନେକ ପତିତାଧିପାନବତ ଚକ୍ରବର୍ତ୍ତୀ ଯଥା
ନୃପାନସ୍ମମସଜ୍ଜନ ପତିତପାବନତ୍ୱେନ ନୁ
ଇତି ପ୍ରତିଦଣଂ ଖଳାଃ ପତିତପାବନଂ ମାଂ ବଦୁ
ନ ପାବୟସି ଚେତ୍ତ ଫଳଂ ନନୁ ଭବେଦଦଂ କେବଳମ୍ ।୬।

(ପୟାର)

ରାଜଚକ୍ରବର୍ତ୍ତୀ ଯେସନେ ପାଳେ ତା ସାମନ୍ତଗଣେ
ପତିତଙ୍କ ଗୁରୁ ହୋଇ ବନ୍ଧୁ ପତିତେ
ବାହୁଚ୍ଛାୟା ତଳେ ରଖି କରାଏଁ ସଦା ମୁଁ ସୁଖୀ
ପତିତରକ୍ଷଣ ବୋଲାଥାନ୍ତ ସେ ମୋତେ
ମୋତେ ନ ତାରିଲେ ଶ୍ରୀପତି !
ଖଣ୍ଡନ ହେବ କି ମୋର ଅଧମ ଗତି ? । ୭ ।

କଦାପି ହି ପଦାମୃତଂ ତବ ମୟାପି ନାସ୍ୱାଦିତଂ
ବୃଥା ଭବକଥାଦରୈରପି ଚ ଯଥା ନୀତଂ ବୟଃ
ତ୍ୱୟା ଯଦପି ହେଳୟା ମୟି ନ ଚେଦ୍ ବିଧେୟାଦୟା
ତଦୈବ ମହତୀ କ୍ଷତି ପତିତପାବନସ୍ତ୍ୱଂ ଯତଃ ।

ତୁମ୍ଭ ପାଦଧୌତ ନୀରେ କ୍ଷେପି ମୁଁ ନାହିଁ ଉଦରେ
ବିଷୟାରେ[1] ମଜ୍ଜି ଆୟୁ କରିଛି ଶେଷ
ତେଣୁ ଯେବେ ହେଳା କରି ନିର୍ଦ୍ଦୟ ହୁଅ ହେ ହରି !
ମୋର ନୁହେ ତୁମ୍ଭ ହାନି ହେବ ବିଶେଷ
ପତିତପାବନ ବୋଲାଇ
ପତିତେ ମାରିଲେ ଯଶ ଅଛି କି ଥାଇ ? । ୭ ।

ଭବାନ୍ ପରମଧାର୍ମିକଃ ପ୍ରକଟିତାତିକାରୁଣ୍ୟକଃ
ସ୍ୱତନ୍ତ୍ରଚରିତୋ ଯଦି ସ୍ୱୟମୟଞ୍ଚ କଂ ନୋ ଗୁଣଃ
ଅଲଂ କମପି ଚେତ୍ତ ସ୍ୱକଂ ପତିତପାବନାଖ୍ୟାଦିକଂ
ପ୍ରଦର୍ଶୟତୁ ନାନ୍ୟଥା ଭବତୁ ତେ ଯଶଃ ସର୍ବଥା । ୮ ।

୭ । ବିଷୟା—ସାଂସାରିକ ଭୋଗ ।

(ପୟାର)

ତୁମ୍ଭେ ମହା କାରୁଣିକ ପରମ ଧର୍ମରକ୍ଷକ
ଇଚ୍ଛାମୟ ଅହେ ପତିତଙ୍କ ତାରଣ !
ମୁଁ ଯେ ଇଚ୍ଛାମୟ ହୋଇ ଅଯୁକ୍ତ ଅଛୁ ବତାଇ
ଧରମ ଲଙ୍ଘନ କ୍ରତେ ଅତି ନିପୁଣ
କୃପାରେ ଏ ପତିତେ ରଖ
ଯଶଚନ୍ଦ୍ରମାରେ ନ ଲାଗୁ ହେ କଳଙ୍କ । ୮ ।

ବଦନ୍ତି ଯଦ୍ୟ ପବିତାଃ ପାତିତପାବନତ୍ୱବ୍ରତଂ
ଭବନ୍ତମଧୃକଂ ନ ଭବ ପରମଦୁର୍ବିମୋତୋଽପ୍ୟହମ
ପୁନାତୁ ନ ପୁନାତୁ ବା ଭୁବ ଯଥା ତଥୈବ ବ୍ରୁବେ
ଗୃହାଣ ଗୁଣମେବ ମେ କୁରୁ କୃପାଂ ସଦୋଷ ନ କେ ।

(ପୟାର)

ଅହେ ମାନଜଦ୍ଧାରଣ ! ଯାହାଙ୍କୁ କହ ତାରଣ
ପତିତପାବନ ବୋଲି ଘୋଷନ୍ତି ନିତ
ବଚନ ଏହ ନୁହଇ ମନକୁ ମୋ ନ ଆସଇ
ପୟର ତଳେ ମୋହର ଏତୁ ମିନତି
ଦୋଷ କ୍ଷମି ଦେଜବ ଗୁଣ
ମହୀରେ କେ ଅଛୁ ଦୋଷ ନ ଥିବା ଜନ । ୧୦ ।

ନୀଳାଦ୍ରିନାଥ ମହିମା ! ମୋ ଭକତି ନ ଯେନମା
ତାର ମାର ଅଧ କେତେବେଳେ କି କହେ
ପାପତାପେ ମୁହିଁ ସରେ କର କରୁଣା ମୋ ପରେ
ଅଶେଷ ଜନମ ଦୋଷ ଅଙ୍ଗେ ମୁଁ ବହେ
ଗୁଣ ଥିଲେ ଯେନିବ ମୋର
ଦୋଷ ଫିଙ୍ଗି ଦେବ କ୍ଷମାସିନ୍ଧୁ ଭିତର । ୧୧ ।

ଏ ସାଲବେଗ ଜଣାଣ ମୁଁ ଯେ ବନ୍ଧ୍ୟଚରଣ
ଓଡ଼ିଆ ଭାଷା ପଦରେ କଲି ପ୍ରକାଶ
ମୁଁ ହୀନ ପାତକୀ ଜନ ସନ୍ଥେ ମୋ ଦୋଷ ନ ଯେନ
ବାତୁଳ ହୋଇ ମୁଁ କଲି ବଡ଼ ସାହସ
ମୋ ହୃଦରେ ନାହିଁ ଭକତ
ସନ୍ଥେ କୃପା କଲେ ଲଭିବଇଁ ଶ୍ରୀପଦ । ୧୨ ।



( ୩୮ )

# ଶ୍ରୀହରିଶରଣାଷ୍ଟକ

**ଶ୍ରୀ ଶଙ୍କରାଚାର୍ଯ୍ୟ**

(ସପ୍ତମ ଶତାବ୍ଦୀ)

ଓଡ଼ିଆ ପଦ୍ୟାର—ଶ୍ରୀ ବଛନ୍ଦଚରଣ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

ଧ୍ୟେୟ ବଦନ୍ତି ଶିବମେବ ହି କେଚିଦନ୍ୟେ
ଶକ୍ତିଂ ଗଣେଶମପରେ ତୁ ଦିବାକରଂ ବୈ
ରୂପୈସ୍ତୁ ତୈରପି ବିଭାସି ଯତସ୍ତ୍ୱମେବ
ତସ୍ମାତ୍ତ୍ୱମେବ ଶରଣଂ ମମ ଶଙ୍ଖପାଣେ ।୧।

(ପଦ୍ୟାର)

(ରାଗ—କଳହଂସକେଦାର)

କେ ବୋଲେ ପୂଜିବାକୁ ଚନ୍ଦ୍ରମଉଳି
କେ ବୋଲେ ଗଣଈଶ କେ ଅଂଶୁମାଳୀ ଯେ
କେ ବୋଲେ ପୂଜିବାକୁ ନଗେନ୍ଦ୍ରବାଳା
ସଭିଙ୍କ ଠାଇଁ ନାଥ ! ତୁମ୍ଭର କଳା ଯେ
ଦେଖିଣ ମୂଳତତ୍ତ୍ୱ ତୁମ୍ଭଙ୍କୁ ମଣି
ଶରଣ ଲୋଡ଼େଁ ତୁମ୍ଭ ହେ ଶଙ୍ଖପାଣି ଯେ ।୧।

ନ ସୋଦରୋ ନ ଜନକୋ ଜନନୀ ଚ ଜାୟା
ନୈବାତ୍ମଜୋ ନ ଚ କୁଳଂ ବିପୁଳଂ ବଳଂ ବା
ସନ୍ଦୃଶ୍ୟତେ ନ କିଲ କୋଽପି ସହାୟକୋ ମେ
ତସ୍ମାତ୍ତ୍ୱମେବ ଶରଣଂ ମମ ଶଙ୍ଖପାଣେ ।୨।

---

୧ । ଅଂଶୁମାଳୀ—ସୂର୍ଯ୍ୟଦେବ, ନଗେନ୍ଦ୍ରବାଳା—ମା ପାର୍ବତୀ ।

(ପୟାର)

ନାହାନ୍ତି ମୋର ପିତା ମାତା ସୋଦର
ଗୃହ ରଖିବ ନାହିଁ ଗୃହଣୀ ମୋର ଯେ
କୁଳଗାରମା ନାହିଁ, ନାହିଁ ମୋ ବଳ
ନାହାନ୍ତି ସଖା ସୁହୃଦ ମୋ ପ୍ରତୁଳ ଯେ
ସବୁମନ୍ତେ ନିଜକୁ ଦୀନ ମୁଁ ମଣି
ଶରଣ ଲୋଡ଼େଁ ତୁମ୍ଭ ହେ ଶଙ୍ଖପାଣି ଯେ ।୨।

ନୋପାସିତା ମଦମପାସ୍ୟ ମୟା ମହାନ୍ତଃ
ତୀର୍ଥାନ୍ ଗୃସ୍ତି କଧିୟା ନହୁ ସେବତାନ
ଦେବାର୍ଚ୍ଚନଂ ଚ ବଧିବନ୍ନକୃତଂ କଦାପି
ତସ୍ମାତ୍ତ୍ୱମେବ ଶରଣଂ ମମ ଶଙ୍ଖପାଣେ ।୩।

(ପୟାର)

ଗରବ ତେଜି ମନୁଁ ସାଧୁଚରଣେ
ସେବ ମୁଁ ନାହିଁ କେବେଁ ହେଳାରେ ଧନେ ଯେ
ତୀର୍ଥ ନାହିଁ ମୁଁ କର ସୁଗତ ଦେହ୍ଧ
ବଧିବଧାନେ ଦେବେ ନାହିଁ ମୁଁ ପୂଜ୍ଜ ଯେ
ମହା ଅପରାଧୀରେ ନିଜରେ ଗଣି
ଶରଣ ଲୋଡ଼େଁ ତୁମ୍ଭ ହେ ଶଙ୍ଖପାଣି ଯେ ।୩।

ଦୁର୍ବାସନା ମମ ସଦ ପରିକର୍ଷୟନ୍ତି
ଶତ୍ରୁଂ ଶରୀରମପି ରୋଗଗଣା ଦହନ୍ତି
ସଞ୍ଜୀବନଂ ଚ ପରହସ୍ତଗତଂ ସଦୈବ
ତସ୍ମା ତ୍ତ୍ୱମେବ ଶରଣଂ ମମ ଶଙ୍ଖପାଣେ ।୪।

---

୨ । ପ୍ରତୁଳ—ବହୁତ ।

(ପୟାର)

ଦୁର୍ବାସନା ଅନଳ ଦହେ ମୋ ହୃଦ
ରୋଗଜାଳାରେ ଅଙ୍ଗ ପୋଡ଼େ ନିରତ ଯେ
ପରଙ୍କ ଦୟାରେ ମୁଁ ପାଳେଁ ଜୀବନ
ନାହିଁ ମୋ ସର ଆନ ନିମିଷ ଜନ ଯେ
ସବୁମତେ ଆତୁର ନିଜରେ ମଣି
ଶରଣ ଲୋଡ଼େଁ ତୁମ୍ଭ ହେ ଶଙ୍ଖପାଣି ଯେ ।୪।

ପୂର୍ବଂ କୃତାନି ଦୁରିତାନି ମୟା ତୁ ଯାନି
ସ୍ମୃତ୍ୱାଖିଳାନି ହୃଦୟଂ ପରିକମ୍ପତେ ମେ ।
ଖ୍ୟାତା ଚତେ ପତିତପାବନତା ଯସ୍ମାତ୍
ତସ୍ମାତ୍ୱମେବ ଶରଣଂ ମମ ଶଙ୍ଖପାଣେ ।୫।

(ପୟାର)

ଦୁଷ୍କୃତମାନ ଆଚରିଛି ମୁଁ ଯେତେ
ସୁମରି ହୃଦୟ ମୋ କମ୍ପେ ନିରନ୍ତେ ଯେ
ତୁମ୍ଭେ କି ଯେଣୁ ପତିତଙ୍କ ପାବନ
ବୋଲି ଉଡ଼ାଅ ବାନା ହେ ଭଗବାନ ଯେ
ପତିତଙ୍କର ଗୁରୁ ନିଜରେ ମଣି
ଶରଣ ଲୋଡ଼େଁ ତୁମ୍ଭ ହେ ଶଙ୍ଖପାଣି ଯେ ।୫।

ଦୁଃଖଂ ଜରାଜନନଜଂ ବିବିଧାଶ୍ଚ ରୋଗାଃ
କାକଶ୍ୱସୂକରଜନି ନିରୟେ ଚ ପାତଃ
ତେ ବିସ୍ମୃତେଃ ଫଳମିଦଂ ବିତତଂ ହି ଲୋକେ
ତସ୍ମାତ୍ୱମେବ ଶରଣଂ ମମ ଶଙ୍ଖପାଣେ ।୬।

(ପୟାର)

ଜନ୍ମଜନମରଣକୁ ଯିବା ଯୋଗ
ଅଙ୍ଗେ ଭୋଗିବା ପୁଣି ଅଶେଷ ରୋଗ ଯେ
କାକ ଶ୍ୱାନ ଶୃଗାଳ ଶୂକର ଯୋନି
ଭ୍ରମି ଅନ୍ତେ ନରକେ ସଢ଼ିବା ପୁଣି ଯେ
ତୁମ୍ଭଙ୍କୁ ଭୁଲି ନର ଅରଜେ, ଜାଣି
ଶରଣ ପଶିଲେଁ ତୁମ୍ଭ ହେ ଶଙ୍ଖପାଣି ଯେ ।୭।

ମାର୍ଗେଽପି ପାପବଲତୋଽପି ବନାନ୍ଧତୋଽପି
ବ୍ରହ୍ମାଣ୍ଡବାହମିତ ଯସ୍ତୁ କଳୈକବାରମ୍
ତଂ ଯଚ୍ଛସୀଶ ନିଜଲୋକମିତ ବ୍ରଢଂ ତେ
ତସ୍ମାତ୍ତ୍ୱମେବ ଶରଣଂ ମମ ଶଙ୍ଖପାଣେ ।୭।

(ପୟାର)

ଯେତେକ ପତିତ ପାପଗ୍ରସ୍ତ ନିନ୍ଦିତ
ହେଉ ପଛେ ଧରମ୍ଭୁ ହୋଇ ପତିତ ଯେ
ସେ ଯେବେ କହେ ବାରେ "ମୁହିଁ ତୁମ୍ଭର"
ନିଜ ଧାମ ତାହାରେ ଦିଅ ଶ୍ରୀଧର ! ଯେ
ଦୟାକୃପଣ ତୁମ୍ଭ ଏମନ୍ତ ଜାଣି
ଶରଣ ପଶିଲେଁ ତୁମ୍ଭ ହେ ଶଙ୍ଖପାଣି ଯେ ।୭।

ବେଦେଷୁ ଧର୍ମବଚନେଷୁ ତଥାଗମେଷୁ
ରାମାୟଣେଽପି ଚ ପୁରାଣକଦମ୍ବକେ ବା
ସର୍ବତ୍ର ସର୍ବବିଧିନା ଗଦିତସ୍ତ୍ୱମେବ
ତସ୍ମାତ୍ତ୍ୱମେବ ଶରଣଂ ମମ ଶଙ୍ଖପାଣେ ।୮।

ବେଦେ ଧରମଗ୍ରନ୍ଥେ ପୁଣି ପୁରାଣେ
ଆଗମରେ ଆବର ଶ୍ରୀ ରାମାୟଣେ ଯେ
ସବୁଥିରେ ସକଳ ପ୍ରକାରେ ହରି !
ଚରିତ ଗାନ ହୋଇଅଛୁ ତୁମ୍ଭର ଯେ
ତୁମ୍ଭ ମହିମା ନାଥ ଏମନ୍ତ ଶୁଣି
ଶରଣ ପଶିଲେଁ ତୁମ୍ଭ ହେ ଶଙ୍ଖପାଣି ଯେ ।୮।
ଓଡ଼ିଆ ପଦେ ରଚିଲଇଁ ପୟାର
ସନ୍ଥଜନେ ମୋହର ଦୋଷ ନ ଧର ଯେ ।
ମୁଁ ବଳ୍ପଦ ପାତକୀ କରୁଛୁ ଆଶା
ଅନ୍ତକାଳକୁ ତୁମ୍ଭେ ହେବ ଭରସା ଯେ ।
ତୁମ୍ଭ କରୁଣାପାତ୍ର ଅଧମେ ଜାଣି
ଶରଣ ଦେବେ ପାଦେ ଶ୍ରୀ ଶଙ୍ଖପାଣି ଯେ ।



୮ । ଆଗମ—ତନ୍ତ୍ର

( ପାଞ୍ଚ )

# ଜଗୁଜୀବନ ଜଣାଣ

## ମାଧବୀ ଦେବୀ

(ପଞ୍ଚଦଶ ଶତାବ୍ଦୀ)

[ ଶ୍ରୀ ଚୈତନ୍ୟ ମହାପ୍ରଭୁ ନୀଳାଚଳରେ ଲୀଳା ପ୍ରକଟ କରୁଥିବା ସମୟରେ ତତ୍କାଳୀନ ଦେଉଳକରଣ ଶିଖୀ ମହାନ୍ତି ଏବଂ ତାଙ୍କ ଭ୍ରାତା ମୁରାରି ମହାନ୍ତି ଓ ଭଗିନୀ ମାଧବୀ ଦେବୀ ମହାପ୍ରଭୁଙ୍କ କୃପା ଲାଭ କରି ଧନ୍ୟ ହୋଇଥିଲେ । ମାଧବୀ ଦେବୀଙ୍କୁ ନିଜେ ମହାପ୍ରଭୁ ରାଧାଙ୍କ ଗଣ ବୋଲି ସ୍ୱୀକାର କରିଥିଲେ । ସେ ପରମ ବୈଷ୍ଣବୀ, ପଣ୍ଡିତା ଓ କବି ଥିଲେ । ସେ ସଂସ୍କୃତରେ "ଶ୍ରୀ ପୁରୁଷୋତ୍ତମ ଦେବ" ନାମକ ଖଣ୍ଡିଏ ନାଟକ ଲେଖିଥିଲେ । ବଙ୍ଗଳା ପଦକଳ୍ପତରୁ ଗ୍ରନ୍ଥରେ ତାଙ୍କର କେତୋଟି ବଙ୍ଗଳା ଗୀତ ସ୍ଥାନ ପାଇଅଛି । ଏ ଜଣାଣଟି ଛଡ଼ା ତାଙ୍କର ଅନ୍ୟ କୌଣସି ଓଡ଼ିଆ ଗୀତ ଅଦ୍ୟାବଧି ଆବିଷ୍କୃତ ହୋଇନାହିଁ । ]

(ରାଗ—ସାବେରୀ ବା ବଙ୍ଗଳାଶ୍ରୀ, ଚନ୍ଦନଯାତଆ—ବୃନ୍ଦ)

ଚକାନୟନ ହେ ! ଜଗୁଜୀବନ ଶ୍ରୀହରି !

କାତରେ ଜଣାଣ କରୁଛି ଛାମୁରେ
ଶୁଣ ପ୍ରଭୁ ! ଶ୍ରୁତି ତୋର । ଘୋଷା ।

କେତେ ସଙ୍କଟୁ କାହାକୁ ରଖିନାହିଁ
ଦୟାଳୁ ସାରଙ୍ଗଧାରୀ !
ତା ବର୍ଣ୍ଣି ବସିଲେ ପୋଥିକର ପାଠ
କି ବର୍ଣ୍ଣିବ ଏ ପାମରୀ । ୧ ।

ଅହଲ୍ୟା ତାରଣ ଦ୍ରୌପଦୀ କଷଣ
ହେଲେ ଦେଇଛ ନିବାରି
ମୃଗୁଣୀ ଆରତ ଜାଣି ଜଗନ୍ନାଥ
ବପଦୁଁ ଦେଲ ଉଧାରି । ୨ ।
ଶବରୀକ ଦବ୍ୟ ଗତ ଯାଚଦେଲ
ତା ଉଚ୍ଛିଷ୍ଟ ଭଷି କରି
ମୀରା କରମାଙ୍କ ଭାବେ ହୋଇ ରଙ୍କ
ସ୍ଥାନ ଦେଲ ବ୍ରଜପୁରୀ । ୩ ।
ଜୀବନ୍ତୀ ପିଙ୍ଗଳା ଆଦ ବାରବାଳା
ଫସାରୁ ଗଲେ ନସ୍ତରି
ଅପାର ମହମାକେତନ ଉଡ଼ାଇ
ନଅଛ କୀରତଶିରୀ । ୪ ।
ମୁଁ ଘୋର ନର୍ମାଣୀ ତୁମ୍ଭର ସେବକା-
ପଣକୁ ଅଯୋଗ୍ୟ ନାରୀ
କରୁଛ ଦଇନ ଯୋଡ଼ି କର ବେନି
ଶୁଣ ମାଧବୀ ଗୁହାରି । ୫ ।



୩ । କରମା—କରମୈତ ବାଇ ନାମକ ଉତ୍ତରଦେଶୀୟା ଭକ୍ତ ।

(ଛଅ)

# ଶ୍ରୀ ଦୟଣାଭୂଷଣ ଜଣାଣ

## ସାଲବେଗ

(ସପ୍ତଦଶ ଶତାବ୍ଦୀ)

(ରାଗ ଢମ୍ପୋଜୀ)

ଅହେ ନୀଳଗିରି !
ତୁମ୍ଭ ଶ୍ରୀଭୁଜେ ଦୟଣା କେରି କେରି । ଘୋଷା ।

ତୁଳସୀ ଚଉରା ପାଶେ ଜଗି, ବସି ଧ୍ୟାଉଛନ୍ତି କେତେ ଯୋଗୀ
ବ୍ୟାଘ୍ରଚର୍ମ ପାତି ସ୍ତୁତି କରୁଛନ୍ତି
ଜପୁଛନ୍ତି ନାମ ସଂଖ୍ୟା କରି ।୧।

ବଡ଼ଦାଣ୍ଡ ଦେଖି ହେଲି ତୋଷ, ରେଣୁମାନ ତେଣୁ କଲି ଗ୍ରାସ
କ୍ଷିପ୍ର ଖେଚେଡ଼ିରେ ମନ ନ ବୋଧଇ
ଠଙ୍କ ତୋରାଣିରେ ମନ ତୋଷ ।୨।

ସିଂହଦ୍ୱାରେ ବାଜେ ବେତବାଡ଼ି ବାଜନ୍ତେ ପାତକ ଯାଏ ଛାଡ଼ି
ଶ୍ରୀଜଗନ୍ନାଥଙ୍କ ଦର୍ଶନ ନିମନ୍ତେ
ଏକକୁ ଆରେକ ହୁଡ଼ାହୁଡ଼ି ।୩।

---

୧ । ଦୟଣା—ସୁବାସିତ ଦେବଭୋଗ୍ୟ ବୃକ୍ଷବିଶେଷର ପତ୍ର,
୨ । ଠଙ୍କ—ଅମ୍ବିଳା, ୩ । ହୁଡ଼ାହୁଡ଼—ଗାଳିଦଥାଦେଇ ।

ବାଇଶି ପାବଚ୍ଛେ ଗଲ୍ ସୁଖେ  କୈବଲ୍ୟପସରା ବେନି ପାଖେ
ଚଣ୍ଡାଳକୁଁ ବ୍ରାହ୍ମଣ ଶୂଦ୍ର ପର୍ଯ୍ୟନ୍ତେ
କୈବଲ୍ୟ ଭୁଞ୍ଜନ୍ତି ମୁଖେ ମୁଖେ ।୪।
ରୋହିଣୀପାଦୁକାକୁଣ୍ଡରଜ  ହିନ୍ଦୁ ମାଡ଼ି ବସିଅଛୁ ଗଜ
ସତେ କି ଏ ନେତ୍ର ସୁଫଳ ହୋଇବ
କାକ ପଡ଼ି ହେଲା ଚତୁର୍ଭୁଜ ।୫।
ଗରୁଡ଼ ପଛରେ ରହି ଦେଖ  କି ଶୋଭା ପାଉଛି ପଦ୍ମମୁଖ
ହୀର ମାଳା ମୋତି ମାଣିକ୍ୟ ଜଡ଼ୁଛି
ହୃଦେ ଲମ୍ବିଅଛି ବ୍ୟାଘ୍ରନଖ ।୬।
ଶ୍ରୀଜଗନ୍ନାଥଙ୍କ ଠାକୁରାଣୀ  ସୁବର୍ଣ୍ଣ ଥାଳିରେ ଅର୍ଘ୍ୟ ଆଣି
କଲାଶ୍ରୀମୁଖକୁ ବନ୍ଦାଣ କରନ୍ତି
ସାଧୁ ସନ୍ଥ ଦ୍ୟନ୍ତି ହରିଧ୍ୱନି ।୭।
କହେ ପାଲ୍‌ବେଗ ହୀନ ଜାତି  ଶ୍ରୀରଙ୍ଗ ଚରଣେ ରହୁ ମତି
ଶ୍ରୀଜଗନ୍ନାଥଙ୍କୁ ଜଣାଣ କରୁଛି
ଦୟାକର ବାରେ ଲକ୍ଷ୍ମୀପତି ।୮।

---

୪। ଗଲ୍ ସୁଖେ—ସାଲବେଗ ଶ୍ରୀମନ୍ଦିରରେ ପ୍ରବେଶ କରି ନ ଥିଲେ, ଏଥିରେ ତାଙ୍କ ମାନସିକ ବେଡ଼ାବୁଲା ମାତ୍ର ସୂଚିତ ହୋଇଅଛି । କୈବଲ୍ୟ—ମହାପ୍ରସାଦ, ୫ । ହେଲା ଚତୁର୍ଭୁଜ—ଶ୍ରୀଜଗନ୍ନାଥ ମହାପ୍ରଭୁ ନୀଳମାଧବ ରୂପରେ ବିଶ୍ୱାବସୁ ଶବରଙ୍କ ଦ୍ୱାରା ପୂଜିତ ହେଉଥିଲାବେଳେ ବିଦ୍ୟାପତି ନାମକ ଅବନ୍ତୀ ଦେଶୀୟ ବ୍ରାହ୍ମଣ ମହାପ୍ରଭୁଙ୍କ ସନ୍ଧାନ ନେବାକୁ ଉତ୍କଳ ଆଗମନ କରିଥିଲେ । ଥରେ ସେ ନୀଳମାଧବଙ୍କ ଆଗରେ ଠିଆ ହୋଇଥିଲେ । ଗୋଟିଏ କାକ ଗଛରୁ ପଡ଼ି ମରିଯାନ୍ତେ ଶ୍ରୀକ୍ଷେତ୍ରର ମହିମା ବଳରେ ଚତୁର୍ଭୁଜ ଆକାର ଧାରଣ ପୂର୍ବକ ସାରୂପ୍ୟ ମୁକ୍ତି ଲାଭ କରିଥିଲା । ତାହାର ନାମ ଭୁଷଣ୍ଡ ।

(ସାତ)

# ଶ୍ରୀ ଜଗନ୍ନାଥ ଭଜନ

## ଗୌରଚରଣ ଅଧିକାରୀ

(ଊନବିଂଶ ଶତାବ୍ଦୀ)

[ ଏ ଶୁଦ୍ଧାଭକ୍ତି ମାର୍ଗର ଜଣେ ପ୍ରସିଦ୍ଧ ବୈଷ୍ଣବ କବି । ଜନ୍ମସ୍ଥାନ ପୁରୀ ଜିଲ୍ଲାର ଲେଦେଙ୍ଗ ଗ୍ରାମ; ଜୀବନକାଳ ୮୮୧୪-୧୮୯୦ । ଏହାଙ୍କ ଗୀତାବଳୀ ଗୀତକଳ୍ପତରୁ ଗ୍ରନ୍ଥର ପ୍ରଥମ ଶାଖାରୂପେ କଟକରେ ପ୍ରକାଶ ପାଇଅଛି । ସରଳ ତରଳ ସର୍ବଜନବୋଧ ଭାଷାରେ ରଚନା କରିବାର ଦକ୍ଷତାରେ ସେ ଅପ୍ରତିଦ୍ୱନ୍ଦ୍ୱୀ । କେବଳ ଗୋପୀଭାଷାକାର ଦୀନକୃଷ୍ଣ ଦାସଙ୍କ ସହିତ ତାଙ୍କର ତୁଳନା ହୋଇ ପାରିଛି । ]

( ରାସଗୀତ-କୃଷ୍ଣ )

ସଖି ! ନବଘନ କାଳିଆବଦନ
କି ଶୋଭା ଦିଶୁଛି ଅନା ଗୋ
ଏହୁ ଘେନି ବୃନ୍ଦା- ବନ ଧେନୁସେ
ନନ୍ଦର ନନ୍ଦନ କହ୍ନା ଗୋ
ଭଲେ କର ଅନୁମାନ
ସେହି କୁଳବୁଡ଼ା ଏ ନିଦାନ ଗୋ । ୧ ।

ବାବଣ୍ଠକୁଟିଆ ବସନଲୁଟିଆ
ଖୋଟିଆ ପଣ ତ ଜାଣ ଗୋ
ଗୋଟି ଗୋଟି କରି ଗୋପକନ୍ୟାଙ୍କୁ
ଯେତେ କରେ ହଇରାଣ ଗୋ
ଏକୁଟିଆ ହୋଇ ଠିଆ
ବାଟେ ଘାଟେ ଭାଙ୍ଗଇ ମାଠିଆ ଗୋ । ୨ ।

ବହୁଲେ ହୋଇବ ପୋଥିଷ୍ଠାର ପାଠ
ତା ଯେଉଁ ଅପାଠଯାକ ଗୋ
ଦହି ଦୁଧ ଯେତେ ଚୋରାଇ ଗିଳଇ
ସଭିଙ୍କି କରି ଅବାକ ଗୋ
ପୁଣି ପୁଣି ବଂଶୀ ଫୁଙ୍କି
ବାଇଭୂତ ଲଗାଏ ଗୋପୀଙ୍କି ଗୋ । ୩ ।

ଏତେ ଗୁଣ ଜାଣି ପଞ୍ଚେନ୍ଦ୍ରକାନରେ
ଗୋଇ ବାନ୍ଧିଥିଲେ ବୋଲି ଗୋ
ବଦର କରଣ ପଳାଇ ଆସି ତ
ଏଠାରେ ବଖାଣେ ବୋଲି ଗୋ
ରଜା ଘରୁ ଖଜା ଖାଇ
ମଜା ମାରୁଛି ଦେଖାଇ ଛଇ ଗୋ । ୪ ।

---

୨ । ବାବଣ୍ଠୁଟିଆ—ନବରଙ୍ଗିଆ, ହୃଦରବାସୀ । ଖୋଟିଆ ଧୂର୍ତ୍ତ ।

ଅମ୍ଭ ଠାକୁରାଣୀ    କୃଷ୍ଣସାମନ୍ତାଣୀ-
ଙ୍କର ଏ ଘର ବେଢିଆ ଗୋ
ଭେଟ ଲମ୍ପଟରେ    ମାପ ନକଟରେ
ହୋଏ ଯମୁନାଛୁଠିଆ ଗୋ,
ଏବେ ରତ୍ନ-ସିଂହାସନେ
ବସି ରହିଛନ୍ତି ମହା ମଉଜେ ଗୋ । ୫ ।

ପୂର୍ବ କଥା କି    ମନେ ଭାବ ତାର
ହୁରୁ ପକାଉଛନ୍ତି ହସି ଗୋ
ଦୁର୍ଜନ କହେ    ମୂର୍ଖକହସାରେ
ଏତେ ଲୋକ ଛନ୍ଦ ରସି ଗୋ
ଧନ୍ୟ ଧନ୍ୟ ଏ କାଳିଆ
ଗୌର ଦ୍ୱିଜର ଗଳାମାଳିଆ ଗୋ । ୬ ।



* । ଭେଟ ଲମ୍ପଟରେ—ଭେଟିବା ଛଳସାରେ ।

(ଆଠ)

# ଶ୍ରୀ ଶରଧାବାଲି ମାଗୁଣି ଜଣାଣ

**ବନମାଳୀ ଦାସ**

(ଅଷ୍ଟାଦଶ ଶତାବ୍ଦୀ)

[ କଳିଙ୍ଗର ସଙ୍ଗୀତ ଲେଖକ କବିମାନଙ୍କ ମଧ୍ୟରେ ବନମାଳୀ ଦାସ ଉଚ୍ଚସ୍ଥାନର ଅଧିକାରୀ । ତାଙ୍କ ଶୁଦ୍ଧାଭକ୍ତିମାର୍ଗର ଭଜନାବଳୀ ଅତ୍ୟନ୍ତ ମର୍ମସ୍ପର୍ଶୀ । ସେ ଶ୍ରୀକ୍ଷେତ୍ରରେ ଜୀବନ ଯାପନ କରି ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଲୀଳା ଆସ୍ୱାଦନ କରିବାରେ ନିଜକୁ ହଜାଇ ଦେଇଥିଲେ । ଶୁଣାଯାଏ, ଗଜପତି ବୀରକେଶରୀ ଦେବ ତାଙ୍କର ପୃଷ୍ଠପୋଷକତା କରିଥିଲେ ।]

(ରାଗ—କାମୋଦୀ, ଭଜନ ବୃତ୍ତ)

ଜଗନ୍ନାଥ ହେ !
କିଛି ମାଗୁନାହିଁ ମୁଁ ତୋତେ
ଧନ ମାଗୁନାହିଁ ଜନ ମାଗୁନାହିଁ
ମାଗୁଛି * ଶରଧା ବାଲିରୁ ହାତେ । ଘୋଷା ।

---

* ବଡ଼ଦାଣ୍ଡ ଓ ଗୁଣ୍ଡିଚା ମଣ୍ଡପ ଭିତରେ ଆଗେ ମାଳିନୀ ବୋଲି ଗୋଟିଏ ନଈ ଥିଲା । ନରସିଂହ ଦେବଙ୍କ ରାଣୀ ଶ୍ରଦ୍ଧା ଦେବୀ ଗୁଣ୍ଡିଚା ରଥ ସବୁ ଯିବା ନିମନ୍ତେ ସେ ନଈ ଉପରେ ସେତୁ ବାନ୍ଧି ଦେଇଥିଲେ । ବର୍ତ୍ତମାନ ସେ ନଈ ବା ସେ ସେତୁ ଆଉ ନାହିଁ; କିନ୍ତୁ ଶ୍ରଦ୍ଧା ଦେବୀଙ୍କ ନାମାନୁସାରେ ସେ ସ୍ଥାନକୁ ଶରଧା ବାଲି କୁହାଯାଉଛି । ସେହିଠାରେ ବସି ରହି ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ରଥଯାତ୍ରା ଲୀଳା ଦେଖିବାକୁ କବି ହାତେ ମାତ୍ର ଜାଗା ମାଗୁଣି କରୁଅଛନ୍ତି ।

ଆନ ଦରଶନ ନ ଲୋଡ଼େ ନୟନ
ଏକା ତୋହ ଦେଖା ବିନା
ଶୁଣିବାକୁ କାନ ନ ଇଚ୍ଛଇ ଆନ
ତୋହ ଚରିତେ କାମନା । ୧ ।

ରସନା ନ ବାଞ୍ଛେ ଗ୍ରାମ୍ୟ ଗୀତ ଗାଇ
ବାକୁ ରଜନୀ ଦିବସ
ତୋହ ନାମାବଳୀ କେବଳ ସଙ୍ଗାଳି
ହୋଇଥାଉ ପୀତବାସ । ୨ ।

ନାସା ମୋର ତୃପ୍ତି ନ ଲଭଇ ଆନ
ସୁବାସ ଦ୍ରବ୍ୟ ଆଘ୍ରାଣେ
ତୋହ ଛଡ଼ା-ମାଳ ତୁଳସୀ କୁସୁମ
ଚନ୍ଦନ କର୍ପୂର ଘ୍ରାଣେ । ୩ ।

ମୋ ହସ୍ତ ଅଙ୍ଗୁଳି ଶ୍ୟାମ ବନମାଳୀ
ହରେକୃଷ୍ଣ ଜପୁ ଥାଉ
ବୋଲେ ବନମାଳୀ ମୋ ବେନି ଚରଣ
ତୋ ତୀର୍ଥ ଭ୍ରମଣେ ଯାଉ । ୪ ।



୨ । ଗ୍ରାମ୍ୟ ଗୀତ—ପ୍ରାକୃତ ବିଷୟକ ଗୀତ ।

(ନଅ)

# ଶ୍ରୀ ଶ୍ରୀମୁଖ ଦର୍ଶନ ମାଗୁଣି ଜଣାଣ

ବନମାଳି ଦାସ

(ଅଷ୍ଟାଦଶ ଶତାବ୍ଦୀ)

( ରାଗ ସାବେରୀ, ଚନ୍ଦନ ଯାତ୍ରା ଭଜନ—ବୃନ୍ଦ )

ମହାବାହୁ ! ଏହି କଥାରେ ମୋ ମନ
ନିତ ଦେଖୁଥିବ ନୀଳାଦ୍ରି ମଣ୍ଡପେ
କଞ୍ଜସୁନ୍ଦର ବଦନ । ଘୋଷା ।

ଅଞ୍ଜଳିରେ ଜଳ ପିଇ ପିନ୍ଧୁଥିବ
ବକଳ କରି ବସନ
ଶଚୀପତି ପଦ ଛୁଞ୍ଚି ମଣୁଥିବ
ଥିଲେ ତୁମ୍ଭ ସନ୍ନିଧାନ । ୧ ।

ଲୋଭୀ ହୋଇଥିବ ଅର୍ଦ୍ଧଚନ୍ଦ୍ର ମୁଖ
ଚନ୍ଦନ ଲାଗି ବେଳକୁ
ଧୀରେ ଚାହୁଁଥିବ ବିପୁଳ ଭୁଜକୁ
ସୁଭଦ୍ରା କାମପାଳଙ୍କୁ । ୨ ।

ଅବକାଶମାନଙ୍କରେ ମୋ ଲାଳସ
ହୋଇଥିବ ଅହର୍ନିଶ
ତେତେବେଳେ ତୋଳେ ହେଲେ ନ ଦେଖିବ
ବ୍ରହ୍ମ ରୁଦ୍ର ଦିନାଈଶ । ୩ ।

ତିନି ବଦନ ଚନ୍ଦ୍ରକୁ ଚାହିଁ ମୁହିଁ
ତାପତ୍ରୟକୁ ନାଶିବ
ବୋଲେ ବନମାଳୀ ଜନ୍ତୁପତି ପାଖ-
ଲୋକଙ୍କୁ ଦେଖି ହସିବି । ୪ ।

---

୧ । କଞ୍ଜ—ପଦ୍ମ, ୨ । କାମପାଳ—ବଳଭଦ୍ର, ୩ । ଦିନାଈଶ— ସୂର୍ଯ୍ୟ, ୪। ତାପତ୍ରୟ—ତିନି ତାପ—ଆଧ୍ୟାତ୍ମିକ, ଆଧିଦୈବିକ ଆଧିଭୌତିକ, ଜନ୍ତୁପତି-ପାଖଲୋକ—ଯମଦୂତ ।

( ଦଶ )

## ଶ୍ରୀ ସେବାମାଗୁଣି ଜଣାଣ

### ବୀରକେଶରୀ ଦେବ ମହାରାଜା

( ଅଷ୍ଟାଦଶ ଶତାବ୍ଦୀ )

[ ଏ ଓଡ଼ିଶାର ଭୂତପୂର୍ବ ଗଜପତି ମହାରାଜା । କବି ବନମାଳୀ ଦାସଙ୍କୁ ଏ ଭୂମିଖଣ୍ଡ ଦାନ କରି ଅନୁଗ୍ରହ କରିଥିଲେ ବୋଲି କଥିତ ଅଛି । ]

(ରାଗ—ସାବେରୀ ଆଡ଼ତାଳୀ ବା ରୂପତାଳ)

ଭୁଜତଳେ ମୋତେ ରଖ ମହାବାହୁ !
ବାହୁତଳେ ମୋତେ ରଖ
ବିପୁଳ ଭୁଜ ବିସ୍ତାରିଦେଲେ ଘୋର
କି କରି ପାରିବ ଦୁଃଖ । ଘୋଷା ।
ସଜ ହୋଇଥିବ ନନ୍ଦିଘୋଷ ରଥ
ମୁଁ ଥିବି ତୁମ୍ଭ ସେବାରେ
ତୁମ୍ଭେ ଦୀନବନ୍ଧୁ ! ନିର୍ଦ୍ଦୟ ହୋଇଲେ
କି ବୋଲିବେ ଏ ସଂସାରେ । ୧ ।
ଏ ଗଜରାଜ-କ୍ଷିତିପତି ସମ୍ପତ୍ତି
ରହିଏ ରୁଚଇ ନାହିଁ,
ଭୁବନମୋହନ ଚକାନୟନଙ୍କୁ
ଯେତେବେଳେ ଦିଏ ଗୃହ୍ନିଁ । ୨ ।

---

୨ । ଗଜରାଜ-କ୍ଷିତିପତିସମ୍ପତ୍ତି—ଗଜପତି ରାଜଗାଦିର ଐଶ୍ୱର୍ଯ୍ୟ ।

ଦିନକୁ ଦିନ ତ ଦୁଃଖ ଅତିରେକ
ସୁଖ ତ ଦିଶଇ ନାହିଁ,
ଭାସି ଯାଉଅଛୁ ଏ ଭବସାଗରେ
ରକ୍ଷାକର ଗ୍ରାବଗ୍ରାହୀ ! ।୩।
ଶ୍ରୀକ୍ଷେତ୍ର ନଗରେ ମହା ଐଶ୍ୱର୍ଯ୍ୟରେ
ଥିଲେହେଁ କମଳାସାଇଁ ।
ବାଇଶି ପାବଚ୍ଛ ନ ଉଠିବା ଯାଏଁ
ଆନନ୍ଦ ନ ପାଏ କାହିଁ ।୪।
ସେବାରୁ ଅନ୍ତର ହେଲ ଯେବେ ପ୍ରଭୁ
ଏ ପ୍ରାଣ ଥିବ କପାଇଁ,
ଓହ୍ଲାଇ ନ ଦିଅ କର୍ମା ମୋ ମଥାରୁ
ଜଞ୍ଜାଳଭାର ଗୋସାଇଁ !।୫।
ମୁଁ ଘୋର ପତିତ ଭରସା ରଖିଛୁ
ଶ୍ରୀ ରଙ୍ଗାଚରଣ ତଳେ,
ଶ୍ରୀ ବୀରକେଶରୀ ମହାରାଜା ଭଣେ
ଦୟା କର ଏତେବେଳେ ।୬।



(ଏଗାର)

# ଶ୍ରୀ ଆରତ ହରଣ ସାମନ୍ତ ଭଜନ

## ( ହୀନ ) କୃଷ୍ଣ ଦାସ

(ସପ୍ତଦଶ ଶତାବ୍ଦୀ)

[କୃଷ୍ଣ ଦାସ "ରସକଲ୍ଲୋଳ"ର ମହାକବି । ନିଜର ବୈଷ୍ଣବୋଚିତ ହୀନତା ଜ୍ଞାପନ କରିବା ନିମନ୍ତେ ସେ ପ୍ରତି ଗୀତର ଭଣିତାରେ ନିଜ ନାଁ ଆଗରେ ହୀନ ପଦଟି ବ୍ୟବହାର କରୁଥିବାରୁ କାଳକ୍ରମେ ଲୋକେ ତାଙ୍କ ନାଁ ହୀନକୃଷ୍ଣ ବୋଲି ଡାକିଲେ । କିନ୍ତୁ ତାଙ୍କର ପ୍ରକୃତ ନାଁ କୃଷ୍ଣ ଦାସ । ସେ ବହୁସଂଖ୍ୟକ କାବ୍ୟ କବିତା ଲେଖି କଳିଙ୍ଗ ସାହିତ୍ୟ କ୍ଷେତ୍ରରେ ଶ୍ରେଷ୍ଠ ସ୍ଥାନ ଅଧିକାର କରିଅଛନ୍ତି । ସେ କୃଷ୍ଣପ୍ରେମୀ, ନିତାନ୍ତ ଦୁଃସ୍ଥ ଓ ତତ୍କାଳୀନ ପୁରୀ ଗଜପତି ମହାରାଜାଙ୍କ ଦ୍ୱାରା ନିଗୃହୀତ ଥିଲେ । ]

( ରାଗ—ମେଚକଲ୍ୟାଣ, ଆଡ଼ତାଳି )

ଜଗବନ୍ଧୁ ପରି ଜଣେ ସାମନ୍ତ
ନାହିଁ ନାହିଁ ତ
ଚଉଦଭୁବନବାରତା ଜାଣନ୍ତି
ଚକ୍ଷରେ ଛେଦନ୍ତି ଆରତ । ଘୋଷା ।
ଯେତେବେଳେ କୃଷ୍ଣ ଗୋପପୁରେ ଥିଲେ
ଅକ୍ରୂର ଆଣିଣ ଗଲା ତ
ଗାଈ ଦୁହଁ ଦୁହଁ କେଶ ଫିଟିଗଲା
ଚତୁର୍ଭୁଜ ହେଲେ ଅନନ୍ତ । ୧ ।

---

୦ । ସାମନ୍ତ—ପ୍ରଭୁ, ମୁନିବ ।

୧ । କେଶ ଫିଟିଗଲା—ମହାପ୍ରଭୁ ଶ୍ରୀକୃଷ୍ଣ ଅକ୍ରୂରଙ୍କୁ ଅତ୍ୟନ୍ତ କୃପାକରି ନିଜର ଚତୁର୍ଭୁଜ ରୂପ ଦେଖାଇବାକୁ ଇଚ୍ଛାକରି ଆଉ ଦୁଇଟି ଭୁଜ ପ୍ରକଟ କଲେ ଓ ତଦ୍ଦ୍ୱାରା ଫିଟିଯାଇଥିବା କେଶକୁ ବାନ୍ଧିଲେ । ଅନ୍ୟ ଦୁଇଟି ହସ୍ତ ଦୁଧ ଦୁହିଁବାରେ ନିଯୁକ୍ତ ଥିଲା ।

ସୁଗ୍ରୀବର ସଙ୍ଗେ ମଇତ୍ର ହୋଇଣ
ବାଳିଙ୍କ ବିନାଶ କଲେ ତ
ରାବଣଭ୍ରାତା ଯେ ଶରଣ ପଶିଲା
ଲଙ୍କାଗଡ଼ ତାଙ୍କୁ ଦେଲେ ତ । ୨ ।
କୁରୁସଭାତଳେ ଦ୍ରୌପଦୀ ଶରଣ
କୋଟିବସ୍ତ୍ର ଦଆଇଲେ ତ
ଭାରତଯୁଦ୍ଧରେ ଭରତଆ ପକ୍ଷୀ
ଘଣ୍ଟ ଘୋଡ଼ାଇ ରଖିଲେ ତ । ୩।
ଏମନ୍ତ ସାମନ୍ତ ତିଭୁବନେ ନାହିଁ
ନାଶନେ ଅରତୀ ଅରତ
କହେ ଦୀନ କୃଷ୍ଣ ଦାସ ଯେ ଶ୍ରୀକୃଷ୍ଣ
ପଦ୍ମପାଦ ତଳେ ଧାଯି ତ । ୪ ।



୪ । ଆରତୀ—ଆର୍ତ୍ତି; ଦୁଃଖରେ ପଡ଼ିଥିବା ଲୋକ ।

(ବାର)

## ଶ୍ରୀ ନୀଳଚକ୍ର ଭଜନ

### ଗୌରଚରଣ ଅଧିକାରୀ

(ଊନବିଂଶ ଶତାବ୍ଦୀ)

( ରାଗ—ଶଙ୍କରାଭରଣ—ରୂପକ ତାଳ )

ନୀଳଚକ୍ରେ ହେ ! ଦେଖ ଉଡ଼ୁଛି ବାନା
ପତିତପାବନ ନାମ କି ଯା ନାଁ ! ।ଘୋଷା।

ଆସ ଆସ ବୋଲି ପାତକୀମାନଙ୍କୁ
ଡାକୁଅଛି ପରା ସଙ୍ଗାତ ! ଅନା
ନେତ ଧ୍ୱଜାବର ଉଡ଼ ଫରହର
ଉଡ଼ାଇ ଦେଉଛି ଭବଯାତନା ।୧।

ପଞ୍ଚକୋଶୀ ଯାଏଁ ଜନେ ଦେଖାଯାଏ
ଦର୍ଶନେ କଲ୍ମଷ ହୁଅଇ ଚୂନା
ଚଉଦ ବ୍ରହ୍ମାଣ୍ଡ- କରତାଙ୍କ ଲୀଳା
ଶଙ୍ଖନାଭିକ୍ଷେତ୍ରେ ବିଶଦ ସିନା ।୨।

ସଲଖ ସୁନ୍ଦର ବଙ୍କଦାଣ୍ଡ ଶୋଭା
ମର୍ତ୍ତ୍ୟମଣ୍ଡଳରେ କାହିଁ ଅଛି ନା
ଶରଧା ବାଲିରୁ ସ୍ୱର୍ଗଦ୍ୱାର ଯାଏଁ
ଗହଳ ଚହଳ ନୁହେ ଚଳନା ।୩।

ପାପଛଡ଼ା ପୁରେ ବାସ କରିବାକୁ
ଯାହାକୁ ତାହାକୁ ନୁହଇ ମନା
ଆଗୁଣ୍ଡାଳ ବପ୍ର ପଦକେ ଭୁଞ୍ଜିବା
ବଡ଼ ଅଚମ୍ଭିତ ଲାଗଇ କନା । ୪ ।

ଗୌର ଦ୍ୱିଜ ଭଣି ଶ୍ରୀକ୍ଷେତ୍ରରହଣି
ପାଇଁ କରୁଥାଇ ସଦା ଭାବନା
ସତେ ହେବେ ସାହା କଳାଅରବାହା
ସମ୍ପୂର୍ଣ୍ଣ କରିବ ମନକାମନା । ୫ ।



(ତେର)

# ଶ୍ରୀ ଚତୁର୍ଯୁଗ ଅବତାର ଭଜନ

## ବାଇଧର ଦ୍ୱିଜ

(ଷୋଡ଼ଶ ଶତାବ୍ଦୀ)

**[ ଏ ଲେଖକଙ୍କର ଅନ୍ୟ କୌଣସି ଲେଖା ବା ଜୀବନୀ ଏ ପର୍ଯ୍ୟନ୍ତ ଅବିଷ୍କୃତ ହୋଇନାହିଁ । ]**

( ମୁନିବର ବାଣୀ )

ମନ ! ଅସ୍ଥ କର ଦେଖ ଏଥ
ନୀଳକନ୍ଦରେ ସୁନ୍ଦର ଜଗନ୍ନାଥ । ଘୋଷା ।

ଏହି ପ୍ରଭୁ ଜଗନ୍ନାଥ  କଶ୍ୟପ ଋଷିଙ୍କ ସୁତ
ବାମନ ମୂରତି ହୋଇ  ବଳିଦ୍ୱାରେ ଉପଗତ
କରେ ଘେନି କୁଶଧାର । ହରିଲେ ତାହାର ବଳ ।
ପଦ୍ମପାଦ  ଦେଇଥିଲେ  ବଳିମାଥ । ୧ ।

ଏହି ପ୍ରଭୁ ଜଗନ୍ନାଥ  ଦଶରଥଙ୍କର ସୁତ
ସୀତାପ୍ରିୟା ଘେନି ସଙ୍ଗତେ  ବୁଲିଲେ ଗହନପଥ
ସାଗରେ ବାନ୍ଧିଲେ ପଥ । ଲଙ୍କାକୁ କଲେ ନିପାତ
ସୀତାଛଳେ  ବଧିଲେ କି  ଦଶମାଥ । ୨ ।

ଏହି ପ୍ରଭୁ ଜଗନ୍ନାଥ  ନନ୍ଦର ହୋଇଲେ ସୁତ
କାଳୀ ଦଳି ପାଦଗତ  ମଣ୍ଡିଲେ କି ସୁରନାଥ
କଂସ ଅସୁର ନିପାତ । ଜଗତେ ଅଛି ବିଖ୍ୟାତ
ଭାରତ ଯୁଦ୍ଧରେ ବାହି  ପାର୍ଥ-ରଥ । ୩ ।

* । ଏଥ—ଏଠାରେ ।

ଏ କଳି କାଳରେ ଦେଖ ଶଙ୍ଖ ଚକ୍ର ଧରି ହସ୍ତ
ବସିଛନ୍ତି କୈବଲ୍ୟ ଦାତା ପାପୀଏ ଦେଖି ମୁକତ
କି ଶୋଭା କଳା ଶ୍ରୀମୁଖ । ଦେଖିଲେ ଖଣ୍ଡଇ ଦୁଃଖ
ପ୍ରଜାପତି ସଙ୍ଗେ ଶୋଭା ବିଶ୍ୱନାଥ । ୪ ।

ଏହି ପ୍ରଭୁ ଜଗନ୍ନାଥ ଶରୀର ହୋଇଲେ ସୁତ
ବୈଷ୍ଣବଧର୍ମ ବିଖ୍ୟାତ ଶିଖାଇଲେ ମହାମନ୍ତ୍ର
ବୁଲିଲେ ଏହି ଜଗତ । ଭକତ ଘେନି ସଙ୍ଗତ
ଦ୍ୱିଜ ବାଉଧର ଅଗ୍ରା ଲକ୍ଷ୍ମୀକାନ୍ତ । ୫ ।



* । ଶରୀର ହୋଇଲେ ସୁତ —ମହାପ୍ରଭୁ ଗୌରସୁନ୍ଦର ରୂପ ଧାରଣ କଲେ ।

(ଚଉଦ)

# ଶ୍ରୀ ଗୌରହରି ଭଜନାଷ୍ଟକ

## ଗୌରଚରଣ ଅଧିକାରୀ

(ଊନବିଂଶ ଶତାବ୍ଦୀ)

[ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କୁ ଭକ୍ତମାନେ ସଚଳ ଜଗନ୍ନାଥ ବା ସଚଳ ବ୍ରହ୍ମ ବୋଲି ଉପଲବ୍ଧି କରି ତାଙ୍କ ପାଦପଦ୍ମତଳେ ପ୍ରାଣ ସମର୍ପଣ କରିଥିଲେ । ସାର୍ବଭୌମଙ୍କୁ ସେ ଷଡ଼ଭୁଜ ବିଷ୍ଣୁସ୍ୱରୂପ ଓ ରାୟ ରାମାନନ୍ଦଙ୍କୁ ଶ୍ରୀରାଧା ଓ ବଂଶୀଧର ବ୍ରଜେନ୍ଦ୍ରନନ୍ଦନ ଯୁଗଳରୂପ ପ୍ରଦର୍ଶନ କରି କୃତକୃତାର୍ଥ କରିଥିଲେ । କବି ଗୌରଚରଣଙ୍କର ଏ ଅଷ୍ଟକ ଟି ଭକ୍ତମାନଙ୍କ ପକ୍ଷରେ ଗୋଟିଏ ଅମୂଲ୍ୟ ନିଧି । ]

( ରାଗ—ବଙ୍ଗଳାଶ୍ରୀ )

ଭବ-ଭୟ-ଭଞ୍ଜନ- କାରଣ ଗୋରା
ତ୍ରିଭୁବନମୋହନ ମାନସଚୋରା
କୃପାସାଗର ନାଗର ଦଣ୍ଡଧାରୀ
ଭଜ ଭଜ ତୁ ରେ ମନ ! ଗୌରହରି ।୧।
ନବରସେ ବିଭୂଷିତ କଳେବର
ଭାବରକାରେ ନିରନ୍ତର ଗରଗର
ବିଗଳିତ ପଦ୍ମନେତ୍ରୁ ଅଶ୍ରୁବାରି
ଭଜ ଭଜ ତୁ ରେ ମନ ! ଗୌରହରି ।୨।
ଇନ୍ଦୁବିନିନ୍ଦିତ ଶୁଭ୍ର ନଖଛଟା
ନିଜ ନାମ ଗୁଣ ନିଜ ମୁଖେ ରଟା
ନବ ସନ୍ନ୍ୟାସୀ ଅରୁଣାମ୍ବରଧାରୀ
ଭଜ ଭଜ ତୁ ରେ ମନ ! ଗୌରହରି ।୩।

୩ । ରଟା—ଗାନ କରୁଥିବା

ଧବ୍ୟ ଜମ୍ବୁନଦସ୍ୱର୍ଣ୍ଣକାନ୍ତି ଚୋର
ମହାଭାବରୂପୀ ଭ କ୍ତ ବେ ଶ ଧ ର
ଗତ ମନ୍ତୁରେ ନୃତ୍ୟବିଳାସକାରୀ
ଭଜ ଭଜ ରୁ ରେ ମନ ! ଗୌରହରି ।୪।
କୋଟିଚନ୍ଦ୍ରଜିତ ହର୍ଷବଦନଆ
ମୃଦୁସ୍ମିତହସା ମୋଦବର୍ଦ୍ଧନଆ
ଗୋପୀଚନ୍ଦନୋଜ୍ଜ୍ୱଳ ତିଲକଧାରୀ
ଭଜ ଭଜ ରୁ ରେ ମନ ! ଗୌରହରି ।୫।
ଆଜାନୁଲମ୍ବିତ ମହାଭୁଜଠେକା
ଧୁରନ୍ଧର ବିନାଶନେ କାଳଦଙ୍କା
ସଙ୍କୀର୍ତ୍ତନଲମ୍ପଟ କଳ୍ମଷହାରୀ
ଭଜ ଭଜ ରୁ ରେ ମନ ଗୌରହରି ।୬।
ପାପିପାବନମୂରତି କ୍ଷମାଦାନୀ
ନାମ ନିମାଇଁ ପଣ୍ଡିତ ମହାଜ୍ଞାନୀ
ଶ୍ରୀ ଶଚୀନନ୍ଦନ ମହାଅବତାରୀ
ଭଜ ଭଜ ରୁ ରେ ମନ ଗୌରହରି ।୭।
ନବଦ୍ୱୀପସୁଧାକର ସୌମ୍ୟଶିରୀ
ଖ ଳ ପା ଷ ଣ୍ଡ ଦୁ ର୍ଜ ନ ତ୍ରା ଣ କା ରୀ
ମୋଦେ ବନ୍ଦେ ହୃଦେ ଗୌର ଅଧିକାରୀ
ଭଜ ଭଜ ରୁ ରେ ମନ ! ଗୌରହରି ।୮।

---

୪ । ଜମ୍ବୁନଦସ୍ୱର୍ଣ୍ଣ—ଖାଣ୍ଟି ସୁନା, ୭ ଶ୍ରୀକୃଷ୍ଣ ଓ ଶ୍ରୀକୃଷ୍ଣଚୈତନ୍ୟ ଅଭିନ୍ନ—'କୃଷ୍ଣସ୍ତୁ ଭଗବାନ୍ ସ୍ୱୟଂ'', ତେଣୁ ଶ୍ରୀକୃଷ୍ଣ ଚୈତନ୍ୟ (ଶ୍ରୀ ଗୌରହରି) ମହା ଅବତାରୀ ।

(ପନ୍ଦର)

# ଶ୍ରୀଛାମୁଅଳି ଜଣାଣ

## ବନମାଳୀ ଦାସ

(ଅଷ୍ଟାଦଶ ଶତାବ୍ଦୀ)

( ରାଗ—ମାଳ୍ୟାମାଳବ ଗୌଡ଼ା)

ଏହି ଅଳି ଶ୍ରୀଛାମୁରେ ଦୀନବନ୍ଧୁ !
ଏହି ଅଳି ଶ୍ରୀଛାମୁରେ
ଶ୍ରୀରଙ୍ଗଚରଣସେବାରେ ମୋ ମନ
ରହୁଥାଉ ନିରନ୍ତରେ । ଘୋଷା ।

ଦାନା କନା ପଛେ ମନା ହେଉ ମୋତେ
ନୀଳଚକ୍ରବାନା ଚାହିଁ
ସୁଖୀ ହେଉଥିବ ଅଖିଳପତି ହେ !
ନିର୍ଦ୍ଦୟ ହୋଇବ ନାହିଁ ।୧।

ବାରମାସେ ତେର ଯାତ୍ରା ଦେଖୁଥିବି
ଶ୍ରୀକ୍ଷେତ୍ରେ ହୋଇ ! ଭିକାରୀ
ସାଧୁସନ୍ଥଙ୍କର ତୋଳାଇ କଙ୍କର
ମାଗୁଥିବି ମାଧୁକରୀ ।୨।

ଆନନ୍ଦବଜାରେ ବୁଲି ମୁଁ ମଜାରେ
ଗାଉଥିବି ତୋର ନାମ
ତୋ ପ୍ରେମସାଗରେ ବୁଡ଼ିଯାଉଥିବି
ବୋଲି ହରେକୃଷ୍ଣ ରାମ ।୩।

ଏଥିପାଇଁ କୁଳମୂଳ ହରାଇଛୁ
ସାଥୀ କର ମୋତେ ଏକା
ଦାସ ବନମାଳୀ ଦୋଷ ନ ଧରିବୁ
ଗୋବର୍ଦ୍ଧନଗିରି ଟେକା । ୦ ।



୪ । କୁଳମୂଳ ହରାଇଛୁ—ଗୃହସଂସାର ତ୍ୟାଗ କରିଅଛୁ

(ଷୋଳ)

# ଶ୍ରୀ ଜଗନ୍ନାଥଙ୍କ ଧାରଚଳୀଳା ଜଣାଣ

## ବଳରାମ ଦାସ

(ଷୋଡ଼ଶ ଶତାବ୍ଦୀ)

[କୃପାସିନ୍ଧୁ ବଳରାମ ଦାସ ପ୍ରସିଦ୍ଧ ଜଗମୋହନ ବା ଦାଣ୍ଡୀ ରାମାୟଣର କବି । ସେ ଶ୍ରୀମଦ ଭଗବଦ୍ ଗୀତାର ପ୍ରାଞ୍ଜଳ ଓଡ଼ିଆ ଅନୁବାଦ କରିଅଛନ୍ତି । ତାଙ୍କ ଲକ୍ଷ୍ମୀ ପୁରାଣ ଓ କମଳଲୋଚନ ଚଉତିଶା ଘରେ ଘରେ ସୁପରିଚିତ । ସେ ପଞ୍ଚସଖାଙ୍କ ମଧ୍ୟରୁ ଅନ୍ୟତମ ଓ ଭାଗବତକାର ଜଗନ୍ନାଥ ଦାସଙ୍କ ଦୀକ୍ଷାଗୁରୁ ।]

(ରାଗ—ସାବେରୀ, ଚନ୍ଦନଯାତିଆ ଭଜନ ବୃତ୍ତ)

ମହାପ୍ରଭୁ ! ଭକତଦୁଃଖରେ ଦୁଃଖୀ,
ରୁଧିରନଦୀ ସାତତାଳ ମଧ୍ୟରୁ
ଉଦ୍ଧରିଥିଆ ପକ୍ଷୀ ରଖି । ଘୋଷା ।

ଭକତ ନିମନ୍ତେ ହସ୍ତିନାପୁରକୁ
ଦଣ୍ଡା ମାଗିବାକୁ ଗଲ
ବେଢ଼ି କଉରବେ ଯେତେ ଝିଙ୍କାସିଲେ
ଭକତହୃତେ ସହିଲ । ୧ ।

ଦଶ ସହସ୍ର ରଜାଙ୍କର ନିମନ୍ତେ
ଗଧମୁଖେ ଶଙ୍ଖ ଦେଲ
ଭୀମହସ୍ତେ ଜରାସନ୍ଧ ବଧ କରି
ବନ୍ଦୀଙ୍କୁ ମୁକୁଳାଇଲ । ୨ ।

ଶରରେ ସାଗର ବାନ୍ଧ ଧନଞ୍ଜୟ
ମୀନରୂପେ ହେଲେ ହରି
ଗିରି ଘେନି ହନୁ ହମକ ଉଠନ୍ତେ
ଶ୍ରୀମୁଖୁଁ ରୁଧିର ଝରି । ୩ ।

ଭୀଷ୍ମକଦୁଲଣୀ ରୁକ୍ମଣୀ ଡାକନ୍ତି
ଶିଶୁପାଳ ଅଭିମାନେ
ଲକ୍ଷେ ରଜାମୁହେଁ କାଳି ଲଗାଇଣ
ଘେନିଗଲ ଅନ୍ତର୍ଦ୍ଧାନେ । ୪ ।

ଚକ୍ଷୁକୁ ଯେସନେ ପିଛଡ଼ା କଷଣି
ଭକ୍ତଙ୍କୁ ତେହ୍ନେ ଗୋସାଇଁ
ବଳରାମ ଦାସ ଭାବରେ ଭଣିଲେ
ପ୍ରଭୁପଣେ ଲଚ୍ଛିଯାଇ । ୫ ।



* । ଲଚ୍ଛିଯାଇ—କୃତକୃତାର୍ଥ ହୁଏ

(ସତର)

# ଶ୍ରୀ ଜଗନ୍ନାଥ ଜଣାଣ

## ଜଗନ୍ନାଥ ଦାସ

(ଷୋଡ଼ଶ ଶତାବ୍ଦୀ)

[ ଓଡ଼ିଆ ଭାଗବତକାର ଜଗନ୍ନାଥ ଦାସଙ୍କ ପରିଚୟ ଦେବା ନିଷ୍ପ୍ରୟୋଜନ । ସେ ପଞ୍ଚସଖାଙ୍କ ମଧ୍ୟରୁ ଅନ୍ୟତମ । ପୁରୀ ଜିଲ୍ଲା କପିଳେଶ୍ୱରପୁର ଶାସନରେ ସେ ଜନ୍ମ ହୋଇଥିଲେ । ମହାଶକ୍ତିଧର ହୋଇଥିବାରୁ ସେ ଅତିବଡ଼ି ଉପାଧିରେ ବିଭୂଷିତ । ]

( ଭାଗବତ ବୃଣ୍ଡ )

ନମସ୍ତେ ପ୍ରଭୁ ଜଗନ୍ନାଥ !
ଅନାଥ ଲୋକଙ୍କର ନାଥ !
ନମସ୍ତେ ପ୍ରଭୁ ବାସୁଦେବ !
ଭକତ ଜନଙ୍କ ବାନ୍ଧବ ।
ନମସ୍ତେ ପ୍ରଭୁ ହୃଷୀକେଶ !
ଭକତ ଜନଙ୍କ ବିଶ୍ୱାସ ।
ନମସ୍ତେ ପ୍ରଭୁ ବିଶ୍ୱରୂପି !
ସକଳ ହୃଦେ ଅଛୁ ବ୍ୟାପି ।
ତୁ ସୃଷ୍ଟି ସ୍ଥିତି ଲୟ କରୁ
ଆବର ଗର୍ଭରେ ସଂହରୁ ।
ଅଶେଷ କୋଟି ବସୁନ୍ଧରା
ତୋହର ଗର୍ଭେ ଛନ୍ତି ପୂରି ।

ଚଉଦ ଭୁବନ ଯା କନା
ଏ ସର୍ବ ତୋହର ରଚନା ।
ତୁ ବ୍ରହ୍ମା ରୁଦ୍ର ବିଷ୍ଣୁ ତୁହି
ତୋ ବିନୁ ଅନ୍ୟ ଗତି ନାହିଁ ।
ସୃଷ୍ଟି ତୋହର ଖେଳଘର
ଅଶେଷ ମାୟା ତୋ ଆଦର ।
ତୋହର ନିଃଶ୍ୱାସ ମରୁତ
ଦେବେ ହୋଇଲେ ତହୁଁ ଜାତ ।
ତୁହି କି ଅଗ୍ନିଦେବ ଇନ୍ଦ୍ର
ନୟନୁଁ ଜାତ ସୂର୍ଯ୍ୟ ଚନ୍ଦ୍ର ।
ଭୁଜରୁ ଅନନ୍ତମୂରତି
କଣ୍ଠରୁ ଜାତ ସରସ୍ୱତୀ ।
ସଦା ଚଞ୍ଚଳ ନିଦ୍ରା ନାହିଁ
ଏ ରୂପେ ଶୂନ୍ୟେ ଅଛୁ ରହି ।
ଅଶେଷ ତୋହର ମହିମା
କେ ଜାଣିପାରେ ଗୁଣସୀମା ।
ତୋ ନାମ କରୁଥିଲେ ଲୟ
କୋଟିଏ ଜନ୍ମ ପାପ କ୍ଷୟ ।
ନାମ ଘୋଷିଲେ ସର୍ବସିଦ୍ଧି
ଖଣ୍ଡଇ ରୋଗ ଶୋକ ଆଧି ।
ଆରତଭଞ୍ଜନ ତୋ ବାନା
ଆତଙ୍କକାଳେ ବଜ୍ରସେହ୍ନା ।

ହୋଇଲୁ ଦଶ ଅବତାର
ନାଶିଲୁ ଅବନୀର ଭାର ।
ଦୁଷ୍ଟ ନିବାରି ସନ୍ଥ ପାଳୁ
ତୁ ନାଥ ପରମ ଦୟାଳୁ ।
ତୁ ଅଟୁ ଦରିଦ୍ରଙ୍କ ଧନ
ତୋ ପଦେ ରହୁ ମୋର ମନ ।

ସତୀ ଯୁବତୀଙ୍କର ମନେ
ନିଜର ସ୍ୱାମୀ ଥାନ୍ତି ଯେହ୍ନେ
ସେହି ପ୍ରକାରେ ମୋର ମନ
ତୋ ପଦେ ରହୁ ଭଗବାନ ।

କହଇ ଜଗନ୍ନାଥ ଦାସ
କମଳ ଚରଣକୁ ଆଶ ।

---

(ଅଠର)

# ଶ୍ରୀ ଦୁଃଖହରଣ ଜଣାଣ

## ଅଚ୍ୟୁତାନନ୍ଦ ଦାସ

(ଷୋଡ଼ଶ ଶତାବ୍ଦୀ)

[ଅଚ୍ୟୁତାନନ୍ଦ ଦାସ ପ୍ରସିଦ୍ଧ ହରିବଂଶ ଗ୍ରନ୍ଥ ଓ ବହୁସଂଖ୍ୟକ ଯୋଗମିଶ୍ରା ଭକ୍ତିଗ୍ରନ୍ଥର ପ୍ରଣେତା । ସେ ମଧ୍ୟ ପଞ୍ଚସଖାଙ୍କ ମଧ୍ୟରୁ ଅନ୍ୟତମ ।]

( ରାଗ—କାମୋଦୀ )

ଦୀନବନ୍ଧୁ ! ମୋ ଦୁଃଖ ନ ଗଲା ଯେ

ତୁମ୍ଭେ ଦୀନବନ୍ଧୁ ମୋ ବନ୍ଧୁ ନୋହିଲେ
ମୋ ବନ୍ଧୁ ହୋଇବ କେ । ଘୋଷା ।

ଦୀନବନ୍ଧୁ ବୋଲି ଯାହାଙ୍କୁ କହନ୍ତି
ସେହି ତ ପରମ ଯୋଗୀ
ଦୁଃଖୀ ଲୋକଙ୍କର ଦୁଃଖ ନିବାରଣ
ସୁଖୀ ଲୋକଙ୍କରେ ଭୋଗୀ । ୧ ।

ଅତି ଆରତରେ ମୃଗୁଣୀ ଡାକିଲା
ଇନ୍ଦ୍ରକୁ ପେଷିଲ ହରି
ମୃଗୁଣୀ ଆରତ ଫେଡ଼ ଜଗନ୍ନାଥ
ତାହାର ମାନ ଜଗିଛ । ୨ ।

ତୁଳସୀର ଜଟ ତୁଳସୀ ମୁକୁଟ
ତୁଳସୀ ଭୂଷଣ ହୋଇ
ତୁଳସୀ ଚଉରା ପାଶେ ଅନାଇଲେ
ନୀଳଚକ୍ର ଦିଶୁଥାଇ । ୩ ।

---

୧ । ସୁଖୀ ଲୋକଙ୍କରେ ଭୋଗୀ—ସକଳ ପଦାର୍ଥର ସୁଖର ଏକମାତ୍ର ଭୋକ୍ତା ଶ୍ରୀଜଗନ୍ନାଥ । ୩ । ହୋଇ—ହୋଇଥାଏ ।

ଅବମୀର ଭାର ସଙ୍କଟ ପଡ଼ିଲା
ପଥରକୁ କଲ ଭେଳା
ଅକୂଳ ସମୁଦ୍ରେ ମୋ ଭେଳା ଭାସୁଛି
ପାରିକର ଚକାଡୋଳା । ୯ ।
ସମୁଦ୍ରତଟରେ ପକ୍ଷୀ ଅଣ୍ଡା ଦେଲା
ଡମ୍ଭ ନେଲା ରତ୍ନାକର
ସପ୍ତ ଡମ୍ଭ ତାର ଜଳରେ ଭାସିଲା
ପାରି କଲ ଚକ୍ରଧର । ୫ ।
ବତ୍ସକୁ ଯେସନେ ପିଛୁଡ଼ା ଆବୋର
ଭକ୍ତକୁ ତେମନ୍ତେ ଗୋସାଇଁ
ଦୀନ ଅଚ୍ୟୁତ ସେ ଭାବରେ ଭଣିଲେ
ପ୍ରଭୁପଦ ଶରଣେ ଧାଇଁ । ୭ ।



(ଉଣେଇଶ)

# ଶ୍ରୀଯୁଗଳସ୍ୱରୂପ ଭଜନ

## ଗୌରଚରଣ ଅଧିକାରୀ

(ଊନବିଂଶ ଶତାବ୍ଦୀ)

( ରାଗ—ସନ୍ଧ୍ୟା କାମୋଦୀ )

ରାଧେ ଗୋବିନ୍ଦ ଭଜ  ରାଧେ ଗୋବିନ୍ଦ ଭଜ
ନନ୍ଦନନ୍ଦନ ବଂଶୀବଦନ ବୃନ୍ଦାବନଚନ୍ଦ୍ର ଭଜ । ଘୋଷା ।
ମାୟା ମୋହ ହିଂସା କାମ କ୍ରୋଧ ଘୋର
ଏହାଙ୍କ ସଙ୍ଗରେ କିପାଇଁ ମଜ
ହରେ ରାମ କୃଷ୍ଣ ଅମୃତ ସାଗର
ସାଧୁଜନ ପାଶେ ପଚାର ବୁଝ । ୧ ।
କେଶବ କଂସାରି ରାମ ଦଇତାରି
କଂସ ନାଶି କଲେ କୁବୁଜା ଉଜ
କୃଷ୍ଣ ନାରାୟଣ ନୃସିଂହ ବାମନ
ବଳିଶିରେ ଦେଲେ ଯେ ପାଦରଜ । ୨ ।
ଦୟାଣାଭୂଷଣ ନାଶିବେ କଷଣ
ହୃଦେ ଭଜୁଥିବୁ ପାଦସରୋଜ
ଶ୍ରୀ ବୃନ୍ଦାବନରେ ନାନାରଙ୍ଗେ କେଳି
ଗୋପସୁତ ସଙ୍ଗେ ବରଜରାଜ । ୩ ।
ହରିଣୀବପତ୍ତି ହରିଲେ ଶ୍ରୀପତି
ଗ୍ରାହା ମାରି ତାରି ରଖିଲେ ଗଜ
ଏବେ ନୀଳାଚଳେ ରହି ଜଗନ୍ନାଥେ
ଭକ୍ତପାଇଁ ହେକି ଅଛନ୍ତି ଭୁଜ । ୪ ।

ଅଚ୍ୟୁତ ମୁକୁନ୍ଦ ମାଧବ ମୁରାରି
ପତିତପାବନ ଗରୁଡ଼ଧ୍ୱଜ
ପ୍ରହ୍ଲାଦଛଳେ ସ୍ତମ୍ଭରୁ ବାହାରି
ନଖେ ବିଦାରିଲେ ହିରଣ୍ୟରାଜ । ୫ ।

ନରୋତ୍ତମ ନରହରି ହରେକୃଷ୍ଣ
ଭଜ ତୁ ଅଭୟ ପାଦପଙ୍କଜ
ଯେଉଁ ପାଦପଦ୍ମେ କାଳିକ ଦଳିଲେ
ହୋଇଣ ମଦନମୋହନ ସଜ । ୬ ।

ଇନ୍ଦ୍ର ବିବାଦରେ ମନ୍ଦର ଧଇଲେ
ହାରି ସୁରପତି ପାଇଲା ଲାଜ
ଗଜରଚରଣ ଶରଣ ମାଗଇ
କାରଣ କରିବେ ଦେବାଧିରାଜ । ୭ ।



(କୋଡ଼ଏ)

## ଶ୍ରୀ କଳାଧଳା ସୋଦର ଭଜନ

ବନମାଳୀ ଦାସ
(ଅଷ୍ଟାଦଶ ଶତାବ୍ଦୀ)

( ରାଗ ସୁରଟମଲ୍ଲାର )

କଳା ଧଳା ସୋଦରେ
ବଳା ଗଉ ମୋଦରେ
ପଳାଇବ ଦୁରିତ ନ ରହ ମହାଖେଦରେ । ଘୋଷା ।

ଦଳିତ ସୁଅଞ୍ଜନ ବଳି ତନୁ ରଞ୍ଜନ
ଲଳିତ ତମାଳ ଇନ୍ଦ୍ରମଣୀଦର୍ପଗଞ୍ଜନ ।୧।

ଗଙ୍ଗାତରଙ୍ଗୁ ଧବଳ ଅଙ୍ଗାବଳୀ ଏ ବଳ
ରଙ୍ଗାଧର ଶୋଭା ଦେଖି ଦୁଃଖ ହେବ ଦୁର୍ବଳ ।୨।

ଗୁହ୍ମାଁ ନେତ୍ର ନାସ୍ତାରେ ମହାବାହୁ ବିସ୍ତାରେ
ଆହ୍ଲାଦରେ ଏ ପରି ଚଉଦଲୋକଶାସ୍ତାରେ ।୩।

ବନମାଳୀ ଭଣିଲା ଜନମ ବିନାଶିଲା
ଘନଶ୍ୟାମ ରାମଠାରେ ମନ ନିବେଶିଲା ।୪।



---

୦ । କଳା ଧଳା ସୋଦରେ—ଶ୍ରୀଜଗନ୍ନାଥ (କଳା) ଓ ଶ୍ରୀ ବଳଭଦ୍ର (ଧଳା) ଦୁଇଭାଇ, ୧ । ଦଳିତ ସୁଅଞ୍ଜନ—ଦଳା କଜଳ; ରଞ୍ଜନ—ସୁନ୍ଦର, ୨ । ବଳ—ବଳଭଦ୍ର, ୩ । ଶାସ୍ତା—ଶାସକ, ୪ । ଘନଶ୍ୟାମ—ଶ୍ରୀଜଗନ୍ନାଥ (ଶ୍ରୀକୃଷ୍ଣ), ରାମ—ଶ୍ରୀ ବଳରାମ ।

(ଏକୋଇଶ)

# ଶ୍ରୀ ରାଜାଧିରାଜଦେବ ଜଣାଣ

## (ଦୀନ) କୃଷ୍ଣ ଦାସ

(ସପ୍ତଦଶ ଶତାବ୍ଦୀ)

( ରାଗ—କଳସା )

ଜୟ ଜୟ ଜଗନ୍ନାଥ ନୀଳଗିରିପତି,
ଅଭିନବ ଜଳଧର ସୁନ୍ଦର ମୂରତି ହେ ।୧।

ସୁସଞ୍ଚ ଠାଣିରେ ଶୋହେ ସୁବର୍ଣ୍ଣର ସୂଡ଼ା,
ଚୂଳରେ ଦୟଣାଗନ୍ଧ କସ୍ତୁରୀର ଚିତା ହେ ।୨।

ଝଲ ଝଲ ଦିଶଇ ମୁକୁତାକଣ୍ଠିମାଳ,
ଶ୍ରବଣପୁଟରେ ବେନି ମର୍କତକୁଣ୍ଡଳ ହେ ।୩।

ନବରତ୍ନପଦକ ହୃଦରେ ଭଲ ସାଜେ,
ମର୍କତକଙ୍କଣ ବେନି ଭୁଜରେ ବିରାଜେ ହେ ।୪।

ତମ୍ବୁରୁମଞ୍ଜାକୁ ଶୋଭା ଦିବ୍ୟ ଓଢ଼ିଆଣି,
ଶ୍ରୀଅଙ୍ଗେ ଚନ୍ଦ୍ରଚନ୍ଦନ ନେସ ଗୁରୁ ଠାଣି ହେ ।୫।

ରୂପକୁ ନୁହଇ ଲକ୍ଷ କୋଟିଏ ମଦନ,
ରଙ୍ଗଅଧରକୁ ଶୋହେ ଡାଳିମ୍ବ ଦଶନ ହେ ।୬।

କଟିଟି ରାହୁଟି ମେ ବିବିଧ ରତ୍ନ ଜଡ଼ି,
ଦୟଣାର ଧଣ୍ଡିମାଳ ହୃଦଯାଏଁ ପଡ଼ି ହେ ।୭।

---

୨ । ସୁସଞ୍ଚ—ମନୋହର ୫ । ଓଢ଼ିଅଣି—ଅଙ୍ଗାର ଅଳଙ୍କାର ବିଶେଷ, ଚନ୍ଦ୍ର—କର୍ପୂର ।

କଳାମୁଖ ଗୋଟିକ ସୁନ୍ଦର ଚକାଡୋଳା,
ପଦ୍ମଫୁଲ ଭିତରେ କି ଭୃଙ୍ଗ କରେ ଖେଳା ହେ ।୮।

ଶଙ୍ଖ ଚକ୍ର ଗଦା ପଦ୍ମ ଚତୁର୍ଭୁଜେ ଶୋହେ,
କୋଟିଏ କନ୍ଦର୍ପରୂପ ତ୍ରିଭୁବନ ମୋହେ ହେ ।୯।

ଭକତଜନସଙ୍ଗାଳି ମୁକନ୍ଦର ଧର,
ଶରଣ ମାଗଇ ଦୀନକୃଷ୍ଣ ଦାସ ସ୍ମର ହେ ।୧୦।



(ବାଇଶ)

# ଶ୍ରୀ ନୀଳାଚଳନାୟକ ଜଣାଣ

## (ଦୀନ) କୃଷ୍ଣ ଦାସ

(ସପ୍ତଦଶ ଶତାବ୍ଦୀ)

(ରାଗ—ଖରହରପ୍ରିୟା)

ଅଟେ ନୀଳାଚଳନାୟକ
ଦୀନ-ଅକିଞ୍ଚନ-ସୁଖଦାୟକ । ଘୋଷା ।
ଚନ୍ଦ୍ରକାନ୍ତ ଜିଣି କମନୀୟ ଠାଣି
କଳା କଳେବର କି ଜକ ଜକ
ଆର୍ତ୍ତୀ ଜନଙ୍କର ଆର୍ତ୍ତିବିଧ୍ୱଂସନେ
ମହାବାହୁ ପ୍ରସାରିଛ କାଳିକ ।୧।
ଧବଳ କମଳ ନୟନ ଯୁଗଳ
ଚାହାଁଣି ଭଙ୍ଗିମା ତ ଅତିରେକ
ଦଶନ-ବସନ ରଙ୍ଗିମା ଅତୁଳ
ପ୍ରସନ୍ନମୟ ଶ୍ରୀକଳାଶ୍ରୀମୁଖ ।୨।
କପାଳରେ ସୁନାଶିତା ସୁଶୋଭିତା
ତହିଁକି ପୁଣି କସ୍ତୁରୀ ତିଳକ
ଚନ୍ଦନର ବିନ୍ଦୁ କି ସେ ବାଳଇନ୍ଦୁ
ଅତ୍ୟନ୍ତ ଘଟଣ ସେ ତ୍ରିପୁଣ୍ଡ୍ରକ ।୩।
ଶ୍ରବଣ ଯୁଗଳେ ମକର କୁଣ୍ଡଳ
ଖେଳଇ ସେ ଗଣ୍ଡମଣ୍ଡଳ ପାଖ
କରରେ କଉଁଠି କଙ୍କଣ ବାହୁଟି
ହୃଦୟରେ ବ୍ୟାଘ୍ରନଖ ପଦକ ।୪।

କଣ୍ଠେ ବିଲମ୍ବିତ ମଣିମୟ ହାର
କଉସ୍ତୁଭ ଦୀପ୍ତିମନ୍ତ ଝଲକ
କଳିତ ଲଳିତ ବାସ ବନମାଳ
ବୈଜୟନ୍ତୀମାଳ ଅଜାନୁଲମ୍ବକ ।୫।
କଷ୍ଟ ଦୁଷ୍ଟ ବିନାଶନ ଶ୍ରୀଆୟୁଧ
ଶଙ୍ଖ କମଳ ସୁଦର୍ଶନ ଚକ୍ର
କଟୀକି ଶୋଭଇ କନକ କଙ୍କିଣୀ
ତହିଁ ସାଜେ ପୀତପଟ୍ଟ ଝଟକ ।୬।
କରି ଦେବା ଲକ୍ଷ କାରୁଣାକଟାକ୍ଷ
କୋଟି ମଦନର ଧନୁ ଶାୟକ
ମୋହନ ବେଶକୁ ଭକ୍ତେ ଦେଖି ଦେଖି
ସର୍ବାଙ୍ଗରେ ଜାତ ହୁଏ ପୁଲକ ।୭।
ଭଣେ ଦୀନ କୃଷ୍ଣ ହୋଇଣ ସନ୍ତୁଷ୍ଟ
ଅରୁଣ ପଙ୍କଜଚରଣରେଙ୍କ
ବଳିଆର ଭୁଜଯୁଗତଳେ ପ୍ରଭୁ
ଅହ୍ଲାଦ ହୃଦୟେ ଦାସକୁ ରଖ ।୮।



(ତେରଶ)

# ଶ୍ରୀ ଚନ୍ଦନଲାଗି ଭଜନ

## ଶ୍ରୀଚନ୍ଦନ

(ଷୋଡ଼ଶ ଶତାବ୍ଦୀ)

[ ଚନ୍ଦନ-ଲାଗି ସମୟରେ ଏ ଗୀତ ଶ୍ରୀଜଗନ୍ନାଥ ମନ୍ଦିରରେ ଗୀତ ହୋଇଥାଏ । କବି ଶ୍ରୀଚନ୍ଦନ କିଏ ଜାଣିବାର ଉପାୟ ନାହିଁ । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ସିଂହାରୀ ( ଶୃଙ୍ଗାରୀ ବା ବେଶକାରୀ ) ଶ୍ରୀ ଶ୍ୟାମସୁନ୍ଦର ଦାସ ମହୋଦୟ ବହୁ କୃପା କରି ଏ ଗୀତ ପ୍ରଦାନ କରିଅଛନ୍ତି । ]

( ରାଗ—କାମ୍ବୋଜୀ, ତାଳ—ସରିମାନ )

ଚନ୍ଦନଲାଗି ସମୟେ ଚିନ୍ତ ଚିନ୍ତାମଣିଙ୍କି । ଘୋଷା ।

ସୁବେଶର ଲାଗି ଶେଷ    ଲାଗି ହୋଇ ଝୀନବାସ
କଟୀରେ ସୁବର୍ଣ୍ଣ ଝୁମ୍ମା
ଅହା କେଡ଼େ ଠାଣି କି । ୧ ।

ତିନି ବାଡ଼େ ତିନି ଲୋକ    ସେବକ ପଶୁପାଳକ
ରତ୍ନ ସିଂହାସନେ ଉଭି
ଯୋଡ଼ ବେନି ପାଣିକି । ୨ ।

ଚନ୍ଦନ ସଂସ୍କାର ସାରି    ପ୍ରଭୁ ଅଙ୍ଗେ ଲାଗି କରି
ହର ଭଦ୍ରା ସୁଦର୍ଶନ
କମଳା ଧରଣୀଙ୍କି । ୩ ।

ହାଡ଼ପ ନାୟକ ରହି    ବଡ଼ଅ ପଦକୁ ବହି
କରଇ ମୁଣୋହିଁ ଲହିଁ
କମ୍ବୁଚକ୍ରପାଣିଙ୍କି । ୪ ।

ତାଙ୍କର ଖୁଣ୍ଟିଆ ଦ୍ୱିଜ ମହିମା ଭୋ ଦେବରାଜ
ଅଖିଳ ବ୍ରହ୍ମାଣ୍ଡ-ନାଥ
ପ୍ରଭୁମନ ଜାଣି କ । ୫ ।

ନିଜ ନିଜ ଗୁଣାବଳୀ ବୀଣାନାଦେ କୁତୂହଳୀ
ଘଳାଇ ଦୁରିତ ପାପ
ହରଧ୍ୱନି ଶୁଣି କ । ୬ ।

ସେ କାଳେ କଳାଶୀମୁଖ ଶୁଣନ୍ତି ସକଳ ଦୁଃଖ
ଦର୍ଶନେ ପ୍ରସନ୍ନ ହୋଇ
ରଖ ଦୁଃଖଶ୍ରେଣୀ କ । ୭ ।

ଅଚ୍ଛି ଶ୍ରୀଚନ୍ଦନ ଭାଷେ ଚନ୍ଦ୍ରାବଳୀ ମଧ୍ୟେ ଭାସେ
କରୁଣାନାବେ ବସାଇ
କୂଳେ ରଖ ଆଣି କ । ୮ ।



---

୧ । ଜନ ବାଡ଼େ— ଜନ ଧାଡ଼ିରେ ;

୧।୪।୫ । ପଶୁପାଳକ, ଦର୍ପ ନାୟକ, ଖୁଣ୍ଟିଆ—ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ବଡ଼ନ୍ଦ ନିଯୋଗିଆ ସେବକ

(ଚବିଶ)

# ଶ୍ରୀ ନାମାବଳୀ ଭଜନ

## ବନମାଳୀ ଦାସ

(ଅଷ୍ଟାଦଶ ଶତାବ୍ଦୀ)

( ରାଗ—ଏରକାଲ କାମୋଦୀ )

କୃଷ୍ଣ କେଶବ ହରି
ମାଧବ ଦଇତାରି
କଞ୍ଜନୟନ ପ୍ରଭୁ କୁଞ୍ଜବିହାରୀ । ଘୋଷା ।

ଗୋବିନ୍ଦ ନନ୍ଦବାଳ    ବସୁଦେବ ଦୁଲାଳ
ବରଜସୁତମେଳ    ବକାଅରି
ଯଦୁକୁମୁଦଚନ୍ଦ୍ର    ଜଗନ୍ନାଥ ଉପେନ୍ଦ୍ର
ସାରଙ୍ଗଧର ରସରାଜ ମୁରାରି । ୧ ।

ବାଳଭ୍ରାତ-ମଇନ୍ଦ    ମାଳୀ-ସୁଦାମା-ମୁକ୍ତ
ଦରନାଶନ    ଦାବାନଳଅହାରୀ
ବିଷ୍ଣୁ ପରମାନନ୍ଦ    ଆଦକନ୍ଦ ସୁରେନ୍ଦ୍ର
ବ୍ରହ୍ମାଣ୍ଡନାଥ ବଳଦ୍ୱାର-ଭିକାରୀ । ୨ ।

ରୁଞ୍ଜଗୁଞ୍ଜମାଳିଆ    ଅମ୍ବୁଜାମ୍ବୁଭାଳିଆ
କାଳଦଳିଆ    କୁଜସୁନ୍ଦରକାରୀ
କେକପୁଚ୍ଛଚୂଳିଆ    ଧେନୁବୃନ୍ଦଗୁଳିଆ
ନୀପମୂଳିଆ ବାଙ୍କମୁରଲୀଧାରୀ । ୩ ।

---

୦ । କଞ୍ଜ—ପଦ୍ମ; ୨ । ସୁଦାମା ମୁକ୍ତ—ସୁଦାମା ମାଳୀକୁ ମୁକ୍ତ ଦେଇଥିବା ଶ୍ରୀକୃଷ୍ଣ

ସତ୍ୟସୁଖଦାୟକ ନିତ୍ୟସ୍ଥଳନାୟକ
ଦେଖିମା ଶତେ ମୋର ଏହି ଗୁହାର
ଶ୍ରୀବର ବନମାଳୀ ଏ ନାମ କଣ୍ଠେ ମାଳୀ
କର ମୋ ଜୀବ ଯିବ ସତେ ବାହାର । ୪ ।



୪ । ନିତ୍ୟସ୍ଥଳନାୟକ—ଗୋଲୋକ ବା ବୈକୁଣ୍ଠର ଅଧିପତି

(ପଟଣ)

# ଶ୍ରୀ ନାମାବଳୀ ଜଣାଣ

## ଗୌରଚରଣ ଅଧିକାରୀ

(ଊନବିଂଶ ଶତାବ୍ଦୀ)

( ରାଗ—ପ୍ରଭାତ ଭୈରବ )

ଶ୍ରୀନୃସିଂହ ଲକ୍ଷ୍ମୀନାଥ ନାରାୟଣ ଦେବ
ନିରନ୍ତର ନିଶିବାସର ଚିନ୍ତରେ ମନ ଏବ ।ଘୋଷା।

ମାଧବ ମଧୁସୂଦନ ହରି ଜଗନ୍ନାଥସ୍ୱାମୀ
ନିରଞ୍ଜନ ନିର୍ବିକଳ୍ପ ଅନନ୍ତ ଅନ୍ତର୍ଯ୍ୟାମୀ ।୧।

ଶ୍ରୀକର ଶ୍ରୀସତ୍ୟବାଦୀ ଶ୍ରୀନିବାସ ଶ୍ୟାମ
ଶ୍ରୀଧର ଶ୍ରୀପୁରୁଷୋତ୍ତମ ରାଘବ ଅଭିରାମ ।୨।

ପରମବ୍ରହ୍ମ ପୁରୁଷଶ୍ରେଷ୍ଠ ଭକ୍ତଜନଙ୍କ ବନ୍ଧୁ
ଭୁବନେଶ୍ୱର ଭୟଭଞ୍ଜନ ନୀଳଶୈଳଇନ୍ଦୁ ।୩।

କୌରବକୁଳ-ଗର୍ବ-ଖର୍ବ-କାରୀ ସୁଜନରକ୍ଷ
ହେ ମୁକୁନ୍ଦ ଦାମୋଦର ସବ୍ୟସାଚୀପକ୍ଷ ।୪।

ମଚ୍ଛ କଚ୍ଛପ ଶ୍ରୀବରାହ ନୃସିଂହ ଅବତାର
ବାମନ ଶ୍ରୀପରଶୁରାମ କ୍ଷତ୍ରିୟକୁଳସାର ।୫।

ତପନବଂଶମଣ୍ଡନ ଶ୍ରୀରାମଚନ୍ଦ୍ର ସ୍ୱାମୀ
ଜନକସତ୍ୟ ପ୍ରତିପାଳନ ହେତୁ ଗହନଗାମୀ ।୬।

ସପ୍ତ ଉରଗ ମସ୍ତକପର ହଳମୂଷଳଧାରୀ
ସଙ୍କର୍ଷଣ ଅବତାରକ ପ୍ରଲମ୍ବାନ୍ତକାରୀ ।୭।

ବୌଦ୍ଧ କଲ୍କି ଅନନ୍ତ ଅବତାର ସୃଷ୍ଟିହେତୁ
ଧର୍ମ କର୍ମ ସଂସ୍ଥାପନ ଧରଣୀଧର୍ମସେତୁ ।୮।

ହେ ଗୋବିନ୍ଦ ଆନନ୍ଦକନ୍ଦ ଅଭୟ ପାଦପଦ୍ମ
ହେ ଅଚ୍ୟୁତ ଅଭିନବ ଶ୍ରୀ ସର୍ବ-ବିନୋଦ-ସଦ୍ମ ।୯।

ହେ ନବୀନଜଳଦକାନ୍ତ ହେ ବ୍ରଜେନ୍ଦ୍ରନନ୍ଦନ
ହେ ନଟବର ମଦନମୂର୍ତ୍ତି ଗୋପୀହୃଦଚନ୍ଦନ ।୧୦।

ହେ ମୋହନ ନବକିଶୋର ଶ୍ରୀ ବ୍ରଜପୁରମଣ୍ଡନ
ହେ ଗୋକୁଳଧେନୁପାଳନ ଦୁଷ୍ଟଦୈତ୍ୟଖଣ୍ଡନ ।୧୧।

ହେ କଦମ୍ବତଳଲମ୍ବିତ ଯୁଗ୍ମାର୍ଜ୍ଜୁନଭଞ୍ଜନ
ହେ ରସିକ ରାସେଶ୍ୱର କାଳିଗର୍ବଗଞ୍ଜନ ।୧୨।

ହେ କାମିନୀନୟନାଞ୍ଜନ ନିତ୍ୟାନନ୍ଦନଭଙ୍ଗିଆ
ବଂଶୀମୋହନ ଶ୍ୟାମସୁନ୍ଦର ଦାମ ସୁବଳସଙ୍ଗିଆ ।୧୩।

ଦ୍ୱିଜ ଗୌରର ଚରଣ ଭୃଷେ ହେ କିଶୋରୀବଲ୍ଲଭ
ମଦ୍ ବାଞ୍ଛିତ ତ୍ୱତ୍ପଦାବ୍ଜ ଭକ୍ତସଙ୍ଗ ସୁଲଭ ।୧୪।



୧୪ । ମଦ୍ ବାଞ୍ଛିତ—ମୋ କାମନାର ଧନ; ତ୍ୱତ୍ପଦାବ୍ଜ—ତୁମ୍ଭ ପାଦପଦ୍ମ; ଭକ୍ତସଙ୍ଗସୁଲଭ—ଭକ୍ତଙ୍କ ସଙ୍ଗରୁ ସହଜରେ ଲବ୍ଧ ହେଉଥିବା

(ଛବିଶ)

# ଶ୍ରୀ ନାମାବଳୀ ଭଜନ

## ବଲ୍ଲଭ ଦାସ

(ଅଷ୍ଟାଦଶ ଶତାବ୍ଦୀ)

[ବଲ୍ଲଭ ଦାସଙ୍କର ଏହି ଗୋଟିଏ ମାତ୍ର ଭଜନ ଏ ସଙ୍କଳନରେ ସ୍ଥାନ ପାଇଅଛି । ଏହାଛଡ଼ା ତାଙ୍କର ଅନ୍ୟ କୌଣସି ଗୀତ ଆବିଷ୍କୃତ ହୋଇନାହିଁ ।]

(ରାଗ—ପ୍ରଭାତ ଭୈରବ)

ମାଧବ ଦୀନବାନ୍ଧବ କୃଷ୍ଣ କେଶବ ଦଇତାରି ।
ଶ୍ରୀମୁକୁନ୍ଦ ଆଦିକନ୍ଦ ଗୋବିନ୍ଦ ଗିରିଧାରୀ ।ଘୋଷା।
ନାରାୟଣ ବାସୁଦେବ ପୁରୁଷୋତ୍ତମ ପଦ୍ମନାଭ
ଦାମୋଦର ଶ୍ୟାମସୁନ୍ଦର ଶ୍ରୀକର ଚକ୍ରଧାରୀ ।୧।
ମଦନମୋହନ ଶ୍ରୀଗୋପାଳ ମଧୁସୂଦନ ଦୀନଦୟାଳ
ନନ୍ଦନନ୍ଦନ ଜଗତଜୀବନ ସନ୍ଥଜନହିତକାରୀ ।୨।
ଯାଦବପତି ଜଗଦାନନ୍ଦ ଯଶୋଦାସୁତ ପରମାନନ୍ଦ
କରୁଣାକର ଭକ୍ତବତ୍ସଳ ଶ୍ରୀଧର ଶ୍ରୀମୁରାରି ।୩।
ସାରଙ୍ଗଧର ପରଶୁରାମ ନରହରି ନରସିଂହ ଶ୍ରୀରାମ
ଅଚ୍ୟୁତ ଅନନ୍ତ ଜଗତନାଥ ବାମନ ବଂଶୀଧାରୀ ।୪।
ପତିତପାବନ ଶ୍ରୀଭଗବାନ ବିଶ୍ୱମ୍ଭର ବିଶ୍ୱକସେନ
ଆଦିମୂଳ ବିମ୍ବାଧର ଧନୁର୍ଦ୍ଧର ରାବଣାରି ।୫।
ଗୋପବଲ୍ଲଭ ଗୋପୀନାଥ ଗୋବର୍ଦ୍ଧନ ଶ୍ରୀରଘୁନାଥ
ଗରୁଡ଼ଧ୍ୱଜ ଦେବାଧିରାଜ ସଦା ନିକୁଞ୍ଜବିହାରୀ ।୬।

ଆରତତ୍ରାଣ ଶ୍ରୀନିବାସ ନରକନାଶନ ଜଗଦୀଶ
ପୀତାମ୍ବର ମନ୍ଦରଧର ନୀଳକନ୍ଦରବିହାରୀ । ୭ ।
ଶ୍ରୀଦୟାସାଗର ରାଜୀବନେତ୍ର ମାଧବ ହରି କମଳାକାନ୍ତ
ନବଘନ ଜଗବନ୍ଧୁ ଜନାର୍ଦ୍ଦନ କଳ୍ପତରୁ କଂସାରି । ୮ ।
ମାୟାଧରଦେବ ପୁଣ୍ଡରୀକାକ୍ଷ ଗଜୋତ୍ତମ ନରୋତ୍ତମ ଶ୍ରୀବତ୍ସ
ଚିନ୍ତାମଣି ରାସରସିକ ବାସବଗର୍ବହାରୀ । ୯ ।
ବନମାଳୀ ବୈକୁଣ୍ଠ ଶ୍ରୀମନ୍ତ ଚତୁର୍ଭୁଜ ବିଷ୍ଣୁ ଶ୍ରୀଲୋକନାଥ
ସଚ୍ଚିଦାନନ୍ଦ ପୂର୍ଣ୍ଣବ୍ରତ ଭକତଆନନ୍ଦକାରୀ । ୧୦ ।
କୃପାସିନ୍ଧୁ ଗୋକୁଳଚନ୍ଦ୍ର ବ୍ରଜରାଜ ଉପେନ୍ଦ୍ର
ସଦାନନ୍ଦ ସତ୍ୟବାଦୀ ଅଧାର ପୂର୍ଣ୍ଣ ବ୍ରହ୍ମ ପ୍ରଲମ୍ବାରି । ୧୧ ।
କାହ୍ନୁ ସନାତନ ଶ୍ରୀହୃଷୀକେଶ
ପୀତବାସ ଭାବଗ୍ରାହୀ ସୁରେଶ
ଗୋପୀଜନବଲ୍ଲଭ ଲୋକେଶ
ଚରଣେ ଶରଣ ବଲ୍ଲଭଦାସ । ୧୨ ।



(ସତେଇଶ)

# ଶ୍ରୀ ବର୍ଣ୍ଣମାଳ ନାମାବଳୀ ଭଜନ

## ବିନୋଦ ଦ୍ୱିଜ

(ଅଷ୍ଟାଦଶ ଶତାବ୍ଦୀ)

[ ସ୍ୱର ଓ ବ୍ୟଞ୍ଜନ ଉଭୟ ବର୍ଣ୍ଣଙ୍କୁ ପଦମାନଙ୍କର କ୍ରମାନ୍ୱୟେ ଆଦ୍ୟ ଅକ୍ଷର କରି ଲେଖା ହୋଇଥିବା ଏହି ଗୋଟିଏ ମାତ୍ର ଭଜନ ହସ୍ତଗତ ହୋଇଅଛି । କବି ବିନୋଦ ଦ୍ୱିଜଙ୍କ ସମ୍ବନ୍ଧରେ କୌଣସି ତଥ୍ୟ ମିଳନାହିଁ । ]

( ରାଗ—ଖଣ୍ଡକାମୋଦୀ )

ଶ୍ରୀକୃଷ୍ଣ ନାମକୁ ଭଜ ମନ ମୋହର
ଯେଉଁ ନାମ ଧରି ହର ହେଲେ ଅମର । ଘୋଷା ।
ଅଣାକାରିକାରିମୃତ ଅଜ୍ଞାନହର୍ତ୍ତା
ଆଦିଦେବ ଆତ୍ମାରୂପୀ ଆନନ୍ଦଦାତା
ଇଚ୍ଛାମୟ ତୋ ନାମ ଇଚ୍ଛାରେ ତୁ ଜନମ
ଈଶ୍ୱର ତୁ ବୋଲାଉ ଇନ୍ଦୀବର ଲୋଚନ
ଉଦ୍ଧବେ ଜ୍ଞାନଦାତା ଉଦୂଖଳେ ବନ୍ଧନ
ଊର୍ଦ୍ଧ୍ୱରେ ରହୁ ରୁକ୍ମିଣୀହର । ୧ ।
ଋଷି ଋତୁରାଜ ଋଷଭ ତୁ ବୋଲାଉ
ଌଟି ଌଟି ଗୋପପୁରେ ଲବଣୀ ଖାଉ
ଏକଇ ବ୍ରହ୍ମରୂପ ଏକାକ୍ଷର ସ୍ୱରୂପ
ଐଶ୍ୱର୍ଯ୍ୟଦାତା ଦୀନସ୍ଥାନେ କରାଉ ନୃପ

---

୧ । ଅଣାକାର—ପ୍ରାକୃତ ଆକାର ନ ଥିବା ; ଋଷଭ—ବଳଦ; ଉଦୂଖଳ—ଧାନ ଛଡ଼ାଇ କାଣ୍ଡିବାପାଇଁ କାଠରେ ତିଆରି ହୋଇଥିବା ପାତ୍ର

ଓଷିଷ୍ଣ ଅକ୍ଷର୍ ତୁ ଓଁକାର ମଧ୍ୟେ ଗୋପ୍ୟ
ଔଷଧ ଔର୍ବ ମୁନିବର ।୨।

କେଶବ କଂସାରି କାହ୍ନୁ କମଳାବର
ଖଗପତି ଖଗାସନ ଖଟ୍ଟାଙ୍ଗଧର
ଗୋବନ୍ଦ ଗୋପୀନାଥ ଗୋପାଳ ଗୋପସୁତ
ଘନଶ୍ୟାମ ଅଚ୍ୟୁତ ଘଟେ ଘଟେ ଜ୍ୟୋତ
ଙ୍ଙୁନ୍ତୁ ଊର୍ଦ୍ଧ୍ୱ ନେତ ଊର୍ଦ୍ଧ୍ୱରେ ତାଙ୍କ ଗତି
ଚତୁର୍ବର୍ଗଦାତା ଚକ୍ରଧର ।୩।

ଛବିଶିରୋମଣି ଛଡ଼ଚକ୍ରେ ଈଶ୍ୱର
ଜଗନ୍ନାଥ ଜଗବନ୍ଧୁ ଜଗଦୀଶ୍ୱର
ଝୀନପଦ୍ମ ଶୋଭି ଝଣ୍ଟକ ରଙ୍ଗାଧର
ନିର୍ଲେପ ନିରଞ୍ଜନ ନିର୍ଗୁଣ ନିରାକାର
ଟେକଣ ଗିରିବର ଠାଣ ଭଙ୍ଗ ଇନ୍ଦ୍ରର
ଡକେ ଡକାଇ ନାମ ଠାକୁର ।୪।

ତରଙ୍ଗର୍ ତାଳେ ଗଜ ଡର ମୋହର
ଢାଲେ ଛେଦ ଗ୍ରାହଶିର ସିନ୍ଧୁମଧର
ଅନନ୍ତ ଅନାହତ ଅମରେଶ ଅଦ୍ୱୈତ
ତପନକୁଳେ ଜାତ ସମ୍ପୁଲୋକର ନାଥ

---

୨ । ଋଷି—କପିଳ ଅବତାର ଧାରଣକାରୀ ; ଋତୁରାଜ—ଋତୁମାନଙ୍କ ମଧ୍ୟରେ ଶ୍ରୀକୃଷ୍ଣ କୁସୁମାକର ବା ବସନ୍ତ; ମୁନିବର—ବ୍ୟାସଦେବରୂପୀ

୪ । ଛବି—ଷଡ଼ବିମ୍ବ ; ନିର୍ଗୁଣ ନିରାକାର—ପ୍ରାକୃତଗୁଣ ବା ଆକାର ବିହୀନ

ଥାବର ଜଙ୍ଗମାଧ କାଷ୍ଠପତଙ୍ଗେ ଥିତ
ଦୀନବନ୍ଧୁ ଦେବ ଦାମୋଦର ।୫।

ଧୀରମତି ଧର୍ମଧ୍ୱଜ ଧ୍ରୁବତାରଣ
ନରହରି ନାରାୟଣ ନନ୍ଦନନ୍ଦନ
ପରମାନନ୍ଦ ପଦ୍ମନାଭ ପରମବ୍ରହ୍ମ
ଫୁଲମାଳଭୂଷଣ ଫଣିଧରଶୟନ
ବାସୁଦେବ ବରଦ ବନମାଳୀ ବାମନ
ଭବତାରଣ ଭକ୍ତଜଧର ।୬।

ମାଧବ ମଧୁସୂଦନ ମହୁମାମେରୁ
ଯାଦବ ଜଗଜ୍ଜୀବନ ଜଗତଗୁରୁ
ରାଧାରମଣ ରାମ ରଘୁକୁଳନନ୍ଦନ
ଲକ୍ଷ୍ମୀକାନ୍ତ ହେ ଲଙ୍କପତି କଲ ନିଧନ
ବ୍ରଜଜନଜୀବନ ବିଷ୍ଣୁ ବଂଶୀବଦନ
ଶ୍ରୀଧର ଶ୍ରୀନାଥ ଶ୍ରୀୟାଧର ।୭।

ଷଣ୍ଢାସୁର ଶକଟାକୁ କଲ ନିଧନ
ସୁଦର୍ଶନଧାରଣ ସର୍ବୋତ୍ତମ
ହରିନାମ ଟି ସାର ହେତୁ କରଣ ଧର
କ୍ଷମାନିଧି ପୟୂର କ୍ଷୀରସିନ୍ଧୁ ଠାକୁର
ପଦ୍ମପାଦକୁ ଧ୍ୟାଇ କହଇ ଦ୍ୱିଜବର
ବିନୋଦେ ରଖ ଭବଭୟୁର ।୮।

---

୭। ଶ୍ରିୟା—ମହାଲକ୍ଷ୍ମୀ
୮। ଭବଭୟୁର—ଭବଭୟରୁ

(ଅଠେଇଶ)

# ଶ୍ରୀ ଆରତତ୍ରାଣ ଚଉତିଶା ଜଣାଣ

## (ଦୀନ) କୃଷ୍ଣ ଦାସ

(ସପ୍ତଦଶ ଶତାବ୍ଦୀ)

[କଥିତ ଅଛି, ଗରୁଡ଼ସ୍ତମ୍ଭ ପଛପଟୁ କଳାଶ୍ରୀମୁଖକୁ ଚାହିଁ ଏ ଜଣାଣଟି ଗାନ କରିବାଫଳରେ କବି କୃଷ୍ଣଦାସ ଦୁରାରୋଗ୍ୟ କୁଷ୍ଠ ବ୍ୟାଧିରୁ ଆରୋଗ୍ୟ ଲାଭ କରିଥିଲେ । ଆଜି ମଧ୍ୟ ଲକ୍ଷ ଲକ୍ଷ ଲୋକଙ୍କ ସନ୍ତପ୍ତ ହୃଦୟକୁ ଏ ଜଣାଣ ଶୀତଳ କରୁଅଛି ଓ ଚିରକାଳକୁ ମଧ୍ୟ ଶୀତଳ କରୁଥିବ ।]

( ରାଗ—କାମୋଦୀ )

କୃପାସିନ୍ଧୁବଦନ          କର  ଅବଲୋକନ
କଉଁ  କରମହୀନ  ଜନ
କାକୁସ୍ତଭର[1]  ହୋଇ          କରଯୋଡ଼ି  ଜଣାଇଁ
ଗରୁଡ଼ସ୍ତମ୍ଭ  ସନ୍ନିଧାନ
ହେ  ମହାପ୍ରଭୁ !
କୃପାସରତପତ୍ର  ହୋଇ ।  କର୍ମହୀନ  ଜନର  ତହିଁ
କରୁଣା କଲ ନାହିଁ          କପାଁ ହେ ଭାବଗ୍ରାହୀ !
ଏହା  ମୁଁ  ବିଚାର  ମଣଇ
ହେ ମହାପ୍ରଭୁ !  ।୧।

---

୧ । କାକୁସ୍ତଭର ହୋଇ—ଅତ୍ୟନ୍ତ ବିନୟରେ

ଖିଳବ୍ରହ୍ମାଣ୍ଡୋଦରେ          କର୍ମହୀନଜନରେ
ଯେଣୁ ମୋ ସମ ଆନ ନାହିଁ
ଖଗତିଳକକାନ୍ତ          ସେ କାରଣୁଁ ଏମନ୍ତ
ଖେଦ ଆରତେ କହୁଲଇଁ
ହେ ମହାପ୍ରଭୁ !
ଖଣ୍ଡିଲ ନାହିଁ ଯେଣୁ ମୋର । ଖେଦ-ଆର୍ତ୍ତି-ରତ୍ନାକର
ଖିଳବ୍ରହ୍ମାଣ୍ଡଧର !          ଖଣ୍ଡି ନାହିଁ କାହାର
କଉଁ ବିପତ୍ତି ବିଶ୍ୱମ୍ଭର
ହେ ମହାପ୍ରଭୁ ! ।୨।

ଗଜରାଜକୁ ଜଳେ          ଗ୍ରାହ ଗ୍ରାସିବା କାଳେ
ଡାକିଲା ରଖ ଆଦିମୂଳ
ଗରୁଡର ଆଢଙ୍ଗ          ଜାଣିଣ ତା ଶ୍ରୀରଙ୍ଗ
ରଥାଙ୍ଗ ପେଷିଲ ଉଲ୍ଲାଳ
ହେ ମହାପ୍ରଭୁ !
ଗ୍ରାହ. ଜୀବନେ ନିବାରିଲ । ଗଜ ବିପତ୍ତିରୁ ତାରିଲ
ଗରୁତ୍ମାନ-କେତନ !          ମମ କର୍ମକୁ ହୀନ
ନିସ୍ୱଣ-ନୀରନିଧି ହେଲ
ହେ ମହାପ୍ରଭୁ ! ।୩।

---

୨ । ଖିଳବ୍ରହ୍ମାଣ୍ଡଧର—ଅଶେଷ ବ୍ରହ୍ମାଣ୍ଡର ଅଶ୍ରୟସ୍ଥଳ, ଖଗତିଳକକାନ୍ତ—ଶ୍ରେଷ୍ଠ ପକ୍ଷୀ ଗରୁଡ଼ର ପ୍ରଭୁ;

୩ । ରଥାଙ୍ଗ—ଚକ୍ର, ଗ୍ରାହ—କୁମ୍ଭୀର, ଗରୁତ୍ମାନକେତନ—ଗରୁଡ଼ଧ୍ୱଜ; ନୀରନିଧି—ସମୁଦ୍ର ।

ଘନଶ୍ୟାମ ହେ ଘନ ବିପଦ ବିନାଶନ
ବିସ୍ମରୁଥାଇ ମନେ ମୋର
ଘୋର ବିପତ୍ତି ଘୋର କେତେମାନ ଯାହାର
ପ୍ରଭୁ ମହିମାଅକୂପାର
ହେ ମହାପ୍ରଭୁ !
ଘନେ-ଏ କଥା ମନେ ଥିଲା । ଘୃଣା କି କାରଣେ ନୋହିଲା
ଘୋର ବିପତ୍ତି ମୋର ହୋଇ ଘଟକୁମ୍ଭର
ମହିମାବାରିଧି ଶୋଷିଲା
ହେ ମହାପ୍ରଭୁ ! ।୪।

ନାରକିନିସ୍ତାରଣ କାରଣେ ପ୍ରହରଣ
କରକମଳରେ ବହିଛ
ନିଧନ ସମୟରେ କିପାଁ ମୋ ବିଷୟରେ
ନିର୍ଦ୍ଦୟହୃଦୟ ହେଉଛ
ହେ ମହାପ୍ରଭୁ !
ନୀଳାଚଳରେ ତୁମ୍ଭେ ଥିବ । ନିରେଖି ନିଶ୍ଚେ ନାଶିବ
ନିଖିଳନିକେତନ ନବପଞ୍ଚଭୁବନ
ମଧ୍ୟରେ କେମନ୍ତ ଶୁଭିବ
ହେ ମହାପ୍ରଭୁ ! ।୫।

---

୪ । ଘନ ବିପଦ— ଘୋର ବିପଦ ; ହୋଇ ଘଟକୁମ୍ଭର— ଅଗସ୍ତି ମୁନି ହୋଇ, ଅଗସ୍ତ୍ୟ ମୁନି ସମୁଦ୍ରକୁ ଚଳୁ କରି ଦେଇଥିଲେ;
୫ । ପ୍ରହରଣ—ଅସ୍ତ୍ର, ଚକ୍ର ; ନିଖିଳ ନିକେତନ— ସକଳ ସୃଷ୍ଟିର ଆବାସସ୍ଥଳ, ନବପଞ୍ଚ—ଚଉଦ ।

ଭକ୍ତବର୍ଗ ଯାହାର ଚରଣେ ଶରଣ୍ଣ
ରହିଲା ଯାଉ ଆଜ୍ଞାକାରୀ
ଶୁଣି ଯାହା ଶ୍ରୀମୁଖ ଚୁଂଗ ଦୁଟିତ ଦୁଃଖ
ସେ ପ୍ରଭୁ-ଭୃତ୍ୟହିଁ ଭିକାରୀ
ହେ ମହାପ୍ରଭୁ !
ଚତୁର୍ଦ୍ଦଶ-ଭୁବନ-ପ୍ରାଣୀ । ଚକିତ ହେବେ ଏହା ଶୁଣି
ଚିବ ନୋହେ କି ଏହୁ କଥା ହେ ମହାବାହୁ
ନୀଳ-ଶଇଳ-ଚୂଡ଼ାମଣି
ହେ ମହାପ୍ରଭୁ ! ।୬।

ଘୁଞ୍ଚ ସକଳ ଆଶ ତୁମ୍ଭ ପଦସାରସ
ଭରସା କରନ୍ତି ସନ୍ତେ
ଲୋଭ-ସାଗରେ ପଡ଼ି ମରିବାବେଳେ ବୁଡ଼ି
ଘୁଞ୍ଚ ତ ଦେଉଅଛ ମୋତେ
ହେ ମହାପ୍ରଭୁ !
ଛାଡ଼ମଣ୍ଡଳେ ତୁମ୍ଭ ବିନା । ଛଣେହେଁ ନାହିଁ ଆନ ସେହା
ଛନ୍ଦ ନୁହେ ଜଗତ କହୁଛି ପ୍ରଭୁ ! ସତ୍ୟ
ନଷ୍ଟେ ଏତେବେଳକୁ ସିନା
ହେ ମହାପ୍ରଭୁ ! ।୭।

---

୬। ଚୁଂଡ—ଦୂର; ଚିବ—ବଚନ, ଅଷ୍ଟପ୍ରହରକ
୭। ସାରସ—ପଦ୍ମ; ଲୋଭ—ଲୋଭ; ଛାଡ଼—ସ୍ରୀତ; [illegible], ଭୂପଦାବାରଣ; ଛନ୍ଦ—
ଘଷଣ

ଜଗତ-ଅନୁରାଗେ ଜାତ ଅବନୀଭାଗେ
ଦଇବେ ଜଗତର ନାଥ
ଜଗତ ଜନଙ୍କର ଭିତରୁ ହିଁ ବାହାର
ମୁହିଁ କ କାରଣେ ଅନାଥ
ହେ ମହାପ୍ରଭୁ !
ଜଗନ୍ନାଥ ନାମ ବହିବ । ଜନଆରତ ନ ଶୁଣିବ
ଜଗତପତି ହୋଇ ଅମିତ କଳ୍ପଠାଇଁ
ଆଉ କେ କା ଆଗେ କହିବ
ହେ ମହାପ୍ରଭୁ ।୮।

ଝଲକୁ ଏ ବଚନ ନବପଞ୍ଚଭୁବନ
ଆରତଭଞ୍ଜନ ଶ୍ରୀହରି
ଝଞ୍ଜିକା, ମଣୁଅଛ କାହିଁ ମୋ ବିଷୟରେ
ବିନାଶକାଳେ ଦଇତାରି
ହେ ମହାପ୍ରଭୁ !
ଝାଡ଼େ ତାଙ୍କଲ ଗର୍ଭ ଏଣୀ । ଝାଡିବାରେ ଛା ତାକ ଶୁଣି
ଝିମିଟେ ସେ ବିପତ୍ତି ହରିଲ ହେ ଶ୍ରୀପତି
ମୋତେ ନିର୍ଦ୍ଦୟ କିପାଁ ପୁଣି
ହେ ମହାପ୍ରଭୁ ।୯।

---

୮। ଜଗତ ଅନୁରାଗେ—ସଂସାର ଲୋକଙ୍କ ହିତ ଇଚ୍ଛା କରି; ଅବନୀଭାଗେ—ପୃଥିବୀରେ । ୯। ଝଲକୁ—ଖ୍ୟାତ ହୋଇଅଛୁ; ଝଞ୍ଜିକା ମଣୁଅଛ—ଦ୍ୱିଧାବୋଧ କରୁଅଛ, ଏପଟ ସେପଟ ହେଉଅଛ

ନିର୍ଗୁଣ ଥିଲେ ଶତେ     କହ ହେ ପ୍ରଭୁ ! ମୋତେ
ମୋ ଜୀବ ପ୍ରତି ଆଶା ତୁଟୁ
ନଷ୍ଟେ କରୁଣାନିଧି     ହେଲ ନିର୍ଦ୍ଦୟବୃତ୍ତି
ବୋଲି ନିନ୍ଦୁବନେ ପ୍ରକୃତି
ହେ ମହାପ୍ରଭୁ !
ନଷ୍ଟେ ନିର୍ଦ୍ଦୟ ହେବ ଯେବେ । ନିଖିଳେ ଅଜ ନାକ ଥିବେ
ନାଗନୃପତି ସୁର     ସମୀର ନିଧିଧର
ଯେ ଯାହା ସତ୍ୟକୁ ଲଙ୍ଘିବେ
ହେ ମହାପ୍ରଭୁ ! ।୧୦।

ଟିକାଏ ବିଲମ୍ବିତ-     ନ କରି ପଣ୍ଡୁସୁତ-
ଯୋଷିତ ସଙ୍କଟୁ ତାରିଲ
ଟେକା ଦୁଃସହ ଘୋର     ଦାରିଦ୍ର୍ୟ ସୁଦାମାର
ଦର୍ଶନମାତ୍ରକେ ହରିଲ
ହେ ମହାପ୍ରଭୁ !
ଟେକ କରୁଣା କଟାକ୍ଷରେ । ଟିକାଏ ଅବଲୋକଲେ ମୋତେ
ଟଳିବ କି ମହିମା     ସଂସାର ସୁଖସୀମା !
ଏମନ୍ତ ଝଗ୍ରୁର ମନରେ
ହେ ମହାପ୍ରଭୁ ! ।୧୧।

---

୧୦ ନିଖିଳେ—ବ୍ରହ୍ମାଣ୍ଡମାନେ; ନାଗନୃପତି—ବାସୁକି, ସୁର—ଦେବତା, ସମୀର—ପବନ, ନିଧିଧର—ସମୁଦ୍ର । ୧୧ ଯୋଷିତ—ଭାର୍ଯ୍ୟା, ଟେକ—ବଳ

ଠାବ ନ କଲ୍ ଶବ୍ଦେ        କଉଁ ଦୋଷକୁ ମୋତେ
ନଗଣ କରୁଛ ଗୋସାଇଁ
ଠାକୁର ହୋଇ ଭୃତ୍ୟ-        ଠାରେ କଲେ ଏମନ୍ତ
ଆଉ କାହାର ଗତି କାହିଁ
ହେ ମହାପ୍ରଭୁ !
ଠୂଳ ବିପତ୍ତି ଦେଖି ମୋର । ଠିକେ ବା କରୁଛ ଅନ୍ତର
ଠଣ ପଦ୍ମଚରଣ        ବିନୁଁ ପ୍ରତିକାରଣ
ଅଛୁ କେ ବ୍ରହ୍ମାଣ୍ଡଭିତର
ହେ ମହାପ୍ରଭୁ ! ।୧୨।

ତେଉଥିଲ ଶ୍ରବଣ        ଗଜ ଆଦ ବ୍ରାହ୍ମଣ
ଡାକନ୍ତ ମାନବେ ଶୁଣିଲ
ଭୋଳା-ଗୋଚରେ ଥାଇ        ଡାକଲେ ନ ଶୁଭଇ
କର୍ଣ୍ଣକୁହର କି ମୁଦିଲ
ହେ ମହାପ୍ରଭୁ !
ଡାକ ବାଜୁଛି ଜଗତରେ । ଡାକଲେ ତ ଶୁଣ କର୍ଣ୍ଣରେ
ଡହିଲ କି ମୋହର        ବିପଦ ଦେଖି ଘୋର
ତେଣୁ ବା ନ ଶୁଣୁଛ ବାରେ
ହେ ମହାପ୍ରଭୁ ! ।୧୩।

ତାଲେ ତୁମ୍ଭ ବାହାରେ        ଅଛୁ କେ ବ୍ରହ୍ମାଣ୍ଡରେ
କାହା’ଗେ ଜଣାଇବ ଆଉ
ତାଲେ ବିପଦାର୍ଣ୍ଣବେ        ଭାସୁଛି ଭୃତ୍ୟ ଏବେ
ତୁମ୍ଭ ପଶ୍ଚାଏ ପ୍ରଭୁ ଥାଉ
ହେ ମହାପ୍ରଭୁ !

ଢମାଳି ପ୍ରାଚେଷ୍ଟ ମୋ ଉତ୍ତର । ତାଳେ ନ ମଣ ଚକ୍ରଧର !
ଚଳି ନ ଯାଉ ଜୀବ        ଦେଇ କରୁଣାନାବ
ଉଦ୍ଧର ଧର ବିଶ୍ୱମ୍ଭର
ହେ ମହାପ୍ରଭୁ ! ।୧୪।

ଅହେ ହେ ମହାବାହୁ !        ସ୍ୱପଦ-ଚନ୍ଦ୍ର-ରାହୁ !
ଆଜ୍ଞା ଯେ ଦେଇଛ ଶ୍ରୀମୁଖେ
ଆରତ ଜନ ହେଲେ        ଆରତରେ ଡାକିଲେ
ମୁଁ ତାହା ନ ସହଇ ରେଖେ
ହେ ମହାପ୍ରଭୁ !

ଅଜ ଆରତ ମୋହ ପରେ । ଅଛୁ କେ ବ୍ରହ୍ମାଣ୍ଡ ଭିତରେ
ଆରତତ୍ରାଣ ତାହା        ଜାଣ ହେ ଚଉବାହା !
ପ୍ରତେ ତ ନାହିଁ ମୋ ମନରେ
ହେ ମହାପ୍ରଭୁ ! ।୧୫।

ତୁମ୍ଭେ ତ୍ରିତାପହର        ତ୍ରିଭୁବନ ଈଶ୍ୱର
ପତିତ-ଜନ-ନିସ୍ତାରଣ
ତେଣୁ କର ମୋହର        ଭରସା ନିରନ୍ତର
ଯେଣୁ ମୁଁ ପତିତଭୂଷଣ
ହେ ମହାପ୍ରଭୁ !

ତଥାପି କରୁଣା ନିଧାନ । ସାହା ନ କଲେ ଦୀନଜନ
ଯେଣୁ ତୁମ୍ଭର ଦୀନ-        ବନ୍ଧୁ-ନାମ-କୀର୍ତ୍ତନ
ତେଜ ତ୍ରିଭୁବନ-ମୋହନ
ହେ ମହାପ୍ରଭୁ ! ।୧୬।

---

୧୪ । ତାହାରେ—ଛଡ଼ା, ଢମାଳି—ଧୃଷ୍ଟ ।

ଅଯୂ ନୋହୁଛି ମନ ଯେତେକେ ବଜୁଲି ଘନ
ନଳୀମୀଦଳ ବନ ଧ୍ୟାୟୂ
ଥିଲି ଯେଉଁ ପ୍ରଭୁଙ୍କୁ ଆଶା ତଙ୍କରିବାକୁ
ଦେଖି ସେ ପ୍ରଭୁର ନିର୍ଦ୍ଦୟ
ହେ ମହାପ୍ରଭୁ !
ଥିଲେ କେ ଅଛି ଜଗତରେ । ଥଯୂ ବା କେ କରିବ ମୋତେ
ଥିତ ଆଦ ପ୍ରଳୟେ ଯାହା ଆଜ୍ଞାରେ ହୁଏ
ସେ ପ୍ରଭୁ ନ ରଖିଲେ ଠାବେ
ହେ ମହାପ୍ରଭୁ ! ।୧୭।

ଦୟାସାଗର ବୋଲି ଦମ୍ଭ ତେଜି ଭଜିଲି
ଅଭୟ ଚରଣେ ତୁମ୍ଭର
ଦେଲ କାହିଁ ବିବୁଧ- ପତି ପଦ ବିଶୁଦ୍ଧ
ମୋ କର୍ମେ ଦୟାହିଁ ଦୁସ୍ତର
ହେ ମହାପ୍ରଭୁ !
ଦୀନବନ୍ଧୁ ନାମ ତୁମ୍ଭର । ଦ୍ୱିସପ୍ତ ଲୋକରେ ବିସ୍ତାର
ଦେଖୁ ଦେଖୁ ଦୁର୍ଗତି ଦେଉଛି ଦଣ୍ଡ ଅତି
ଏ ନପା ହୋଇବ କାହାର
ହେ ମହାପ୍ରଭୁ ! ।୧୮।

---

୧୮ । ଦ୍ୱିସପ୍ତ—ଚଉଦ; ନପା—ଲଜ୍ଜା

ଧରିଛନ୍ତି ଏହି ସୁଖ ମନେ ହେ ପଦ୍ମମୁଖ
ଅଭୟ ପଞ୍ଜରେ ପଶିଲେ
ଧରି ଦାରୁଣ ମୂର୍ତ୍ତି ହୋଇ ସକୋଧ ଅଛ
ବିଷମ ବିପଦ ଗ୍ରାସିଲେ
ହେ ମହାପ୍ରଭୁ !
ଧରି ଯାହା ନାମ ମନରେ । ଧ୍ରୁବ ପ୍ରହ୍ଲାଦ ନିସ୍ତରିଲେ
ଧରି ଏହି ଭରସା ଅଛିତ ପ୍ରତିଆଶା
କରିଛି ରଜନୀ ବାସରେ
ହେ ମହାପ୍ରଭୁ ! ।୧୯।
ନଚାହିଁ ସଙ୍କଟକୁ ଶେଷ ସୁଦର୍ଶନକୁ
ଏବେ କି କାରଣେ ନ ପେଷ
ନଷ୍ଟେଁ ମୀରଜ ନାଶ ଗଲେ ହେ ହୃଷୀକେଶ
ଏଥି କି ହୋଇବ ପୌରୁଷ
ହେ ମହାପ୍ରଭୁ !
ନ ସହି ଆରତ ବିଳମ୍ବ । ନିସ୍ତାରିଛ ନୃପକଦମ୍ବ
ନିଧନ ସମୟରେ ମୀରଜ କନଠାରେ
ଏବେ କି କାରଣେ ବିଳମ୍ବ
ହେ ମହାପ୍ରଭୁ ! ।୨୦।
ପରିହରି ସକଳ ଆଶା ହେ ଆଦିମୂଳ
ପଶିଛି ଶରଣ ତୁମ୍ଭରେ
ପ୍ରଭୁ ତ ଅବଗୁରୁ କରି ଦେଉଛ ଘୋର
ବିପଦ-ସଙ୍କଟ-ମୁଖରେ
ହେ ମହାପ୍ରଭୁ !

୨୦ । ନୃପ କଦମ୍ବ—ନୃପସମୂହ (ଜରାସନ୍ଧଦ୍ୱାରା ବନ୍ଦୀ କରାଯାଇଥିବା)

ଯେପର ତୁମ୍ଭର ନାହିଁ । ପରମଦୟାଳୁ ଗୋସାଇଁ
ପତିତ-ଗତି ହୋଇ ପତିତ ଜନ ଠାଇଁ
ଏତେ ନିର୍ଦ୍ଦୟ କାହିଁପାଇଁ
ହେ ମହାପ୍ରଭୁ ! ।୨୧।

ଯେଉଁ କହିବ କେତେ ଭରସା ଅଛି ଯେତେ
ତୁମ୍ଭ ଶ୍ରୀଚରଣେ ମୋହର
ଫୁଲ୍ଲେନ୍ଦୀବରେକ୍ଷଣ ତୁମ୍ଭେ ତ ତାହା ଜାଣ
ଜାଣି କରୁଛ କାହିଁ ଦୂର
ହେ ମହାପ୍ରଭୁ !
ଯହା ମୁଁ କରୁଛି ତୁମ୍ଭଙ୍କୁ । ଯାଇ ଦୁସ୍ତର ତରିବାକୁ
ଯଣିଶପୂନ ଦୀନ- ବାନ୍ଧବ ହୋଇ ଭଲ
କରୁଛ ମାନୁଷ ଜନଙ୍କୁ
ହେ ମହାପ୍ରଭୁ !।୨୨।
ବନଜ-କରେ ଯାନ- ଚରଣ ବିଲୋକନ
କରି ପ୍ରମୋଦ ହେଉଥାଇଁ
ବିଷମ ସମୟରେ ମୋହ ପକ୍ଷପାତରେ
ପ୍ରତିକାର କରିବାପାଇଁ
ହେ ମହାପ୍ରଭୁ !

---

୨୨ । ଫୁଲ୍ଲେନ୍ଦୀବରେକ୍ଷଣ—ପ୍ରସ୍ଫୁଟିତ ପଦ୍ମ ତୁଲ୍ୟ କମନୀୟ ନୟନ ଯାହାଙ୍କର; ଯାଇ—ନିଷ୍ଟତରୁଥିପ; ୨୩ । ବନଜ—ପଦ୍ମ ; ଯାନଚରଣ—ଚକ୍ର

ବିଷମ ସଙ୍କଟ ପଡ଼ିଲା । ତାଟେର କି ବନ୍ଧ ନ ଭେଦିଲା
ବିନାଶିବାକୁ ଗାଢ଼    ସଙ୍କଟମାନ ଦାଢ଼
ଚକ୍ର କି ବକ୍ରକୁ ଭଜିଲ
ହେ ମହାପ୍ରଭୁ ! । ୨୩ ।

ଭୂମି-ଭାର-ହରଣେ    ପତିତ-ନିସ୍ତାରଣେ
ଭୃତ୍ୟଜନ ତାରିବା ପାଇଁ
ଥିବେ ନୀଳକନ୍ଦରେ    ବିଜେ କରିଛ କାଳେ
କମ୍ବୁ ଚକ୍ର ଭୂଷିତ ହୋଇ
ହେ ମହାପ୍ରଭୁ !
ଭକ୍ତବତ୍ସଳ ତୁମ୍ଭ ବାନା । ଭବଭୟକୁ ବଜ୍ରସେହ୍ଳା
ଭବସାଗରେ ଯେବେ    ଭୃତ୍ୟ ଭାସିବ ଏବେ
ସେ ନିନ୍ଦା ତୁମ୍ଭଙ୍କୁହିଁ ସିନା
ହେ ମହାପ୍ରଭୁ ! । ୨୪ ।

ମହାପ୍ରଭୁ ଅନ୍ତର    କରିଲେହେଁ ମୋହର
ତୁମ୍ଭ ବିନା ଦୋସର ନାହିଁ
ମୃଗଧୃତ ଚକୋର    ଗୃଛକ ଜଳଧର
ମୀନ ଜୀବନ ପ୍ରାୟୁ ହୋଇ
ହେ ମହାପ୍ରଭୁ !

---

୨୪ । ବଜ୍ରସେହ୍ଳା—ବଜ୍ରତୁଲ୍ୟ କଠୋର ସାଞ୍ଜୁ; ୨୫ । ମୃଗଧୃତ—ଚନ୍ଦ୍ର; ଜୀବନ—ଜଳ

ମୋତେ ଯେବେ ଦୟା ନୋହିବ । ମୋ ଜୀବ କ୍ଷଣେ ନ ରହିବ,
ମନ୍ଦିତ କରି କହୁ- ଅଛୁ ହେ ମହାବାହୁ
ସବୁରେ ସଂଶୟ ରହିବ
ହେ ମହାପ୍ରଭୁ ! ।୨୫।

ଯେ ନାମ ସୁମରଣେ ମରଣେ ଭୟ କ୍ଷଣେ
ନୋହେ ଦଣ୍ଡଧର-ଦଣ୍ଡକୁ
ଜଗତ-ନିସ୍ତାରଣ ଥାଉଁ ଏଡ଼େ ଦାରୁଣ
ହୋଇଲ ବିପତ୍ତିକାଳକୁ
ହେ ମହାପ୍ରଭୁ !
ଜୀବ ମିବାର ବଡ଼ ସୁଖ । ଜୀଇବା ସମ ନାହିଁ ଦୁଃଖ
ଯାହା ସାମନ୍ତ ଗୃହ- ବର୍ଗରେ ଅଧିକାରୀ,
ତାହା ସେବକର ଏ ଦୁଃଖ
ହେ ମହାପ୍ରଭୁ ! ।୨୬।

ସଜୀବ-ପଦ ଯାର ପାଷାଣ କରେ ନର
ଶୋକ କଲୁଷ ନିବାରଣ
ଚଳ ପ୍ରାୟ ତାହାର ପଟେଶ୍ୱର ହେବାର
ଏ ନିକ ପ୍ରଭୁଙ୍କୁ ଭୂଷଣ
ହେ ମହାପ୍ରଭୁ !

---

୨୭। ପାଷାଣ କରେ ନର—ଶ୍ରୀ ରାମାବତାରରେ ପାଷାଣକୁ ଅହଲ୍ୟା କରିଥିଲେ

ରମା ଯାହାର ପ୍ରିୟବଣ୍ଟୀ । ରସାଦ ତ୍ରୈଲୋକ୍ୟର ପତି
ଭଜଏ ତ ସୁନ୍ଦର ନୋହୁଲା ମୋ ଉଦ୍ଧର
ଏମନ୍ତ ପ୍ରଭୁର ଏ ରୀତି
ହେ ମହାପ୍ରଭୁ ! ।୨୭।

ଲଲାଟର ଲିଖନ କେ କରିପାରେ ଆନ
ଏମନ୍ତ ଆଜ୍ଞା ହେବ ଅବା
ଲଭି ତୁମ୍ଭଙ୍କୁ ପତି— ପଣେ ହେ ରମାପତି
କର୍ମକୁ ଯେବେ ଆଦରିବା
ହେ ମହାପ୍ରଭୁ !
ଲୀଳାମାନଙ୍କେ ଏ ସଂସାର । ଲୂତାସୂତା ପ୍ରାୟେ ସଂହାରେ
ଲୋକ କର୍ମକୁ ସହୁ ସତେ କି ମହାବାହୁ !
ଏମନ୍ତ ବଗୁର ମନର
ହେ ମହାପ୍ରଭୁ ! ।୨୮।

ବିଚାର କର ଗୁରୁ- ପୁଣି ଗମନପୂର୍ବୁ
ଇଚ୍ଛିତ ମାନବଙ୍କେ ଅଣିଲ
ବଂଶକର ଅମର- ବର କରଣ ହର
ବିନାଶି ବଧିକ ଜାଣିଲ
ହେ ମହାପ୍ରଭୁ !

---

୨୭ । ରସା—ପୃଥିବୀ; ୨୮ । ଲୂତାସୂତା—ବୁଢ଼ିଆଣୀ ଜାଲ
୨୯ । ବିଚାର କରୁ—ଅଶ୍ଚର୍ଯ୍ୟ ଜନକ ଭାବରେ;

ବିଷମ ସଙ୍କଟୁ ଉଦ୍ଧର । ବିଶ୍ୱ ସଂସାରୁ ଭବ ପାର
ବିଶେଷେ ବାଞ୍ଛାନିଧି ବାଞ୍ଛା କଳ୍ପ ପ୍ରସିଦ୍ଧି
ବୋଲି ବହୁତ ବାଞ୍ଛା ମୋର
ହେ ମହାପ୍ରଭୁ ! ।୨୯।

ଶେଷ ବିରଞ୍ଚି ଶିବ ସୁର ଆଦି ବାସବ
ଶୁକ ସନକ ସନାତନ
ସେବେ ଯେଉଁ ପଦ୍ମରେ କୋଟି ଅଂଶ ଲକ୍ଷରେ
ମୁଁ ଦାସପଣେ କି ଭାଜନ
ହେ ମହାପ୍ରଭୁ !
ସବୁ ଭରସା ଅଛୁ ଏଣୁ । ଶରଣ-ନିସ୍ତାରଣ ଯେଣୁ
ଶୁଣିଅଛୁ ଆତୁର କଥାଏ ଶତ୍ର କରୁ
ସୁମେରୁ ସମ କର ରେଣୁ
ହେ ମହାପ୍ରଭୁ ! ।୩୦।

ଶୁଣି ତୁମ୍ଭେ ଭରସା ବିଶ୍ରାମ ନାବ ଆଶା
ସେବକୁ ତୁମ୍ଭ ଶ୍ରୀଚରଣେ
ସୁଖ-ସାଗର ହୋଇ ଦୁଃଖ-ସାଗରେ ନେଇ
ମେଲି ଦେଉଛ ଅକାରଣେ
ହେ ମହାପ୍ରଭୁ !

୩୦ । ରସକର—ଆଶ୍ଚର୍ଯ୍ୟ ରୂପେ

ସେବନ୍ତି ତୁମ୍ଭ ପାଦ ଦୁଇ । ଶୋକସିନ୍ଧୁ ତରିବା ପାଇଁ
ଶିସ୍ଟବତ୍ସଳାଞ୍ଜନ କର ପ୍ରତିକାରଣ
କରୁଣା-କଟାକ୍ଷେ ଅନାଇଁ
ହେ ମହାପ୍ରଭୁ ! ।୩୧।

ସେବକ ହୋଇ କରି ପ୍ରଭୁକୋପକୁ ଡରି
ଭରସି ଯେବେ ନ କହିବ
ଶୁଣ ମହିମାମେରୁ ଏ ଦୁଃଖ-ଜଳଧିରୁ
କେମନ୍ତ ପ୍ରକାରେ ତରିବ
ହେ ମହାପ୍ରଭୁ !
ସର୍ବଜ୍ଞ ପୁରୁଷ ଗୋସାଇଁ । ସକଳ ଜୀବ ହୃଦେ ଥାଇ
ସେବକ ଦୁଃଖ ଜାଣି ଦୟା ନ କଲେ ପୁଣି
ଆଉ ଜାଣ ତ ଅଛି କେହି
ହେ ମହାପ୍ରଭୁ ! ।୩୨।

ହୃଦୟେ ଅଛି ମୋର ଏହୁ ଭବସାଗର
ତରିବି ତୁମ୍ଭ ମହିମାରୁ
ହେଉଅଛି ସଂଶୟେ ଯେଣୁ ମୋହ ବିଷୟେ
ଅକରୁଣା ମହିମାମେରୁ
ହେ ମହାପ୍ରଭୁ !
ହୋଇଲା କର୍ମ ମୋ ବଇରୀ । ହୃଦୟ ଦହଇ ମୋହରି
ହେତୁ କର୍ମର ତୁମ୍ଭେ ତେଣୁ କରି ମୁଁ ଦମ୍ଭେ
ଗୁହାରି କଲି ଦଇତାରି ହେ
ମହାପ୍ରଭୁ ।୩୩।

କ୍ଷମାସାଗର ବୋଲି ଶରଣ ମୁଁ ପଶିଲି
ଜଣାଇଲଇଁ ଶ୍ରୀପଦ୍ମରେ
କ୍ଷଣେହେଁ ମୋହ ମନ ନ ରହେ ତୁମ୍ଭ ଧ୍ୟାନ-
ଗୁଣଗାୟନମାନଙ୍କରେ
ହେ ମହାପ୍ରଭୁ !
କ୍ଷୋଭ ଯେବେ ମନେ ନୁହନ୍ତା । କ୍ଷଣେହେଁ ନାମ କେ ଛାଡ଼ନ୍ତା
କ୍ଷାର ଦୀନ ପାମର କୃଷ୍ଣ କପାଇଁ ସ୍ଥିର
ଭବସାଗରକୁ ତରନ୍ତା
ହେ ମହାପ୍ରଭୁ ! ।୩୪।



୩୪। କ୍ଷାର—ସ୍ଥିର

(ଅବତରଣ)

# ଶ୍ରୀ ଆର୍ତ୍ତଧ୍ୱଂସନ ଜଣାଣ

## ନିତ୍ୟାନନ୍ଦ ଦାସ

(ଅଷ୍ଟାଦଶ ଶତାବ୍ଦୀ)

[କୃଷ୍ଣ ଦାସଙ୍କ ଆର୍ତ୍ତତ୍ରାଣ ଚଉତିଶା ଜଣାଣ ପରି ନିତ୍ୟାନନ୍ଦ ଦାସଙ୍କର ଏହି ଆର୍ତ୍ତଧ୍ୱଂସନ ଜଣାଣ ଓଡ଼ିଶାର ଘରେ ଘରେ ପରିଚିତ । ଭକ୍ତମାନଙ୍କର ଏହା ଅମୂଲ୍ୟ କଣ୍ଠହାର । ନିତ୍ୟାନନ୍ଦ ଦାସ ଏହି ଭଜନଟି ଯୋଗୁଁ ଅବିସ୍ମରଣୀୟ । ]

### ପ୍ରଥମ ଛାନ୍ଦ

(ପୋଇ ରାଗ)

କୃପାସିନ୍ଧୁ ଦୀନବନ୍ଧୁ ଅଘ-ତମ-ଇନ୍ଦୁ
ଆହେ ଆତଙ୍କନାଶନ !
ହେ ନନ୍ଦନନ୍ଦନ ! ପାଦ କରି ଧ୍ୟାନ
କେବଣ ପତିତ ଜନ
ମହାପ୍ରଭୁ ହେ !
ଦୀନ ଅପରାଧୀ ଦୁଃଖ-ଜଳଧିରେ
ପଡ଼ି ବିଗୁଡ଼ଇ ମନ
ଦୁଃଖ-ସନ୍ତାପ- ଖେଦାଦିର ଛାମୁରେ
କରିବାକୁ ନିବେଦନ
ମହାପ୍ରଭୁ ହେ ! ।୦।

୦ । ଅଘତମଇନ୍ଦୁ—ପାପରୂପ ଅନ୍ଧକାରକୁ ଚନ୍ଦ୍ର

ନୀଳ-ନବଘନ-ସୁନ୍ଦର ବଦନ
ଶ୍ରୀମୁଖମାଧୁରୀ ଅତି ଶୋଭା
ଶିରେ ଶିଖିଚୂଳ ମାଳତୀ ବକୁଳେ
ଝଙ୍କାର ମଧୁପକୁଳ ପ୍ରଭା ।୧।
ଅଳକାବଳି କି ଅଳିଶିଶୁପନ୍ତି
ଶ୍ରୀମୁଖ ନବ ନଳିନ ଜାଣି
କପାଳେ ଚନ୍ଦନବିନ୍ଦୁ ଶୋଭିବନ
ଉଦେ ହୋଇଛୁ କି ନଶାମଣି ।୨।
ଭ୍ରୂଲତା ସୁନ୍ଦର କିଏ କାମ-କର-
କୋଦଣ୍ଡ ରଖିଛୁ ପ୍ରତେ ହୋଏ
ବିକଚ କମଳ ପ୍ରାୟେ ନୟନ ଡୋଳ
ଲହରୀ ଖେଳଇ କର୍ଣ୍ଣପାଏ ।୩।
ମନୋହର ନାସାପୁଟେ ସୁଘଟିତ
ବର୍ତ୍ତୁଳ-ଗଜ ମୁକୁତାବର
ବିମ୍ବଫଳ-ଜ୍ୟୋତି ଅଧର-ପଲ୍ଲବ
ମନ୍ଦହାସ ମୋହେ ତିନିପୁର ।୪।
ମକରକୁଣ୍ଡଳ କି ରବିମଣ୍ଡଳ
କର୍ଣ୍ଣେ ଝଟକନ୍ତି ତେଜ ଘେନି
ଭକତ-ଦୁଃଖ-ତମିର ନାଶିବାକୁ
ଉଦେ ହୋଇଛୁ କି ରବି ବେନି ।୫।

୧। ପ୍ରଭା—ଝଟ୍ ଝଟ୍ ୩। ବିକଚ—ପ୍ରସ୍ଫୁଟିତ

ଶୃଙ୍କ କଣ୍ଠେ ଶୋଭେ ମୁକୁତା-କନକ-
କଣ୍ଠି ମିଶାମିଶି ବନମାଳ
କଉସ୍ତୁଭ ମଣି ଗୁରୁ ତାର ଜାଣି
ଅନୁପମର ତରଙ୍ଗକୁଳ ।୬।

ମଉକରବରକରକୁ ନନ୍ଦଇ
ବୃଷାଳ ବଳୀନ ବାହୁ ବେନ
କଙ୍କଣ ବାହୁଟି ମୁଦ୍ରିକା ଅଙ୍ଗୁଷ୍ଠି
ଅଶେଷ ପ୍ରଭା ମୂରନ୍ଧ ଘେନ ।୭।

ହୃଦୟେ ବସ୍ତାର ଶ୍ରୀବତ୍ସପୟର
ଚର୍ଚ୍ଚିତ ଚନ୍ଦନ-ମୃଗମଦେ
କଟୀଟରେ କଙ୍କିଣୀଶ୍ରେଣୀ କଣି କଣି
ପୀତପଟ-ସୌଦାମିନୀ ଜଦେ ।୮।

ପୟରଯୁଗଳେ ନୂପୁର ମଞ୍ଜୁଳ
ରୁଣିତ ଶବଦେ ଧୁନି କରେ
ଅରୁଣ-ଚରଣ-ତଳ ବରାଜିତ
ଅଷ୍ଟାଦଶ ଚିହ୍ନ ଯହିଁ ଧରେ ।୯।

ଚତୁର୍ବର୍ଗ-ମଧୁ ଯହିଁରୁ କ୍ଷରିତ
ବାଞ୍ଛାକଳ୍ପତରୁ ବୋଲି ଯା'ରେ
ପତିତପଙ୍କ୍ତି ଦୁର୍ବୁଦ୍ଧି ଅପରାଧୀ
ନିତ୍ୟାନନ୍ଦ ବୋଲେ ରଖ ତାରେ ।୧୦।

---

୬। ଗୁରୁ ତାର—ବୃହତ୍ମୁକ୍ତା ଗ୍ରନ୍ଥ; ୭। ବୃଷାଳ—ହୃଷ୍ଟପୁଷ୍ଟ
୮। ବଳୀନ—ସୁଗଠିତ; ୧୦। ପତିତପଙ୍କ୍ତି—ପତିତ ବୋଲି ପ୍ରମାଣିତ।

## ଦ୍ୱିତୀୟ ଛାନ୍ଦ

ଆହେ ଗୋପୀନାଥ ଅନାଥର ନାଥ
ଆହେ ଆତଙ୍କନାଶନ
ଶରଣାଭିଷଣ ଆହେ ଦୀନଜନ-
ବନ୍ଧୁ କଷ୍ଟନିବାରଣ
ମହାପ୍ରଭୁ ହେ !

ଅରକ୍ଷରକ୍ଷକ ଆହେ ମହାବାହୁ
ଅପକ୍ଷପକ୍ଷ ଗୋସାଇଁ
ଅପ୍ରାଧଭଞ୍ଜନ ଆହେ ଅନ୍ତର୍ଯ୍ୟାମି !
ଜଗନ୍ନାଥ ଭବଗ୍ରାହ୍ମୀ
ମହାପ୍ରଭୁ ହେ !

ପୁତନା-ଶକଟା-ପ୍ରାଣହର ଆହେ
ଗୋପର ବିପଦହର ହରି
ତୃଣାବର୍ତ୍ତଉଡ଼ା ବାତ୍ସୁସ୍ୱକଚଡ଼ା
କେଶୀପିଣ୍ଡମନ୍ଥା ଦଇତ୍ୟାରି ।୧।

ବୃଷଭମର୍ଦ୍ଦନ ଆହେ ଜନାର୍ଦ୍ଦନ
ବାମ କରେ ଗିରିବରଟେକା
ଅଘାସୁରପୋଡ଼ା ଯାମଳାଉପୁଡ଼ା
ବେଣ ଫାଳ କଲ କରେ ବକା ।୨।

---

୦। ଅପକ୍ଷପକ୍ଷ—ସାହାପଠ ନ ଥିବା ଲୋକର ସାହା

ଦାବାନଳପିଆ ଗୋବତ୍ସାମ୍ବୁରୁହା
ଅହେ ଶଙ୍ଖଚୂଡ଼-ମଣିହର
କୁବଳୟ ମଲ୍ଲ ବିନାଶନ କଲ
ବାଦେ ହରାଇଲ ସୁନାଶୀର ।୩।

କାଳୀୟଗଞ୍ଜନ ଅହେ ତାଳବନ-
ଧେନୁକା ପରାଣହର ହରି !
ପ୍ରଲମ୍ବା ବିନାଶ ବନଅଗ୍ନି ଗ୍ରାସ
କରି ଗୋପକୁ ସଙ୍କଟୁ ତାରି ।୪।

ଅହେ କଂସ-ତମ-ହଂସ
ବିକଶିତ-ମୁନିଗଣ-ପଦ୍ମ-ବନ୍ଧୁ ନାଥ
ଅହେ କଉରବବଳହତକାରି !
ହୋଇଲ ସାରଥି ପାର୍ଥରଥ ।୫।

ଅହେ ଗଜଇନ୍ଦ୍ର କଷ୍ଟନିବାରଣ
ଚକ୍ରପ୍ରହରଣ ମହାବାହୁ
ଅହେ ଗର୍ଭ ଏଣେ ଦୁର୍ଗତିନାଶନ
ଦ୍ରୌପଦୀ-ବଦନ-ଚନ୍ଦ୍ର-ରାହୁ ।୬।

---

୫। କଂସତମହଂସ—କଂସ ରୂପ ଅନ୍ଧାରକୁ ସୂର୍ଯ୍ୟ ପରି, ବିକଶିତ ମୁନିଗଣ ପଦ୍ମବନ୍ଧୁ—ମୁନିଗଣ ରୂପ ପଦ୍ମକୁ ଫୁଟାଇବା ପାଇଁ ସୂର୍ଯ୍ୟ; ୬। ଗର୍ଭ ଏଣ—ଗର୍ଭବତୀ ହରିଣୀ

ଅହେ ପ୍ରହ୍ଲାଦ-ବିଷମ-ପ୍ରମାଦ
ବିପଦ-କାନ୍ତାର-କଣ୍ଠୀରବ
ଅହେ ଅଧ୍ରୁବ ଧ୍ରୁବଙ୍କୁ ଧ୍ରୁବପଦ-
ଦାନୀ ଅଟ ତୁମ୍ଭେ ବାସୁଦେବ ।୭।

ଅହେ ସୁଗ୍ରୀବର କ୍ଳେଶତରୁବର
ପ୍ରବଳ ମରୁତ ଚକ୍ରଧର !
ଅହେ ବିଭୀଷଣ-ଶରଣରକ୍ଷଣ
ରାବଣ ଦୂଷଣ ନାଶକର ।୮।

ଅହେ ଅଜାମିଳ-କଳୁଷ-କମଳ-
ବନ-ଶିଶିର କରୁଣାକର
ସୁଦାମା-ଦାରିଦ୍ର୍ୟ-କଷ୍ଟମାନହର
ତୃଷିତ-ଚାତକ-ଜଳଧର ।୯।

ଅହେ ଭକତଅ ପକ୍ଷିକ୍‌ବାରଣ
ଶୋଣିତସିନ୍ଧୁବପଦୁଁ ତାର
କହେ ନିତ୍ୟାନନ୍ଦ ଅହେ ଆନନ୍ଦ
ଶୁଣିମା ଜଣାଣ ବାରେ ହରି ।୧୦।

---

୭। କଣ୍ଠୀରବ—ସିଂହ ୮। ମରୁତ—ପବନ

## ତୃତୀୟ ଛାନ୍ଦ

ତୁମ୍ଭ ପରି ପ୍ରଭୁ ଥାଉଁ ଥାଉଁ ମୁଁ ଯେ
ବୁଡ଼ିଲି ବିପଦ-ଜଳେ
ଏତେବେଳେ ପ୍ରଭୁ ଡାକ ନ ଶୁଣୁଛ
ଯେତେ ଡାକିଲେ ବିକଳେ
ମହାପ୍ରଭୁ ହେ ! ।୧।

ଜଳମୀନ ଯେମନ୍ତେ ମିହିରତେଜରେ
ତେମନ୍ତ ହେଲାଣି ଦଶା
ଏଥିରେ କିଞ୍ଚିତେ କରୁଣା ନୋହୁଛ
ମୁଁ ଯେ କରିଛି ଭରସା
ମହାପ୍ରଭୁ ହେ ! ।୨।

ବିପଦଧାଡ଼ି ଯେତେ ମାଡ଼ି ପଡ଼ୁଛି
କେତେତେଁ କହିବ ମନେ ହେଜି
ସିଂହ ମୃଗ-ଆଗେ ପରିଯେ ଡରଙ୍ଗେ
ଧଇର୍ଯ୍ୟ ବାନ୍ଧ ଯାଉଛି ଭାଙ୍ଗି ।୧।

ଯେତେରୂପେ ଦଣ୍ଡ ଦୁଃଖ ଦେଉଅଛି
କହିବାକୁ ମୋତେ ଆସୁନାହିଁ
ଯେତେ ଥିଲା ଆଶ ଅହେ ପୀତବାସ
ଏବେ ତୁମ୍ଭ ନିରାଶକୁ ଗୃହିଁ ।୨।

---

୧। ବିପଦଧାଡ଼ି—ବିପଦସମୂହ, ସିଂହ ମୃଗଆଗେ – ମୃଗ ସିଂହର ମୁହାଁମୁହିଁ ହେଲାପରି

ପ୍ରଭୁ ହୋଇ କୃପା ନ କରୁଛ କପାଁ
ଦୀନ ପତିତ ଜନଙ୍କଠାରେ
ଅଛନ୍ତି ନିସ୍ତାରପଣ କରିବାରେ
ଭାସିଗଲି ଶୋକ-ନଦୀ-ଧାରେ ।୩।

ଥାଉଁ ପ୍ରଭୁପଣ କରୁଣାକୃପଣ
ହେବାରୁ ମତି କି ନ ଆସଇ
ବୁଡ଼ୁଥିଲେ ଭେଲା ତହିଁ କଲେ ହେଲା
ଦାରୁଣପଣ କି ଏ ନୁହଇ ।୪।

କରୁଣା-ନାବିକ-ନାବ ଥାଉଁ କୂଳେ
ଖେଦ-ଜଳଧିରେ ଗଲି ବୁଡ଼ି
ତରଳ ତରଙ୍ଗ ଭଉଁରି ପ୍ରଖର
ଏମନ୍ତ ନଦୀରେ ଦେଲେ ଛାଡ଼ି ।୫।

ମୁଁ ଯେ ମଲେ ମଲି ଭାସିଗଲେ ଗଲି
ତୁମ୍ଭଙ୍କୁ ସିନା ଏ ଅସୁନ୍ଦର
ତୁମ୍ଭ ନାମ ଧରି ହେବା ଏତେ ସରି
ଜଗତେ କହିବା ବୋଲିବେ ନର ।୬।

ମୋରେ ଏ ଦୁର୍ଗତି ଯେତେ ନ ବାଧଇ
ତୁମ୍ଭ ନିନ୍ଦା-ଲାଜେ ମରୁଅଛି
ପୂର୍ବର କରୁଣା ଏବେ ଦେଖି ଊଣା
ନିଶିଦିବା ମନେ ଗୁଣୁଅଛି ।୭।

ନାନାରୂପେ ଶାସ୍ତି ଦେଇ ଦୁଃଖହର୍ତ୍ତ୍ରୀ
ଦନ୍ତରେ ଗୁନ୍ଥିବା ମନ କଲ୍ଲ
ବିପତ୍ତି-କରି-ନାଶନ ତୁମ୍ଭ ବାନା
କପାଇଁ ମାଳାଦ୍ ସିଂହ ହେଲ୍ଲ ।୮।

ଧରିତ୍ରୀ-କମଳ-ବନକୁ ମୋହର
ଧ୍ୱଂସି ପକାଉଛି ପ୍ରବଳରେ
ରଖ ରଖ ପ୍ରଭୁ ପ୍ରମତ୍ତକେଶରୀ !
ବୋଲି ଜଣାଉଛି ବିକଳରେ ।୯।

କେବେହେଁ କରୁଣା ନଦୀ ନ ବହିଲା
ବଢ଼ିଲା ସଙ୍କଟ ଗିରିବର
କହେ ନିତ୍ୟାନନ୍ଦ କର୍ମହୀନ ମନ୍ଦ
ସଦସ୍ୟୁ-କୁଳଗଣେ ନାଶ କର ।୧୦।

## ଚତୁର୍ଥ ଛାନ୍ଦ

ପତିତ ଜନକୁ ଉଦ୍ଧାରିବା ପାଇଁ
ଉଡ଼ାଉ ଅଛ ପତାକା
ବାହୁ ଟେକି ତୁମ୍ଭେ ବସି ଗୃହୁଁ ଗୃହୁଁ
ବିପତ୍ତି କରୁଛନ୍ତି ଡକା
ମହାପ୍ରଭୁ ହେ ! ।୧।

---

୮ । ଦନ୍ତରେ ଗୁନ୍ଥିବା—ଦାନ୍ତରେ ଫୋଡ଼ିବା;
୧୦ । ସଦସ୍ୟୁକୁଳଗଣେ--ଦସ୍ୟୁରୂପ ବକ୍ତ୍ରରେ
୦। ଡକା—ଆକ୍ରମଣ, ମାରଣାପଣ

ନାଶ ଗଲେ ତୁମ୍ଭେ ପରେ କି କରିବ
କରୁଣା-ଭଣ୍ଡାର ଫେଇ
ଦୁଃଖୀ ଗଲେ ନାଶ ଅର୍ଜ୍ଜିବ କି ଯଶ
ପଛେ ଚତୁର୍ବର୍ଗ ଦେଇ
ମହାପ୍ରଭୁ ହେ ! ।୨।

ଘୋର ନବଘନ ଥାଉଁ ଯେବେ ଦୀନ
ଚାତକ ଜୀବନ ହରାଇବ
ସମୁଦ୍ରେ ବରଷି ଘୋର ଜଳରାଶି
ଚାତକବନ୍ଧୁ କି ବୋଲାଇବ ।୧।
ମାଲତୀ-ବକୁଳ-ବିକଚ-କମଳ-
ବନ ଥିବ ଅଳି ମିଳେ ମରି
ପୂର୍ଣ୍ଣସୁଧାକର ଅନାଇଁ ଚକୋର-
ମାଳିକା ଯେବେ ମରିବେ ଝୁରି ।୨।
କଳ୍ପଲତା ତଳେ ଥାଇ ଯେ ମୁଁ ପରେ
ନିରାଶ ହୋଇବା କେଡ଼େ ଲାଜ
ରତ୍ନାକର ହୋଇ ରତ୍ନରଙ୍କ ଯହିଁ
ଏ କଥା କେମନ୍ତେ ଦେବରାଜ ।୩।
ଥାଉଁ ଗଙ୍ଗାକୂଳେ ପରାଣ ବିକଳେ
ତୃଷାରେ ଯେବେ ହରିବ ପ୍ରାଣ
ଦିନମଣି ଥିବ ଅନ୍ଧାର ହୋଇବ
ଏ କଥା ପ୍ରଭୁ ! ମନକୁ ଆଣ ।୪।

୪। ଦିନମଣି—ସୂର୍ଯ୍ୟ

ସାମନ୍ତ ଯେ ଚତୁର୍ବର୍ଗଅଧିକାରୀ
ଲକ୍ଷ୍ମୀ ପରିଗ୍ରହୀ ଥିବେ ହୋଇ
ଏମନ୍ତ ସାମନ୍ତେ ଅଣା କରି ଭୃତ୍ୟ
ଭିକ୍ଷା ମାଗୁଥିବ ଦୁଃଖ ପାଇ ।୫।

ଏଥୁ ଅଧିକ କି ଅଛି ଲୋକହସା
ଆଉ କି ରହିଲା ପ୍ରଭୁ-ଆଣି
ଝମକାଇ ସିଂହ ପ୍ରାୟ ଝମକିବା
ବିଅର୍ଥ ଧରିବା ଚକ ପାଣି ।୬।

ଦୀନବନ୍ଧୁ ବୋଲି ନାମ ଯେ ବହିଛ
ଏହା ନ ଚେତ କି ଭବଗ୍ରାହୀ !
ଏ ନାମ ଏବେ ଏଣିକି ନ ବହିବ
ଚକ୍ରରୁ ନେତ ଟୁଅ ନେଇ ।୭।

ତେବେ ତୁମ୍ଭକୁ କେ କାହିଁକି କହିବ
କର୍ମ ଆଦରି ସହିବ ଦୁଃଖ
କରୁଣ ଜଳଧି ତୁମ୍ଭ ନାମ ସିଛି
ଜଗତରେ ବାଜିଯିବ ଡାକ ।୮।

ଆଉ ଭୁବନରେ ଠାକୁର ଖୋଜିବା
ତୁମ୍ଭ ପରି କେହି ଥିଲେ ଜଣେ
ଦୁଃଖୀ ଲୋକଙ୍କର ଦୁଃଖ ହରୁଥିବେ
କୃପା-ବିଲୋକନ-ନେତ୍ର-କୋଣେ ।୯।

---

୬। ଆଣି—ଗୌରବ; ଝମକିବା—ଝାମ୍ପମାରିବା; ୭। ନେତ—ପତାକା

ସୁଦର୍ଶନ ନାମେ ଚକ୍ର ବହୁଥିବେ
ଏକ ବାହୁରେ ଦକ୍ଷିଣ କରେ
କହେ ନିତ୍ୟାନନ୍ଦ ଅପରାଧୀ ମନ୍ଦ
ମୋହର ଶରଣ ତାଙ୍କଠାରେ ।୧୦।

## ପଞ୍ଚମ ଛାନ୍ଦ

କଳୁଷୀ ଲୋକଙ୍କୁ ଦୁଃଖ-ଶୋକ-ପଙ୍କୁ
ଧୂତେ ଜନ୍ମିଛ କେତେ
ଅତଙ୍ଗୀ-ମନ- ବାଞ୍ଛିତ ଧନ ହୋଇ
ବରଷିଛ କେତେ କେତେ
ମହାପ୍ରଭୁ ହେ ! ।୦।

ତାହା ଜାଣି ମୁଁ ଯେ ମନ ଦମ୍ଭ କରି
ନ ଡରଇ ବିପତ୍ତିକି
ବୋଲଇ କେତେ ବିପତ୍ତି ହରିଛନ୍ତି
ଏ ଅବା କେତେ ମାତ୍ର କି
ମହାପ୍ରଭୁ ହେ ! ।୦।

ଅତଙ୍ଗେ ତରଙ୍ଗୀ ହୋଇଣ କୁରଙ୍ଗୀ
ଭୟେ ଡାକ ଦେଲା ଯେତେବେଳେ
କାହିଁ ଥାଇ ପ୍ରଭୁ ତାହା ଶୁଣୁଥିଲ
ପ୍ରକଟ ହୋଇଲ ତେତେବେଳେ ।୧।

---

୦। କଳୁଷୀ—ପାତକୀ; ଅତଙ୍ଗୀ—କଷ୍ଟୀ

କାହିଁ ଥିଲା ଘନ ପ୍ରବଳ ପବନ
ବଜ୍ର ସର୍ପ କାହିଁ ଥିଲ ରଖି
ଏକାବେଳକେ ସଙ୍କଟ କାଟିଦେଲ
ନବଘନେ କି ଭେଟିଲା ଶିଖୀ ।୨।

ଦେଖି ହରିଣୀ ହରଷ ବିକଶିଲା
ନାଟ କଲା ବେନ ଶିଶୁ ଘେନି
କୃପା କଲେ ଏଡ଼େ କୃପାହିଁ କରଛ
କରୁଣାସାଗର କୃପାଦାନୀ ।୩।

ଗଜରାଜ ଜଳେ କୁମ୍ଭୀର କବଳେ
ଆତଙ୍କେ ଡାକିଲା ଆଦିମୂଳ
କେତେ ଦୂରେ ଥାଇ କେମନ୍ତେ ଜାଣିଲ
ଚକ୍ରେ ଛେଦିଲ କୁମ୍ଭୀରଶିର ।୪।

ଅହେ ପୀତାମ୍ବର ସଞ୍ଚିତ ଅମ୍ବର-
ରାଶି ଜଗି ରଖିଥିଲ କାହିଁ
ଚନ୍ଦ୍ରବା ମାନକେ ଲଜ୍ଜା-ସିନ୍ଧୁ ହର
ଦ୍ରୌପଦୀଙ୍କି ତାହା ଦେଲ ନେଇ ।୫।

ପଞ୍ଚ ପଣ୍ଡୁସୁତ ଅନଳରେ ହତ
କେମନ୍ତେ ଥାଇ ପାରିଲ ଜାଣି
କାହିଁ ହରି ନେଲ କାହିଁରେ ରଖିଲ
ଜଗିଥିଲେ କଉରବଶ୍ରେଣୀ ।୬।

---

୨। ଶିଖୀ—ମୟୂର; ୫। ଅମ୍ବରରାଶି—ବସ୍ତ୍ରସମୂହ

ଜରାସନ୍ଧ-କାରାବନ୍ଦୀ ରାଜକୁଳ-
କମଳ-ବନର ହେଲ ବନ୍ଧୁ
ନାରକା-ଭୁବନ-ଭୂପତି-କୁମାରୀ-
କୁମୁଦ-ପନ୍ତି ହରଷ-ଇନ୍ଦୁ । ୭।

ଚଲେ ଯାଶ ଧନ ଅନ୍ଧକୁ ଲୋଚନ
ତୁମ୍ଭେ ଗୋପଦାଣ୍ଡେ ଦେଲ ପରା
ତାକ ଅସୁନ୍ଦର କୁବ୍ଜାକ ସୁନ୍ଦର
ତୁମ୍ଭେ କି ନ କଲ ଅପସରା ।୮।

ଗଉତମନାରୀ ଅଛ ପର ତାର
ଗୁରୁ-ପାଦପଦ୍ମ-ଧରଣରେ
ପ୍ରହ୍ଲାଦ ଘୋର ବପତ୍ତ ନାଶିଲ
ଦେବରାଜ କଲ ଦେବପୁରେ ।୯।

ସୁଦାମା ଦାରିଦ୍ର୍ୟ କଷ୍ଟକୁ ହରିଲ
କଲ କୁବେର-ମୁକୁଟ-ମଣି
କହେ ନିତ୍ୟାନନ୍ଦ ଏବେ ଏତେ ଛନ୍ଦ
କାହିଁକି କରୁଛ କମ୍ବୁପାଣି ! ।୧୦।

---

୭ । ନାରକା-ଭୁବନ-ଭୂପତି-କୁମାରୀ—ନାରକାସୁର ଯେଉଁ ଯୁବତୀମାନଙ୍କୁ ବନ୍ଦୀ କରି ରଖିଥିଲା, ସେମାନଙ୍କୁ ଉଦ୍ଧାର କରି ବାହା ହେଲେ

## ଷଷ୍ଠ ଛାନ୍ଦ

ତୁମ୍ଭ ଶୁଣିବାକୁ     ମୋହ କରିବାକୁ
ସମୟ ନାହିଁ ମୁରାରି !
ତୁମ୍ଭ କୃପା ହେଉ     ହେଉ କହୁ କହୁ
ବପୁ ଦେଉଛୁ ସାରି
ମହାପ୍ରଭୁ ହେ ! ।୦।

ଦୁଃଖ-ତଟିନୀ-ତଟ-     ତରୁ ହୋଇ ମୋ
ପିଣ୍ଡେ ବଳ ନାହିଁ ମୂଳେ
ତୁମ୍ଭ ନିଦାଘ-     ପ୍ରବଳ-ପବନରେ
ଉପୁଡୁଛୁ ମୁଁ ସମୂଳେ
ମହାପ୍ରଭୁ ହେ ! ।୦।

ମୁହିଁ ଗଲେ ନାଶ ତୁମ୍ଭେ କେଉଁ ଯଶ
ଲଭିବ ଅହେ କରୁଣାନିଧି !
ମଲ୍ଲଠାରେ ଜଳ ଅଧିକରେ ଜାଳି
ଫସାରେ କେତେ ରଖିବ ସିଦ୍ଧି ।୧।

ଦୁଷ୍ଟ ମତ୍ତ ନାଗ ରହିଥିଲେ ଅଗ
କେହି ତା ପୁଚ୍ଛ ଦଅଇ ଚିପି ?
ଧର୍ମ ନକ ଗୃଳ ଦେବା ବନମାଳି !
ଯେଉଁଠାରେ ସିଂହ ଥାଏ ସ୍ୱାମି ? ।୨।

---

୦ । ଦୁଃଖ-ତଟିନୀ-ତଟ-ତରୁ—ମୋ ପିଣ୍ଡ ଦୁଃଖରୂପ ନଦୀର କୂଳରେ ଟଳମଳ ହେଉଥିବା ଗଛ ପରି; ୨ । ମତ୍ତନାଗ—ପାଗଳା ହାତୀ; ପୁଚ୍ଛ---ଲାଙ୍ଗୁଡ଼; ଗୃଳଦେବା—ପେଲଦେବା

ପ୍ରବଳ ପବନଘାତେ ରମ୍ଭାବନ
ହୋଇଲା ପ୍ରାୟେ ମରୁଛନ୍ତି ଝାଳି
କାଳକୁ ଗୁହାରି ଯେହ୍ନେ ନିତ୍ୟ କରି
ଦୁଃଖୀ ମରୁଥାଇ ଝୁରି ଝୁରି ।୩।

ଏ ଡକା ପାରଇ ତାକୁ ନ ଶୁଭଇ
ସେ କେହ୍ନେ ହରିବ କଷ୍ଟ ତାର
ତେମନ୍ତ ତାର ଯେମନ୍ତ ଗତି ହୋଇ
ବେଳୁ ବେଳ ଏ ମୋ ଦୁଃଖଭାର ।୪।

କୃପଣକୁ ଲୋଭୀ ଥାଇ ଯେହ୍ନେ ସେବି
ଧରି ନ ଛାଡ଼ଇ ଲୋଭବଳେ
ଏ ତ ନ ଦିଅଇ ସେ ତ ନ ଛାଡ଼ଇ
ଲୋଭୀ ନାଶ-ଫଳ ପାଇ କାଳେ ।୫।

ପ୍ରଭୁଙ୍କୁ କୃପଣ ଭରେ ନ ବୋଲଇ
ଦୁଃଖ ଲୋଭପଣ ହୁଏ ସିଦ୍ଧି
ପ୍ରଭୁପଣ ଥିଲେ ସବୁହିଁ ସୁନ୍ଦର
ଅସୁନ୍ଦର କଥା କାଲେ ବଧି ।୬।

ହୋଇ କୃପାସିନ୍ଧୁ କହିବାକୁ ବନ୍ଧୁ
ଘଟିବ ବୋଲି ଡରିବାଟାରେ
ତେବେହେଁ ବୋଲନ୍ତି କରୁଣା-ସମୁଦ୍ର
ବିବେକ ମହତ ସନ୍ତ ନରେ ।୭।

୩। ରମ୍ଭାବନ---କଦଳୀବନ; ୬। ବଧି---ଲଗାତ

ଦୁଃଖ-ଅନ୍ଧକାରେ ନାମ ସୁଧାକର
ହୋଇ ତ କାରଣ ନ ଘୁଡ଼ିଲ
ଏମନ୍ତ ନିଷ୍ଠୁର ହୃଦୟ କଠୋର
ନିର୍ଗୁଣ-ଘନରେ ଉହ୍ଲାଡ଼ିଲ ।୮।

ସୁଖ-ସିନ୍ଧୁ ବୋଲି ଶରଣ ମୁଁ ଗଲି
ବେଳୁଁ ବେଳ କରୁଡ଼ିଲ କୂଳେ
ପତିତପାବନ ଅପ୍ରାଧଭଞ୍ଜନ
ସତ୍ୟକୁ କିଏ ଘୁଡ଼ିବ ତାଳେ ।୯।

ତୁମ୍ଭେ ସତ୍ୟବାଦପଣକୁ ଅସିଦ୍ଧି
କଲେ କେହ୍ମୁ ମର୍ତ୍ତ୍ୟେ ରହିବ କି
କହେ ନିତ୍ୟାନନ୍ଦ ମୂଢ଼ ହୀନ ମନ୍ଦ
ଷିତର ସାମନ୍ତ ନୋହିବ କି ।୧୦।

## ସପ୍ତମ ଛାନ୍ଦ

ଅପରାଧ ଅବା କଲି ମହାପ୍ରଭୁ
କରୁଅଛ ଏତେ ସହି
କ୍ଷମାଶୀଳପଣେ ତୁମ୍ଭଙ୍କୁ କେ ସରି
ଅଛି ନଲାଦ୍ରିକେଶରି !
ମହାପ୍ରଭୁ ହେ ! ।୧।

---

୮। ଉହ୍ଲାଡ଼ିଲ--- ତାଙ୍କିଦେଲ; ୧୦। ସାମନ୍ତ---ପ୍ରଭୁ

ପ୍ରବଳ ପବନଘାତେ ରମ୍ଭାବନ
ହୋଇଲ୍ପ ପ୍ରାୟେ ମରୁଛ୍ଛ ସ୍ଥଳ
କାଳକୁ ଗୁହାରି ଯେତେହେଁ ନିତ୍ୟ କର
ଦୁଃଖୀ ମରୁଥାଇ ଝୁରି ଝୁରି ।୩।

ଏ ଡାକ ପାରଇ ତାକୁ ନ ଶୁଭଇ
ସେ କେତେହେଁ ହରିବ କଷ୍ଟ ତାର
ତେମନ୍ତ ତାର ଯେମନ୍ତ ଗତି ହୋଇ
ବେଳୁ ବେଳ ଏ ମୋ ଦୁଃଖଭାର ।୪।

କୃପଣକୁ ଲୋଭୀ ଥାଇ ଯେତେହେଁ ସେବ
ଧରି ନ ଛାଡ଼ଇ ଲୋଭବଳେ
ଏ ତ ନ ଦଅଇ ସେ ତ ନ ଛାଡ଼ଇ
ଲୋଭୀ ନାଶ-ଫଳ ପାଇ କାଳେ ।୫।

ପ୍ରଭୁକୁ କୃପଣ ଭଳେ ନ ବୋଲଇ
ଦୁଃଖ ଲୋଭପଣ ହୁଏ ସିଦ୍ଧି
ପ୍ରଭୁପଣ ଥିଲେ ସବୁହିଁ ସୁନ୍ଦର
ଅସୁନ୍ଦର କଥା କାଳେ ବଧି ।୬।

ହୋଇ କୃପାସିନ୍ଧୁ କହିବାକୁ ବନ୍ଧୁ
ଘଟିବ ବୋଲି ଉଚିତାପାଟରେ
ତେବେହେଁ ବୋଲନ୍ତି କରୁଣା-ସମୁଦ୍ର
ବିବେକ ମହତ ସନ୍ତୁ ନରେ ।୭।

---

୩ । ରମ୍ଭାବନ---କଦଳୀବନ; ୬ । ବଧି---ଉଚିତ

ଦୁଃଖ-ଅନ୍ଧକାରେ ନାମ ସୁଧାକର
ହୋଇ ତ କରଣ ନ ଘୁଞ୍ଚିଲ
ଏମନ୍ତ ନିଷ୍ଠୁର ହୃଦୟ କଠୋର
ନିର୍ଗୁଣ-ଧନରେ ଉହ୍ଲାଡ଼ିଲ ।୮।

ସୁଖ-ସିନ୍ଧୁ ବୋଲି ଶରଣ ମୁଁ ଗଲି
ବେଳୁଁ ବେଳ କଣ୍ଟୁଡ଼ିଲ କୂଳେ
ପତିତପାବନ ଅପ୍ରାଧଭଞ୍ଜନ
ସତ୍ୟକୁ କିଏ ଘୁଡ଼ିବ ତାଳେ ।୯।

ତୁମ୍ଭେ ସତ୍ୟବାଦପଣକୁ ଅସିଛି
କଲେ କେଉଁଠୁ ମର୍ତ୍ତ୍ୟ ରହିବ କି
କହେ ନିତ୍ୟାନନ୍ଦ ମୂଢ଼ ହୀନ ମନ୍ଦ
ସିଦ୍ଧର ସାମନ୍ତ ନୋହିବ କି ।୧୦।

## ସପ୍ତମ ଛାନ୍ଦ

ଅପରାଧ ଅବା କଲି ମହାପ୍ରଭୁ
କରୁଅଛ ଏତେ ସରି
କ୍ଷମାଶୀଳପଣେ ତୁମ୍ଭଙ୍କୁ କେ ସରି
ଅଛି ନୀଳାଦ୍ରିକେଶରି !
ମହାପ୍ରଭୁ ହେ ! ।୧।

---

୮ । ଉହ୍ଲାଡ଼ିଲ--- ତାଙ୍କିଦେଲ; ୧୦ । ସାମନ୍ତ---ପ୍ରଭୁ

ପୂର୍ବେ ଶ୍ରୀବତ୍ସ ବ୍ରାହ୍ମଣ ବକ୍ଷସ୍ଥଳେ
ପଦଘାତ କଲା ନେଇ
କୃପା କଲ ଯେତେ ଶୁଣି ଏତେବେଳେ
ତନୁ ମୋର ପୁଲକଇ
ମହାପ୍ରଭୁ ହେ ! ।୦।

କାଳନ୍ଦୀ ଜଳରେ ପଦ-କମଳରେ
ବିଷ-ଅଗ୍ନି ଜାଳିଦେଲା କାଳୀ
କୋପ କରି ଯାହା କୃପା କଲ ତାହା
ଶେଷ ଶିବ ନ ପାଇଲେ ଭାଳି ।୧।
ଅଧିକ ମୁକୁଟେ ବାନ୍ଧିଲ ପ୍ରକଟେ
କୁଙ୍କୁଟ ପ୍ରାୟେ ରଥାଙ୍ଗ ଚିହ୍ନ
ଏବେ କ୍ଷମା-ଦୟା-ନିଧି କି ଶୁଖିଲା
ମୋହ କର୍ମ ନ କି ହେଲା ହୀନ ।୨।
ମୁଁ ଯେ ଅପରାଧ-ବୃକ୍ଷେ ଅରୋହିଛି
ତଳେ ଦୁଃଖ-ଜଳ ଅଛି ଘୋଟି
ଏଡ଼େ ଅପଦରେ ନିର୍ଘଣ କୁଠାରେ
ତୁମ୍ଭେ ତ ମୂଳ ଦେଉଛ କାଟି ।୩।
ତେଡ଼େ କ୍ଷମାଶୀଳ ହୃଦ ହେଲା ଶିଳ
କେମନ୍ତେ ଦମ୍ଭ ରଖିବି ଆଜ
ନ ଜାଣି ଅପ୍ରାଧ ପ୍ରଭୁ କଲେ କ୍ରୋଧ
ମୁଁ ଯେ କାହାକୁ କହିବି ଆଜ ।୪।

୪ । ଶିଳ---ପଥର

ଭୃତ୍ୟ ନ ଜାଣଇ ଅପ୍ରାଧ କରଇ
ପ୍ରଭୁ-କୋପ ଦୁଇ କଥା ସରି
ଏ ତ ନ ଜାଣିଲି ସେ କୋପେ ମାଇଲି
ମହତପଣ କି ହେଲି ହରି ।୫।

ତୁମ୍ଭେ ଜଗନ୍ନାଥ ମୁହିଁ ଯେ ଅନାଥ
ହୋଇ ଜଗତଭିତରେ ଜଣେ
ଏହି ନାମରେ ଯେ ଭରସା କରନ୍ତି
ପୁଣି ଅଭରସା ହୋଏ ମନେ ।୬।

ଯେଣୁ ଜଗବନ୍ଧୁ ଥାଉଁ ମୁଁ ଅବନ୍ଧୁ
ହୋଇ ନ ଶୁଣୁଛ ଏଣୁ କରି
ତୁମ୍ଭ ସେହି ନାମ ପତିତପାବନ
କେତେ ଲାଜ ନ ନିବାରେ ହରି ।୭।

ତୁମ୍ଭ କରେ ଯାହା ଧରିଅଛ ତାହା
ପୂର୍ବ ତେଜ ନାଶ ହେଲି କି କି
ଦୂରେ ଜଣାଇଲେ ନିକଟେ ଶୁଭିବ
ଏ ଭାବ ଅନ୍ତର ହେଲି କି କି ।୮।

ଗତ ଅନୁକମ୍ପା ସ୍ମରିଲ କି ଶମ୍ପା
ନ ଥିଲି ଶରଦ ଘନ ସରି
ପୂର୍ବ ଦୁଃଖ ନାଶ ଶୁଣୁଅଛି ଘୋଷ
ମୋ ମନଗୃହକୁ ଆଶା ଧରି ।୯।

୯ । ଶମ୍ପା—ବିଜୁଳି; ଘୋଷ—ଶବ୍ଦ

ସେ ନ ବରଷିଲା ଏ ପ୍ରାଣେ ନାଶିଲା
କାଲବଳେ ଆଶା ମଜାଇଲା
ନିତ୍ୟାନନ୍ଦ ବୋଲେ କଷ୍ଟ-ଦାବାନଳେ
ଧଇର୍ଯ୍ୟ-ପତଙ୍ଗ ଦହାଇଲା ।୧୦।

## ଅଷ୍ଟମ ଛାନ୍ଦ

ଆଜ୍ଞା ଦେବ ଅବା ବିଧାତା-ଲେଖିବା
କପାଳକଥା ପ୍ରସିଦ୍ଧି
କରମକରତା କଇବଲ୍ୟଦାତା
ତୁମ୍ଭେ ଯେ ବିଧାତା-ବିଧି
ମହାପ୍ରଭୁ ହେ !
ତୁମ୍ଭର ଶରଣ ହୋଇ ଅକାରଣ
କର୍ମ ଯେବେ ଆଦରିଲି
ତୁମ୍ଭ ଭକତ ହୋଇ କର୍ମଦଣ୍ଡ ସହି
ତେବେ ତ କଷ୍ଟ ନୋହିଲି
ମହାପ୍ରଭୁ ହେ !
ଶୁଣିଥାଇଁ ହରି ! ବାଳକ ବାଛୁରି
ଯେଉଁକାଳେ ଧାତା ନେଲା ହରି
ଅଙ୍ଗୁଁ ଜଳ ଜାତ ଧାତା-ଗର୍ବ ହତ
ତୁମ୍ଭେ ପରା ଅଛ ଏହା କରି ।୧।

୧୦ । ନାଶିଲା—ନାଶ ଗଲା; ପତଙ୍ଗ—ପକ୍ଷୀ
୦ । ବିଧାତା ବିଧି—ବ୍ରହ୍ମାଙ୍କ ବ୍ରହ୍ମା ଅର୍ଥାତ ନିୟାମକ

ଅଜ୍ଞାଦେଲେ ଗୁରୁ ଶମନପୁରରୁ
ମନ୍ତ୍ର ପୁତ୍ର କେତ୍ରୁ ଦେଲ ଆଣି
ବରୁଣ ହରିଲ ଗତ ପ୍ରାଣ ହେଲ
ନନ୍ଦ କେ ଅଣିଲ ଚକ୍ରପାଣି ।୨।

କାଳ ହରିଥିଲ ସଇନ ଜୀଇଲ
କାହାର ଅଜ୍ଞାରେ ଲଙ୍କାପୁରର
ଅସୁର ବଚନ ଶୁଣିଲ୍ ବିଧାତ
ଜାତ କଲ୍ ନାଭି-କମଳରେ ।୩।

ଏମନ୍ତ ପ୍ରଭୁର ଧରି ମୁଁ ପଯୁର
ସର୍ବ ଆଶା ଥୋଇ ଦୂର କରି
ବିଶ୍ବରଇ ଶରେ କର୍ମ ହୋଇ କେତେ
ତେବେ ତା ହସ୍ତୁଁ ନୋହିଲି ପାରି ।୪।

କଥାଏ ଅସୁର ଧୂଳିସମ କରି
ପାରି ହୋଇଥାନ୍ତି ଗିରି ମେରୁ
ତୁମ୍ଭ ପରି ନାଥ ମୋ ପରି ଅନାଥ
କ୍ଷିତିରେ ଅଛୁ କେ କୃପାମେରୁ ।୫।

ଅନ୍ତର୍ଯ୍ୟାମୀ ନାଥ ଏହା ସେ ଜାଣିବେ
ମୋ ମନେ ପ୍ରତେ ତ ହେଉନାହିଁ
ମୋ କଥା ଗୋଚର ହେଲେ ଚକ୍ରଧର !
ଏ ଦଶା ଆଉ ଥାଆନ୍ତା କାହିଁ ।୬।

କଣ୍ଠାଗତ ପ୍ରାଣ ହେଲାଠାରେ ଟାଣ
ପ୍ରଭୁପଣ ଟେକ ନ ରଖିଲ
ଦୋଷ କଲ୍ କେତେ ତାହା ଘେନ ଶଠେ
ବପଦ-କାଣ୍ଡକୁ ସଲଖିଲ ।୭।

ପ୍ରଭୁପଣ-ଯଶ କରନ୍ତି ଯେ ଦୋଷ
ଦଣ୍ଡ ଦେଇ ତାରିବାର ଧର୍ମ
ଅତହିଁ ନିର୍ଗୁଣପଣ କରି ନାଶ
କଲେ କି ନୁହଇ ଏ ଅଧର୍ମ ।୮।

ରାସକ୍ରୀଡ଼ା ଦିନେ ବରକାକାନନେ
ଗୋପୀସମୂହଗର୍ବ ଜାଣି
ଦୁଃଖ ଦେଲ କେତେ ସୁଖ ଦେଲ ଯେତେ
ତାହା କେ କହିବ ବେଣୁପାଣି ।୯।

ବୀର ହନୁମାନ ଗରବଗଞ୍ଜନ
ମଲ୍ଲ ଗିଳାଦେବା ଦୁଃଖୁଁ ରଖି
କହେ ନିତ୍ୟାନନ୍ଦ ଯଶଗୁଣ୍ଡିଚନ୍ଦ୍ର
ସମ୍ଭବ ହୋଇଲା ପଦୂଆଖି ।୧୦।

---

୭ । ସଲଖିଲ—ମୋ ଉପରକୁ ଲକ୍ଷ କଲ

## ନବମ ଛାନ୍ଦ

ଥୋକାଏ ସାମନ୍ତ କହିଲେ ବହୁତ
ସୁଖ ନ ମଣନ୍ତି ଚିତ୍ତେ
ନ ଜଣାଇଲେ ଭୃତ୍ୟ କେହି ତରିବ
ଅବଧାନ କର ଏତେ
ମହାପ୍ରଭୁ ହେ ! ।୦।

ଯେଣୁ ଏ ମନ ବଜୁଳି ପ୍ରାୟ ଅସ୍ଥି
ନୋହିଲା ତୁମ୍ଭ ପାଦରେ
ତେଣୁ ନ ରସିଲା ଚଉବର୍ଗ-ଦେଲା
ନାମ-ଗୁଣମାନଙ୍କରେ
ମହା ପ୍ରଭୁ ହେ ! ।୦।

ତହୁଁ ଜଣାଇଲି ଭୃତ୍ୟ ଉପେଖିଲ
ନ କହିଲେ ଯାଉଅଛୁ ଭାସି
ଏ ଯେ ଭବଜଳ ନାହିଁ ଥଳକୂଳ
ଏଥି ଭଙ୍ଗାନାବେ ଅଛୁ ବସି ।୧।

କାମ କ୍ରୋଧ ବେନି ଲହରୀ କି ଜାଣି
ପ୍ରବଳରେ ଠେଲୁଅଛୁ ଘନ
ଗଗ ହିଂସା ଭ୍ରମ ଭଉଁରୀ ଭ୍ରମାଇଁ
ବୁଡ଼ାଇ ଦେବାକୁ ତାଙ୍କ ମନ ।୨।

---

୦ । ଥୋକାଏ—କେତେକ; ସାମନ୍ତ—ପ୍ରଭୁ, ମୁଖ୍ୟ; ଚଉବର୍ଗ-ଦେଲା—ଚଉବର୍ଗ ଦେଉଥିବା

ତହିଁ ଲୋଭ ମୋହ ବେନ କର ବାଦ
କୁମ୍ଭୀରରୂପେ ଅଛନ୍ତି ଜଗି
ଉପରେ କାଳ-ମହାବଳ ଝାମ୍ପଇ
ବେଳକୁ ବେଳ ହୋଇ ରାଗୀ ।୩।

ଗରଜିଲା ନାଗ ମଙ୍ଗ ପରେ ଅଘ
ରହିଅଛନ୍ତି ଟେକଣ ଫେଣି
ଧର୍ମ-ନ-କରିବା ଅଧର୍ମ-କରିବା
ବଳ ଫୁଟି ପଶୁଅଛୁ ପାଣି ।୪।

ଚିନ୍ତାମଣି କାନ୍ତ ଏଥି ଛାଡ଼ିଲ ତ
ହତ ହେବା ପଥ ଆବୋରିଲି
କରୁଣା ଶରଣ ହେବାର ଅଜ୍ଞାନ-
ମୋହରେ ପଡ଼ଣ ପାସୋରିଲି ।୫।

ତୁମ୍ଭେ ଗୁରୁରୂପେ ସଂସାରେ ପ୍ରଚର
ସେ ପାଦ-ଅବୁଲ୍ଲ ଛାଡ଼ଦେଲି
ବିପଦ ଦଣ୍ଡିବା ମନନ ଛାଡ଼ିବା
ପ୍ରବଳ ପବନେ ଛନ୍ନ ହେଲି ।୬।

ଏଥିପାଇଁ ପ୍ରଭୁ ଗୁହାରି କରୁଛି
କରୁଣାବୋଇତ ମେଲି ଧର
ଏଡ଼େ ପ୍ରମାଦକୁ ତୁମ୍ଭେ ଯେ ସମର୍ଥ
ଦୁଃଖପାରାବାରୁ ପାରି କର ।୭।

---

୪ । ଅଘ—ପାପ; ବଳ—ଫାନ୍ଦ; ଭଣା ୬ । ମନନ ଛାଡ଼ିବା—ତୁମ୍ଭ ପାଦପଦ୍ମର ଧ୍ୟାନକୁ ଛାଡ଼ିବା

ତୁମ୍ଭ ନାମ-ଧନେ ଧନୀକ ହୋଇବ
ମନ ନ ବୁଡ଼ିବ କାମନାରେ
ପାଦପଦ୍ମରସେ ନିଶ୍ଚଳ ମଧୁପ
ହୋଇ ରସୁଥିବ ମଉଭରେ ।୮।
ସାଧୁ-ପଦ-ରଜେ ଲୋଭ ବଢୁଥିବ
ତୁମ୍ଭ ଦରଶନେ ହୋଇ ଲୋଭୀ
ତୁମ୍ଭେ ସର୍ବ ହୃଦେ ବଜୟେ କରଛ
ଧ୍ରୁବ କରି ଜାଣିଥିବ ଭାବ ।୯।
ଶ୍ରୀଗୁରୁଚରଣ ଆଶ୍ରୟ କାରଣ
ଏହା ନ ଛାଡ଼ିବ ଦଣ୍ଡେ କରି
କହେ ନତ୍ୟାନନ୍ଦ ଶରଣ ଗୋବନ୍ଦ
ପରମାନନ୍ଦ ଆନନ୍ଦ ହରି ।୧୦।

## ଦଶମ ଛାନ୍ଦ

ଏବେ କହୁଅଛି ଶୁଣ ସାଧୁଜନେ
ମୁଁ ଯେ ତୁମ୍ଭର ଶରଣ
ଆରତଧ୍ୱଂସନ ପ୍ରଭୁଙ୍କ ଛାମୁରେ
ହୋଇଲା ଏହୁ ଜଣାଣ
ମହାପ୍ରଭୁ ହେ !
ତୁମ୍ଭେ କୃପା କଲେ ଲାଗିବ ଜଣାଣ
ପ୍ରଭୁ-ପାଦପଦ୍ମ-ତଳେ
ଅବଶ୍ୟ ହରିବେ ଅବଶ୍ୟ ହରିବେ
ମୋ ଏ ଦୁଃଖ କୃପାଭରେ
ମହାପ୍ରଭୁ ହେ !

ପରମ   ମଙ୍ଗଳ  ନାମ   ଅମଙ୍ଗଳ-
ନାଶନ ସୁନ୍ଦର ଅଟେ ଯାର
ସେ ତ୍ରାହି କରିବେ ସେ ତ୍ରାହି କରିବେ
ଅଘନାଶନ କମଳାକର ।୧।

ଅତସୀକୁସୁମସୁନ୍ଦର  ସେ  ଶ୍ୟାମ-
ବଦନ ବିଶଦ ପଦ୍ମଲୋଳା
କଟୀତଟେ ବାସ ତଡ଼ିତର ହାସ
କଦମ୍ବମାଳା ହୃଦରେ ଦୋଳା ।୨।

ଏମନ୍ତ ପ୍ରଭୁ  ମୋ  ଦୁର୍ଗତି  ହରିବେ
ଦୁର୍ଗତି ହରିବେ ଧ୍ରୁବ କରି
ଗୋପୀଙ୍କ ରସରେ ଗୋପାଳ ପୂରରେ
ଲବଣୀ ସର ଯେ କଲେ ଚୋର ।୩।

ଅପ୍ରାଧ ହରିବେ ଅପ୍ରାଧ ହରିବେ
କରିବେ କରୁଣା ପରସିଦ୍ଧି
ପୁତନାକୁ କ୍ଷମା ଦୁର୍ଗତିରୁ କଲେ *
ଏମନ୍ତ କରୁଣାଜଳନିଧି ।୪।

ଅହେ ସାଧୁ ନରେ ବିଚାର ମନରେ
ଏମନ୍ତ ପ୍ରଭୁ ଦେଖିଛ କାହିଁ
ବିଷ ପାନ ଦେଲା ଅମୃତ-ଖାଇଲା-
ପୁରେ ତାକୁ ରଖାଇଲେ ନେଇ ।୫।

---

* । ଅମୃତ ଖାଇଲା ପୁରେ—ସ୍ୱର୍ଗରେ

ଯେତେକ ଅସୁରେ ମାରିବା ବିଗ୍ରହରେ
ଅସନ୍ତି ବଇରିଭାବ ଧରି
ତାଙ୍କୁ ଦୟା କରି କରୁଣାରେ ତାରି
ଆନନ୍ଦେ ବସାନ୍ତି ସ୍ୱର୍ଗପୁରୀ ।୭।
ମନରେ ନ ଥାଇ ଚତୁର୍ବର୍ଗ ଦେଇ
ଏମନ୍ତ ସାମନ୍ତପଣ ଯାର
ତା ପାଦେ ନ ରସି କାଳମୋହଫାଶୀ-
ବନ୍ଧନେ ବାନ୍ଧ ହୁଅନ୍ତି ନର ।୭।
ଆହେ ମହାବାହୁ ଏବେ ଆଜ୍ଞା ହେଉ
ଏଥେ ମୋର ବନ୍ଧୁ ଛନ୍ତି ଯେତେ
ବିପଦ-ବନକୁ ଧରି ନେଇ ମୋତେ
ନିରତେ ଡକା କରନ୍ତି କେତେ ।୮।
କ୍ଷଣେ ଦଣ୍ଡେ କରି ତୁମ୍ଭ ନାମ ଧରି
ତରିବା ବିଗ୍ଭର କଲେ ମନେ
ମନ-ମତ୍ତ-କଣ୍ଟୀ ମନ ମତ୍ତ କରି
ଧରିଣ ଭ୍ରମାଏ ଅନୁକ୍ଷଣେ ।୯।
ଆହେ ଭଗବାନ ପତିତପାବନ
ଅରିଷ୍ଟଧ୍ୱଂସନ ବିପନ୍ନହର
କହେ ନିତ୍ୟାନନ୍ଦ ହେ ପ୍ରଭୁ ଗୋବିନ୍ଦ !
ଜଣାଣ ଅପ୍ରାଧ କ୍ଷମାକର ।୧୦।



୯ । ମତ୍ତ କଣ୍ଟୀ—ପାଗଳ ହାତୀ; ମତ୍ତ—ଭ୍ରାନ୍ତ

ତରଙ୍ଗ

# ଶ୍ରୀ ମନବୋଧ ଚଉତିଶା ଭଜନ

## ଭକ୍ତଚରଣ ଦାସ

(ଅଷ୍ଟାଦଶ ଶତାବ୍ଦୀ)

[ସଂସାରର ଅନିତ୍ୟତାକୁ ବଦ୍ଧ ଜୀବର ମନେ ପକାଇ ଦେବାପାଇଁ ଏବଂ ସଂସାର-ସାଗରରୁ ଉଦ୍ଧାର ହେବା ନିମନ୍ତେ ଶ୍ରୀଜଗନ୍ନାଥଙ୍କ ଶରଣାପନ୍ନ ହେବାକୁ ଚେତେଇ ଦେବାପାଇଁ ଏ ଭଜନ ସମାନ ଗୀତ ଓଡ଼ିଆ ସାହିତ୍ୟରେ ଆଉ ନାହିଁ, କହିଲେ ଚଳେ । ଭକ୍ତଚରଣ ମଥୁରାମଙ୍ଗଳ କାବ୍ୟ ଓ ପ୍ରସିଦ୍ଧ ମଥୁରାବିହାରୀ ଚଉତିଶାର କବି । ତାଙ୍କ ପୂର୍ବାଶ୍ରମର ନାମ ବୈରାଗୀଚରଣ ପଟ୍ଟନାୟକ । ପୁରୀ ଜିଲ୍ଲାର ସୁନାଖଳା ଗ୍ରାମ ତାଙ୍କ ଜନ୍ମଭୂମି । ]

( ରାଗ କଳହଂସ କେଦାର )

କହଇ ମନ ଅରେ ! ମୋ ବୋଲ କର
କଳାଶ୍ରୀମୁଖ ବାରେ ଦେଖିବା ମୂଳ ରେ
କେତେ ଧନକୁ ମନ ବାନ୍ଧିଛୁ ଅଣ୍ଟ-
କ ଦେନି ଯିବୁ ତୁହି ଛୁଟିଲେ ଘଟ ରେ ।୧।

ଖଣ୍ଡେ ଯେ ଖଣ୍ଡେ ତୋର ପଞ୍ଜରା କାଠି
ଖାଉଥିବେ ଶ୍ୱାନ ଶୃଗାଳ ବାର୍ଣ୍ଣ
ଫାଟ ପଲକେ ମନ ଶେଯାଇ ଶୋଇ
ଖଳ ଦୁର୍ଗନ୍ଧ ହେବ ଏ ତୋର ଦେହ ରେ ।୨।

---

୧ । ଅଣ୍ଟ—ଟାଣ; ଛୁଟିଲେ ଘଟ— ଏ ଦେହ ନାଶ ପାଇଗଲେ;
୨ । ଖଳ—ମନ୍ଦ

ଗଲେଣି ତୋ ସଙ୍ଗରୁ ଯେତେକ ଜନ
ଗଣ୍ଠିରେ ବାନ୍ଧିନେଲେ କେ କେତେ ଧନ ରେ
ଗୁରୁ ଗୋବିନ୍ଦ ନାମ ତୁଣ୍ଡେ ନ ବୋଲୁ
ଗାଢ଼ ମଜିଣ ନଚ୍ଛେ ଧନ ଅର୍ଜିଲୁ ରେ ।୩।

ଘର ବୋଲି ଅର୍ଜିଲୁ ଯେତେ ପଦାର୍ଥ
ଘଟ ଛୁଟିଲେ ତୋତେ ବୋଲିବେ ଭୂତ ରେ
ଘର-ଘରଣୀ ଦେହ କଳାଉଥିବ
ଘେନ ଜାତିକୁଟୁମ୍ବ ଶୁଙ୍ଖ ହୋଇବ ରେ ।୪।

ଙ୍କାର ହେବୁ ଯେବେ ଭବସାଗରୁ
ଙ୍‌ପାୟ କର ଏବେ ଭଜ ଶ୍ରୀଗୁରୁ ରେ
ଙ୍‌ଣା ହେଉଛୁ ଦିନୁଁ ଦିନ ଆୟୂଷ
ଆଉ ଏହିକି ଅଛୁ କେତେ ବୟସ ରେ ।୫।

ଚନ୍ଦ୍ରପ୍ରତିମା ପ୍ରାୟେ ଦିଶୁ ସୁନ୍ଦର
ଚର ଭିତର ଦେଖ କି ନାରଖାର ରେ
ଚର୍ମ ଘେରିଛି ସିନା ଚଉସଣ୍ଠିକ
ଚିତ୍ତ ତୁ ଦିଅ ନୀଳଗିରିବାସୀଙ୍କି ରେ ।୬।

ଛାର ଦେହକୁ ମନ କରୁ ତୁ ସଜ
ଛନ୍ଦ କପଟ ତେଜି ଗୋବିନ୍ଦ ଭଜ ରେ
ଛୁଇଁବେ ନାହିଁ ତୋତେ ବୋଲିବେ ମଡ଼ା
ଛ'ଖଣ୍ଡି କାଠ ତୋର ହୋଇବ ଲୋଡ଼ା ରେ ।୭।

---

୪ । ଦେହ କଳାଉଥିବ—କୁ ଭାଳେ ପ୍ରେତ ହୋଇ ତାକୁ ଗ୍ରାସିବୁ ଏହି ଭୟରେ । ୬ । ଚଉସଣ୍ଠିକ—ନରକ ସମାନ ରକ୍ତ ପୂଜ ମୂତ୍ର ପୁରୀଷ ଆଦିକୁ

ଯମ ଯେ ନ ଜାଣଇଁ ବାଳୁତ ଯୁବା
ଜୀଇବୁ ବୋଲି ମନ କରୁଛୁ ଅବା ରେ
ଜଗଣେଁ ଏଥି କେହି ନାହିଁ ଅମର
ଜଗନ୍ନାଥଙ୍କୁ ଭଜ ହେବୁ ଉଦ୍ଧାର ରେ ।୮।

ଖୋଲ କନ୍ଥା ପାଛୋଡ଼ା ପିନ୍ଧାକୁ ରଖୁ
ଖାଡ଼ ସଂସାରେ ମନ ଖସାଇ ପଶୁ ରେ
ଖଣ୍ଡି ପଡ଼ିଲେ ଉଠି ପାରିବୁ ନାହିଁ
ଖଡ଼ଗ ପଣ ବୃକ୍ଷେ ଲାଗିଛି କାହିଁ ରେ ।୯।

ନିଶି ଦିବସେ ଥୟୁ ନୋହୁ ନା ମନ
ନିଦ୍ରାରେ ଦେଖୁଅଛୁ ଯଥା ସପନ ରେ
ନ ଯିବେ ସଙ୍ଗେ କେହି ଯିବୁ ତୁ ଏକା
ନାମମାନ ଅଟଇ ପଥକୁ ସଖା ରେ ।୧୦।

ଠାଣ କରିଛୁ ମନ ! ସବୁ ମୋହର
ଠେଲି ପଡ଼ିଲେ କେହି ନୋହେ କାହାର ରେ
ଠେରି ଭିତରେ ଯେତେହେଁ ଅପୂର୍ବ ନାରୀ
ଠୋପ ରଜରି ଅଛି ତୋ ଦେହେ ପୂରି ରେ ।୧୧।

---

୯। ଖୋଲକନ୍ଥା—ଘୋଡ଼ଇ ହେବା ଶୀତବସ୍ତ୍ର; ପାଛୋଡ଼ା ପିନ୍ଧା—ଧୋତି ଚଦର; ୧୧। ଠେରି—ଚର୍ମ; ଠୋପରଜରି—ଅନ୍ତର୍ଯ୍ୟାମୀ ପରମାତ୍ମାଙ୍କ ଅବସ୍ଥାନ—ଅର୍ଥାତ ତୋ ଅନ୍ତରର ଗଭୀରତମ ପ୍ରଦେଶରେ ଅନ୍ତର୍ଯ୍ୟାମୀ ପୁରୁଷ ରହିଅଛନ୍ତି

ଠିକେ ମୁଁ କହୁଅଛୁ ଦର ମୋ କଥା
ଠିକେ ଦେଖ ଦେହେ ଅଛୁ ଶୂନ୍ୟଦେବତା ରେ
ଠକ ଯିବୁଟି ଠିକମୁଣ୍ଡ ପଡ଼ିଲେ
ଠିକେ ଗୁରୁଙ୍କ ସେବା କର ତୁ ଭଲେ ରେ ।୧୨।

ଡାକ କହୁଛୁ ମନ ଭଜ ଗୋବିନ୍ଦ
ଡର ଜଞ୍ଜାଳ ଯାଉ ତୋହର ହୃଦ ରେ
ଡଙ୍ଗା ଯେସନେ ଜଳରେ ଗୁହ୍ନା ପଞ୍ଚକୁ
ଡେରିଥାନ୍ତି 'ଶ୍ରବଣ ଭକ୍ତ-ଡାକକୁ ରେ ।୧୩।

ଢୋଲ ଯେସନେ ଢାଇଁ ଢାଇଁ ବାଜଇ
ଢାଳେ ଢନ୍ତି ଭିତରେ କହୁଛି ନାହିଁ ରେ
ଢାଙ୍କି ରହୁଛି ଦେହ ସବୁଟି ତୁଚ୍ଛ
ଢଳି ପଡ଼ିଲେ ସବୁ ହେବ କି ମିଛ ରେ ।୧୪।

ଏଣେ ତୁ ଦେଇଥିଲେ ତେଣେ ପାଇବୁ
ଅର୍ଦ୍ଧ-ଆୟୁଷ-ବେଳେ କ ଘେନି ଯିବୁ ରେ
ଅଣନିଶ୍ୱାସୀ ହୋଇ ରହିବୁ ଯେବେ
ଅନେକ ଦୁଃଖ ଦେବେ ଯମଦୂତନେ ରେ ।୧୫।

ତୁ ଯେବେ ବୋଲୁ ମୋର ଅର୍ଜିଲା ଧନ
ତୋ ଦେହ ନୋହେ ତୋର ଦେଖ ଏମାନ ରେ
ତୋହର ସଙ୍ଗୁ ମନ ଗଲେଣି କେତେ
ତୁ ମିଥ୍ୟା କଥାକୁ ତ ଯାଉ ପରତେ ରେ ।୧୬।

୧୨। ଶୂନ୍ୟଦେବତା — ଅପ୍ରାକୃତ ଶରୀରଧାରୀ ଦେବତା ଅର୍ଥାତ ଅନ୍ତର୍ଯାମୀ ପରମାତ୍ମା; ଠିକ ମୁଣ୍ଡ — ବଗୁରବେଳ ପହଞ୍ଚିଲେ

ଥିଲେ ଏ ସଂସାରରେ ଯେତେ ନୃପତି
ଅସ୍ତ କରି କେ ଭୋଗ କଲ ଏ ପୃଥ୍ୱୀରେ
ଥୋଇଲ ଧନ ଚୋର ଖଣ୍ଡି ଖାଇବେ
ଥାନ ଛୋଡ଼ିବି ଘର କରି ରହିବେ ରେ ।୧୭।

ଦେଖେ ପୂରିଛୁ ଚୋର ଅଶେଷ ବେଗ
ଧନା ଗ୍ରହିକ ସିନା ଏ ସୁଖଭୋଗ ରେ
ଦଣ୍ଡେହେଁ କେହି ଛୋଡେ ରଖିବେ ନାହିଁ
ଦଣ୍ଡୁ ଯେ ଥିବେ ଯମ-ଉଗରେ ନେଇ ରେ ।୧୮।

ଧର୍ମ ଅଧର୍ମ କଥା ନ ଜାଣୁ ଛୁହି
ଧନ୍ଦହେଉଛୁ ଧନ ଅର୍ଜିବା ପାଇଁ ରେ
ଧୋକା ରଖିଲେ ଧନ୍ଦା ଫିଟିବ ନାହିଁ
ଧର୍ମରେ ଅତିଯାତ ହେଉଛି ମହା ରେ ।୧୯।

ନିନ୍ଦିତ କର୍ମ କଲେ ନିନ୍ଦା ପାଇବୁ
ନରକେ ପଡ଼ି କେତେ ଦୁଃଖ ସହିବୁ ରେ
ନିମିଷେ ମାତ୍ର ମୁଖେ ନ ବୋଲ ହରି
ନାଶ ହେଉଛୁ କାହିଁ ଅଛୁ ଆବୋରି ରେ ।୨୦।

ପାହିଲେ ନିଶି ଯେହ୍ନେ ରବି ଉଦଏ
ପଦ୍ମଲୋଚନ ସବୁ ଦେଖେ ଉଦଏ ରେ

---

୧୯। ଧୋକା ରଖିଲେ—ସନ୍ଦେହ ହେଲେ ଭଗବଦ୍ରହସ୍ୟ ଜାଣିପାରିବୁ ନାହିଁ; ୨୦। ନାଶହେଉଛୁ···ଆବୋରି—ବିଷୟଭୋଗ ସଦାତତନାଶର କାରଣ; ତାକୁ ଆଦରି ଅଛୁ କାହିଁକି ?

ପ୍ରଭୁଙ୍କୁ ଆଶ୍ରେ କର ତରିବୁ ଯେବେ
ପାଦପଦ୍ମରେ ଶରଣ ପଶ ତୁ ଏବେ ରେ ।୨୧।

* ଫୁଲ୍ ଗନ୍ଧ ହରିଲା ପ୍ରାୟେ ସମୀର
ଫିଙ୍ଗି ପଳାଇ ଯିବ ଜୀବ ତୋହର ରେ
ଫଳ ସଂସାରେ ଲାଭ ହରି ଭଜନ
ଫାଶ ଗଳାକୁ କପାଁ କରୁଛୁ ଧନ ରେ ।୨୨।

ବେଳକୁ ବେଳ ବୋଟରେ କହୁଛୁ ମୁହିଁ
ବାନ୍ଧଣେ ନେବ ଯମ କି ଦୁଃଖ ଦେଇ ରେ
ବକଲେ କାହୁଁ ଥିବୁ ଅକୁଳ ହୋଇ
ବେଳହୁଁ ଆଶ୍ରେ କରି ଭଜ ଗୋସାଇଁ ରେ ।୨୩।

ଭେଳା ବୁଡ଼ିବ ହେଲା କଲେ କହୁଛୁ
ଭଙ୍ଗା ନାବରେ କେବା ସିନ୍ଧୁ ତରୁଛୁ ରେ
ଭାବକୁ ନକହ ସେ ଅଗ୍ରେବେ ଦୂର
ଭକତ ଦାସ କହେ ଜୀବନ ସ୍ଥିର ରେ ।୨୪।

---

*ପ୍ରଚଳିତ ପାଠ

"ଫୁଲ ଯେସନ ଫୁଲେ ଫୁଲେ ବାହାରେ
ଫୁଲ ସମୀରେ ଆଉ ନ ପଶେ ଛାରେ"

କିନ୍ତୁ ଏଥିରେ କୌଣସି ସମୀଚୀନ ଅର୍ଥ ହେଉ ନ ଥିବାରୁ ଏହାକୁ ଲିପିକର-ପ୍ରମାଦ ବୋଲି ଗ୍ରହଣ କରି ଏହା ସ୍ଥାନରେ ପରିବର୍ତ୍ତିତ ପାଠ ଦେଉଛୁ । ଅପରାଧ କ୍ଷନ୍ତବ୍ୟ ।

୨୨। ଫୁଲ୍—(ପବନ ଫୁଲର ଗନ୍ଧକୁ ନେଇ ଗଲାପରି ପବନ ଜୀବାତ୍ମା ମନବୁଦ୍ଧିଅହଙ୍କାରକୁ ନେଇ ଅନ୍ୟ ଘଟକୁ ଜଡ଼ିଯିବ)
୨୩। ଗୋସାଇଁ—ଶ୍ରୀହରି

ମିଛ ମାୟା ସଂସାର କୋହେ କାହାର
ମଲ ବୋଲଣ ଦନେ ପଡ଼ବ ଦୂର ରେ
ମହୀଭତରେ କେହ ରହବେ ନାହିଁ
ମଲ ବୋଲ କାନ୍ଦୁଛୁ ମରବୁ ତୁହ ରେ ।୨୫।

ଜନମ ହେଲେ ପ୍ରାଣୀ ଅବଶ୍ୟ ମର
ଯଶ ରଖିବୁ ଯେବେ ଭଜ ଶ୍ରୀହର ରେ
ଧର୍ମ ଯେ ନେବ ବାନ୍ଧ ହେବୁ ମେଲାଣି
ଜଗନ୍ନାଥ ମହମା ଏଣିକ ଅଣି ରେ ।୨୬।

ରଙ୍ଗପସରା ସିନା ଭବସାଗର
ରଙ୍ଗ ଭତରେ ଅଛୁ କ ନାରଖାର ରେ
ରୂପ-ପ୍ରତମାକୁ ତୁ ପରତେ ନ ଯା
ରହବେ ନାହିଁ କେହ ରଜା ପରଜା ରେ ।୨୭।

ଲୋଚନେ ଦେଖି କର୍ଣ୍ଣେ ଶୁଣୁଛୁ ନତ
ଲୋଭକର ଅର୍ଜିଲୁ ଧନସମ୍ପତ୍ତ ରେ
ଲୋଭ କି ସବୁ ନାଶ କରଇ ମନ
ଲୋଡ଼ିଲେ ନ ପାଇବୁ ଆଉ ଜୀବନ ରେ ।୨୮।

ବଅର୍ଥେ ବହୁଅଛୁ ଦୁର୍ଲଭ ଦେହ
ବଷୟା-ବଶେ ଆଉ ନ ବଳା ସ୍ନେହ ରେ
ବୁଢ଼ ସିବଟି ମୂଳ ଲାଭ ଘରବ
ବେଳହୁଁ ଆଗେ କର ଭଜ ମାଧବ ରେ ।୨୯।

୨୫। ଦୂର—ଗୋଳ; ୨୬। ଏଣିକ ଅଣି—ଏଣିକ ତୋ
ମନର ଅଣି = ଟାଣ ହେବ

ଶ୍ରୀକୃଷ୍ଣପାଦପଦ୍ମେ ଦିଅ ତୁ ମନ
ସରିଲେ ନ ପାଇବୁ ଆଉ ଜୀବନ ରେ
ଶ୍ରୀକୃଷ୍ଣନାମ ଟୋକି କର ଭଜନ
ଶ୍ରୀକୃଷ୍ଣପାଦପଦ୍ମେ ଦିଅ ତୁ ଧ୍ୟାନ ରେ ।୩୦।

ସନ୍ତୋଷଚିତ୍ତେ ତୁହି ହରିଙ୍କି ଭଜ
ସଂସାରେ ପଡ଼ି ଆଉ ନ ପାଅ ଲାଜ ରେ
ସବୁ କି ମିଛ ହରିନାମ ହି ସତ
ଶ୍ରୀକୃଷ୍ଣପାଦପଦ୍ମେ ଦିଅ ତୁ ଚିତ୍ତ ରେ ।୩୧।

ସତ୍ୟ ମଣୁଛୁ ତୁହି ଭବସାଗର
ସରିଯାଉଛି ପରମାୟୁ ତୋହର ରେ
ସନ୍ତୋଷ ହୋଇ ହୃଦେ ଭଜ ଶ୍ରୀହରି
ଶୋକସାଗର ଯେବେ ହୋଇବୁ ପାରି ରେ ।୩୨।

ହୁଡ଼ିଲେ ଯେତେ ଜନ ହରିନାମକୁ
ହୀନ ଗତିକି ଗଲେ ବୁଡ଼ି ତଳକୁ ରେ
ହଜିଲେ ଦେହ ଆଉ ପାଇବୁ ନାହିଁ
ହାଟ ବସାଇଥିବେ ତୋ ଦେହ ପାଇଁ ରେ ।୩୩।

କ୍ଷୟ, ଦୁର୍ଲ୍ଲଭ ଦେହ, ହୋଏ ଅପୂର୍ବ
କ୍ଷୟ ନ ଯିବ ନାମ ହୃଦରେ ଘୋଷ ରେ
ସ୍ଥିର ଦେହକୁ ମନ ନ ଯା ବିଶ୍ୱାସ
ସ୍ଥିର ବୁଦ୍ଧି କହେ ଭକତ ଦାସ ରେ ।୩୪।



( ଏକତରଣ )

# ଶ୍ରୀକୃପାସିନ୍ଧୁ ଦୀନବନ୍ଧୁ ଚଉତିଶା ଜଣାଣ

## ଅଭିମନ୍ୟୁ ସାମନ୍ତସିଂହାର

[ ବିଦଗ୍ଧଚିନ୍ତାମଣିର ମହାକବି ଶୁଦ୍ଧାଭକ୍ତି ମାର୍ଗର ପଥିକ ଅଭିମନ୍ୟୁ ସାମନ୍ତସିଂହାରଙ୍କ ଦ୍ୱାରା ଅନେକୋଟି ମାନ ହୃଦସ୍ପର୍ଶୀ ଜଣାଣ ଆବିଷ୍କୃତ ହୋଇଅଛି । ଏଥିମଧ୍ୟରୁ ଦୁଇଗୋଟି ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ସମ୍ବନ୍ଧୀୟ ହୋଇଥିବାରୁ ଏଥିର ଅନ୍ତର୍ଭୁକ୍ତ କରା-ଯାଇଅଛି । ବହୁକାଳ ହେଲା ଏ ଜଣାଣଟି ଦୁଷ୍ପ୍ରାପ୍ୟ ହୋଇ ପଡ଼ିଥିଲା । ]

( ରାଗ ଶୋକ କାମୋଦୀ—ଶ୍ରୀରାଧାବାହୁଲି ବୃତ୍ତେ )

କୃପାସିନ୍ଧୁ-ଦୀନବନ୍ଧୁ-ଶ୍ରୀମୁଖରେ
ଜଣାଉଛି ଅପରାଧୀ ଦୀନ
ଖେଦଜଳଧିରେ ଭାସି ମୁଁ ଯାଉଛି
ଚାହିଁ କର ହୋଇ ସୁପ୍ରସନ୍ନ
ଆହେ ଗିରିଧର !
ଘୋଷଣା ବାଜୁଛି ତିନି ପୁର
ଜଳୁଛି କେତନ ପତିତପାବନ
ଶରଣସୋଦର ବିଶ୍ୱମ୍ଭର ।୧।
ଚରାଚର-ଚରଗୃଇତ ଚଞ୍ଚଳା-
ପତି ଚତୁର୍ବର୍ଗଦାମୀ ତୁମ୍ଭେ
ଛାଡ଼ି ସବୁ ଆଶା କରିଛି ଭରସା
ଏହି ଗୁଣମାନ ଧରି ଦମ୍ଭେ

---

୧ । ଚରାଚର-ଚରଗୃଇତ—ସକଳ ବ୍ରହ୍ମାଣ୍ଡର ପାଳୁଥିବା, ଚଞ୍ଚଳା—ମହାଲକ୍ଷ୍ମୀ

ଅହେ ଜନାର୍ଦ୍ଦନ !
ହୃଷ୍ଟ ନ ହେଲେ ସୁପ୍ରସନ୍ନ
ନିର୍ମଳଗୁଣ - କଳାନିଧି ଅଙ୍କରେ
କଳଙ୍କ ଲାଗିଯିବ କି ଜାଣ ।୨।

ତ୍ରାଣ କର କହୁଥାଇ ମହାପ୍ରଭୁ
ଅଖିଳକୋଟିବ୍ରହ୍ମାଣ୍ଡେଶ୍ୱର
ଠକ ଏଥର ନିଷ୍ଠୁର ହସିବେ କି
ପ୍ରଭୁଙ୍କର ଦେଖି ଅବସ୍ଥର
ଅହେ ଭରହର !
ତାଳେ କଲ ମୋତେ ପର ପରି
ଅସଦ୍‌ଗୁଣୀଜନତୁଣ୍ଡେ ଶୁଣାଯିବ,
ପ୍ରଭୁ ହେଲେ ଅନୁଗତ-ମର ।୩।

ଛାପନସ୍ପୃହର ମୁକତପଥର
ଅଗାଧସମୁଦ୍ର ମହାମେରୁ
ସ୍ଥାଣୁର ଗର୍ବ ଲବକେ ଦଳିପାର
ଟିକାକେ ହୁବକୁ କର ଦାନ୍ତ
ଅହୋ ! ଦୀନତ୍ରାଣ !
ଧ୍ରୁବ-ପ୍ରହ୍ଲାଦ-ନିସ୍ତାରଣ !
ନୃପ ନହୁଷ ଅଜାମିଳ ବ୍ୟାଧର
ମିତ୍ରତାଭାବ କରଛ ଜାଣ ।୪।

---

କଳାନିଧି—ଚନ୍ଦ୍ର; ୪ । ସ୍ଥାଣୁ—ପର୍ବତ

ପାଞ୍ଚାଳୀ ହରଣୀ ଗଜ ଆଦ ଜାଣି
ଆରତେ ଡାକଲେ ସଙ୍କଟରେ
ଫଣୀ ପୁଣ୍ଡରୀକ ବେଣ ଛଦ୍ମ କାକ
ଗତି ଦେଲ ଦ୍ରୋହ କଲଠାରେ
ଅହେ ବିଶ୍ୱମ୍ଭର !
ଭିଷିଲ ଶବରୀ ଚଖା ଫଳ
ମନ୍ଦୋଦରୀ ଇଳା ଅହଲ୍ୟା ପିଙ୍ଗଳା
ମାନଙ୍କୁ ଟି ପରି ଗତି ଦେଲ ।୫।
ଜାମ୍ବବାନ ବାଲୀ ସହ ସୁଗ୍ରୀବର
ବିଭୀଷଣର ତ ସୁଖଦାମ୍ନା
ରଙ୍କ ଦାମୋଦର ସୁଦାମ ସୁବଳ
ମିତ୍ରତାଭାବକୁ ଅଛ ଦେନ
ଅହେ ଲୋକନାଥ !
ବିଦୁରର ବାଞ୍ଛା କଲ ସାର୍ଥ
ଦରିଦ୍ରକୁଳ ତିଳକ ସୁଦାମାର
ପୂର୍ଣ୍ଣ କରିଦେଲ ମନୋରଥ ।୬।
ଶମନପୁରରୁ ଗୁରୁପୁତ୍ର ଆଣି
ଅନ୍ଧକୁ ହୃଦରେ ଚକ୍ଷୁ ଦେଲ
ସେ ମହିମାମାନ ଏବେ କେଣେ ଗଲା
ଶ୍ରୀହସ୍ତ ଚକ୍ର କି ହଜାଇଲ
ଅହେ ହୃଷୀକେଶ !
କ୍ଷମା କର ଦୀନଜନ-ଦୋଷ
ଅଭୟଚରଣେ ଶରଣ ପଶୁଛି
ଅଭିମନ୍ୟୁର ପୂରାଅ ଆଶ ।୭।

( ବଡଶ )

# ଶ୍ରୀଜଗନ୍ନାଥଙ୍କ ଅନୁସରଣ ଜଣାଣ

## ଗୋପାଳକୃଷ୍ଣ ପଟ୍ଟନାୟକ—କବି କଳହଂସ

( ଊନବିଂଶ ଶତାବ୍ଦୀ ) .

[ ଗୋପାଳକୃଷ୍ଣ ପଟ୍ଟନାୟକଙ୍କ ରଚନାମାଧୁର୍ଯ୍ୟ ଯୋଗୁଁ ତାଙ୍କୁ କବିକଳହଂସ କୁହାଯାଇଥାଏ । ସେ ଊନବିଂଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ଜୀବିତ ଥିଲେ । ଗଞ୍ଜାମର ପାରଳାଖେମୁଣ୍ଡି ତାଙ୍କର ଜନ୍ମଭୂମି । ସେ ଶୁଦ୍ଧାଭକ୍ତିମାର୍ଗର ଉପାସକ । ତାଙ୍କ କାନ୍ତ ପଦାବଳୀର ମାଧୁର୍ଯ୍ୟ ଅନନ୍ୟସାଧାରଣ । ]

( ରାଗ ହନୁମତ ତୋଡ଼ି )

ଅନୁସର ତ<br>
ପ୍ରଭୁ ! କାଳପାଶ ଗଳ ସର ତ<br>
କଣ ବିତରଣ କଲେ କେତେ ଊଣା<br>
ଦୁଅନ୍ତା କରୁଣା-ସରିତ । ତୋଷା ।<br>
ଅଶରଣ-ଜନ-ବନ୍ଧୁପଣ-ଯଶ<br>
ସଂସାରେ ହୋଇଛି ଉଦିତ<br>
ପଥର ହୋଇ ପଥରେ ପଡ଼ିଥିଲା<br>
ଅହଲ୍ୟାକୁ ଦେଲ ତାରି ତ ।୧।

---

° । ଗଳ—ବନ୍ଧ ; ୧ । ହୋଇଛି ଉଦିତ—ପ୍ରକାଶ ପାଇଅଛି

ପାଞ୍ଚାଳୀକି ଦୁଃଶାସନ ଘଣ୍ଟାଳିଲା
ନିଷ୍ଠାଇଲ ବାସ ଦେଇ ତ
ଦୁଃଖାଇଲ ନାହିଁ ମୋ ଗୁରୁ କଦନ
ଟିପାଇଲ ନେତ୍ରୁ ବାରି ତ ।୨।

କାହିଁ ଥିଲା ଚକ୍ର କାହିଁ ଥିଲା ନକ୍ର
ଦଳକପଟନ ନୋହୁ ତ
ଛୁଡ଼ିଗଲା ମଥା ରହିଗଲା କଥା
ଡାକିଲା ମାତ୍ରକେ କଷ୍ଟ ତ ।୩।

କାଳକିଙ୍କର ଭୟରେ ଅଜାମିଳ
ପୁତ୍ରୋପଚାରରେ ଡାକ ତ
ପରମ ପଦ ପାଇଲା ଆପଣଙ୍କ
ନାମମହିମା ଏପରି ତ ।୪।

ନିରୁପାଧିକୃପାକର' ବୋଲି ବିଧି-
ଭବାଦିରେ ଥାଉ କଥିତ
ମୁଁ କଲି ଦୋଷ କି ? ନାଶିଛ ତ ବକୀ
ବିଷ ପିଆଇଁ ତା ଦୁରିତ ।୫।

ଗୋପାଳକୃଷ୍ଣ କହେ ଜଗନ୍ମଙ୍ଗଳ !
ଯାହା କରିବ ତୁମ୍ଭ ଚିତ୍ତ
ଆପଣା କୃପାଳୁପଣକୁ ବଳି ମୋ
ଦୁଷ୍କୃତ ନୁହଇ ଅସ୍ତି ତ ।୬।

୨ । ଘଣ୍ଟାଳିଲ—ବିବସନ କରିବାକୁ ଭିଡ଼ା ଓଟାରି କଲା; ବାସ—ଲୁଗା; ୪ । କାଳକିଙ୍କର—ଯମଦୂତ; ପୁତ୍ରୋପଚାରରେ—ପୁତ୍ର ପ୍ରତିକାର କରିବ ବୋଲି; ୫ । ନିରୁପାଧିକୃପାକର—ଅହେତୁକ କରୁଣାର ଖଣି; ଭବ—ଶିବ; ବକୀ—ବକାସୁରର ଭଉଣୀ ପୂତନା; ୬ । ଦୁଷ୍କୃତ—ପାପ ଅପରାଧ

( ତେତିଶ )

# ଶ୍ରୀଜଗବନ୍ଧୁ ଦୟାଳୁ ଭଜନ

## ଗୋପାଳକୃଷ୍ଣ ପଟ୍ଟନାୟକ—କବି କଳହଂସ

[ଏ ଭଜନଟିରେ ଗୋପାଳକୃଷ୍ଣ ଆପଣା ମନକୁ ପୂର୍ଣ୍ଣ ଶରଣାଗତ ପାଇଁ ଆବେଦନ କରି ନିତ୍ୟଧାମ ପ୍ରାପ୍ତି ନିମନ୍ତେ ଅଗାର ଦ୍ୱାର ମୁକୁଳା ବୋଲି କହି ଅଛନ୍ତି । ସନ୍ତପ୍ତ ହୃଦୟକୁ ଶୀତଳ କରିବାକୁ ଏହା ଅମୃତ ପ୍ରଲେପ । ]

( ରାଗ କାଫିବାଣୀ )

ଜଗବନ୍ଧୁ ଦୟାଳୁ । ଥାଉଁ ମନ ! କାହିଁ ପାଇଁ ଭାବୁ ରେ
ରହି ଉଦ୍ଧରିବେ ଏ ଜଞ୍ଜାଳୁ ରେ । ଘୋଷା ।

ନିରୁପାଧିକୃପାକର ମହିମାବ୍ଧି
ନୀଳାଚଳ-ସୁଧାକର
ନିଖିଳପ୍ରାଣିହିତକାରୀ ତୋ ଈଶ୍ୱର
ଦ୍ୱନ୍ଦ କି ଛାଡ଼ୁ ଘୋର ।୧।

ପ୍ରଣତବଦାନ୍ୟେଶ ସ୍ୱରୂପେ ଅର୍ଥୀଙ୍କି
କରୁଣ, ନାଥ ପ୍ରପନ୍ନେ
ଯୁବତୀଙ୍କି କାମ, ସଖାଙ୍କୁହିଁ ସମ,
ଅଧୀଶ ସ୍ୱଭକ୍ତଜନେ ।୨।

---

୧ । ନିରୁପାଧିକୃପାକର—ଅହେତୁକ କରୁଣାର ଖଣି; ମହିମାବ୍ଧି—ମହିମାସାଗର; ଦ୍ୱନ୍ଦ—କଷ୍ଟ; ୨ । ପ୍ରଣତବଦାନ୍ୟେଶ—ଦାତାଶ୍ରେଷ୍ଠ; ଅର୍ଥୀ—ଯାଚକ; ପ୍ରପନ୍ନ—ଶରଣାଗତ; କାମ—କନ୍ଦର୍ପ; ସମ—ସମାନସ୍କନ୍ଧ; ଅଧୀଶ—ପ୍ରଭୁ

ଦାମୋଦର ଗଲେ ନ ମାଗୁ ଯା ଦେଲେ
ଶୁଣି ତ ଥିବୁ ପୁରାଣେ
ବୃଥା ହୋଇବ କି ଜଣାଇବାର ତୁ
ପ୍ରଣାମ କରି ଚରଣେ ।୩।

କୃପାଳୁପଣେ କେ କଳାର ପିଆଇ
ଦେଇଥିଲା ବିଷ ବକୀ
ଦୋଷ ଯେନ କିସ ଦଣ୍ଡିବେ ? ଜନନୀ-
ଗଣରେ ଦେଲେ ଗତକ ।୪।

ନୃପ ମୃନ ଗୋପୀ ସୀତା ପିତୃଙ୍କର
ଶତ୍ରୁ ଛଦ୍ମ ଆତ୍ମାମୋକ୍ଷ
କରିଛି ଯା ନାମମାନକେ, ସେ ପ୍ରଭୁ
ହୋଇଅଛନ୍ତି ପ୍ରତ୍ୟକ୍ଷ ।୫।

ବାରଣବନ୍ତ-ପରିତ୍ରାଣ-ଘୋଷଣ
ବ୍ରହ୍ମାଣ୍ଡ ଭିତ୍ତି ଫଟାଇ
ବାହାର ଯାଇଛି, ନ କର ସ୍ମରଣ
ଦୁଃଖୀ ହେଉ କାହିଁପାଇଁ ।୬।

କୁରୁସଭାତଳେ ଡାକବାରୁ ଦେଲେ
ଯାହା ଦେଲେ ଦ୍ରୌପଦୀଙ୍କି
ଆଜ ତାହା, ପୁଣି ବୋଲି ମୁଁ ତା ଋଣୀ
କହୁଅଛନ୍ତି ଯେ ଡାକ ।୭।

---

୩ । ଦାମୋଦର—ସୁଦାମା; ୪ । ବକୀ—ପୁତନା

ଭକ୍ତବନ୍ଧୁପଣ ଭାରତ ଯୁଦ୍ଧରେ
ଭୀଷ୍ମଠାରେ ଦଣାଇଲେ
ନିୟମ ଲଙ୍ଘି ରଥରୁ ଡେଇଁ ରଥ-
ଚରଣ ଧରି ଧାଇଁଲେ ।୮।

ଶରଣ ପଶି ବିଭୀଷଣ ଆସିଛି
ବୋଲି କହୁ ଶୀଘ୍ରମୁରେ
ଦେଲେନ ତେତେବେଳକୁ ତାକୁ ଲଙ୍କା-
ପଦବୀ ଭ୍ରୂଲୀଳାରେ ।୯।

ବଧିପଦ ସୁଖ ବୋଲି ହନୁମାନ
କଲାରୁ ଅନୁମୋଦନ
ବ୍ରହ୍ମା କରିବେ ରଖିଛନ୍ତି ପ୍ରଭୁ, କେ
ଏ ଧରି ଜାଣିତ ମନ ? ।୧୦।

ଧ୍ରୁବ-ମନୋରଥ ପୂର୍ଣ୍ଣ କରିବାର
ପ୍ରତ୍ୟକ୍ଷରେ ତ ଦିଶୁଛି
ଚରଣ-ପଙ୍କଜ-ରଜରେ ପଥର
ପଥର-ନାରୀ ତରୁଛି ।୧୧।

ପ୍ରହର ଅର୍ଦ୍ଧକେ ଧୂଳି କଲେ ଭକ୍ତ-
ବଇରି ରାକ୍ଷସମେରୁ
ସେ ପ୍ରହଲ୍ଲାଦଙ୍କ ବିପଦରୁ ତ
ନୁହଇ ମୋ ଖେଦ ଗୁରୁ ।୧୨।

---

୮ । ଦଣାଇଲେ—ଦେଖାଇଲେ; ରଥଚରଣ—ଚକ୍ର; ୧୧ । ପଥର ନାରୀ—ଅହଲ୍ୟା; ୧୨ । ରାକ୍ଷସମେରୁ—ଅସୁରଶ୍ରେଷ୍ଠ (ହିରଣ୍ୟ) ।

ଦାମୋଦର ଗଲେ ନ ମାଗୁ ଯା ଦେଲେ
ଶୁଣି ତ ଥିବୁ ପୁରାଣେ
ବୃଥା ହୋଇବ କି ଜଣାଇବାର ତୁ
ପ୍ରଣାମ କର ଚରଣେ ।୩।

କୃପାକୁପଣେ କେ କଳାର ପିଆଇ
ଦେଇଥିଲା ବିଷ ବକ୍ଷୀ
ଦୋଷ ଯେନା କିସ ଦଣ୍ଡିବେ ? ଜନନୀ-
ଗଣରେ ଦେଲେ ଗତିକ ।୪।

ନୃପ ମୁନି ଗୋପୀ ସୀତା ପିତୃଙ୍କର
ଶନ୍ତୁଷ୍ଟ ଅସ୍ମାମୋକ୍ଷ
କରିଛୁ ଯା ନାମମାନକେ, ସେ ପ୍ରଭୁ
ହୋଇଅଛନ୍ତି ପ୍ରତ୍ୟକ୍ଷ ।୫।

ବାରଣାବତ-ପରିତ୍ରାଣ-ଘୋଷଣ
ବ୍ରହ୍ମାଣ୍ଡ ଭିଉ ଫଟାଇ
ବାହାର ଯାଇଛି, ନ କର ସ୍ମରଣ
ଦୁଃଖୀ ହେଉ କାହିଁପାଇଁ ।୬।

କୁରୁସଭାତଳେ ଡାକବାରୁ ଦେଲେ
ଯାହା ଦେଲେ ଦ୍ରୌପଦୀଙ୍କି
ଆଜ ତାହା, ପୁଣି ବୋଲ ମୁଁ ତା ଋଣୀ
କହୁଅଛନ୍ତି ଯେ ଡାକ ।୭।

---

୩ । ଦାମୋଦର—ସୁଦାମା; ୪ । ବକ୍ଷୀ—ପୂତନା

ଭକ୍ତବନ୍ଧୁପଣ ଭାରତ ଯୁଦ୍ଧରେ
ଭୀଷ୍ମଠାରେ ଦଣାଇଲେ
ନିୟମ ଲଙ୍ଘି ରଥରୁ ଡେଇଁ ରଥ-
ଚରଣ ଧରି ଧାଇଁଲେ ।୮।
ଶରଣ ପଶି ବିଭୀଷଣ ଆସିଛି
ବୋଲି ଜାଣୁ ଶୀଘ୍ରମୂରେ
ଦେଲେନ ଭେଟଭେଳକୁ ତାକୁ ଲଙ୍କା-
ପଦବୀ ଭୂରୁଲୀଳାରେ ।୯।
ବଧିପଦ ଯୁଗ ବୋଲି ହନୁମାନ
କଲାରୁ ଅନୁମୋଦନ
ବ୍ରହ୍ମା କରିବେ ରଖିଛନ୍ତି ପ୍ରଭୁ, କେ
ଏଥିରି ଜାଣିତ ମନ ? ।୧୦।
ଧ୍ରୁବ-ମନୋରଥ ପୂର୍ଣ୍ଣ କରିବାର
ପ୍ରତ୍ୟକ୍ଷରେ ତ ଦିଶୁଛି
ଚରଣ-ପଙ୍କଜ-ରଜରେ ପଥର
ପଥର-ନାରୀ ତରିଛି ।୧୧।
ପ୍ରହ୍ଲାଦ ଅର୍ଦ୍ଧେକ ଧୂଳି କଲେ ଭକ୍ତ-
ବଇରି ଯାକ୍ଷସମେରୁ
ସେ ପ୍ରହ୍ଲାଦଙ୍କ ବୃତ୍ତପ୍ରତିଜ୍ଞାରୁ ତ
ନୁହଇ ମୋ ଖେଦ ଗରୁ ।୧୨।

---

୮ । ଦଣାଇଲେ—ଦେଖାଇଲେ; ରଥଚରଣ—ଚକ୍ର; ୧୧ । ପଥର ନାରୀ—ଅହଲ୍ୟା; ୧୨ । ଯାକ୍ଷସମେରୁ—ଅସୁରଶ୍ରେଷ୍ଠ (ହିରଣ୍ୟ) ।

ଭଜନ କୀର୍ତ୍ତନ ଆତ୍ମସମର୍ପଣ
ଦାସ୍ୟ ସଖ୍ୟାଭିବାଦନ
ସ୍ମରଣ ପୂଜା ଶ୍ରବଣ ନବରତ୍ନ
କୂଟ କରିଛନ୍ତି ଦାନ ।୧୩।

ରମା ଶୁକ ବଳୀ ହନୁମାନାର୍ଜ୍ଜୁନ
ଅକ୍ରୂର ଦୈତ୍ୟତନୁଜ
ପୃଥୁ ପରୀକ୍ଷିତ ହୋଇ ଅଲଙ୍କୃତ
ଲଭିଛନ୍ତି ପଦକଞ୍ଜ ।୧୪।

ହୋଇବୁ ମୁଁ ଦୀନ ଭଜନ ସାଧନ
ନ ଜାଣଇ ଜନମରୁ
ଅଜାମିଳ ଯାମଳାର୍ଜ୍ଜୁନ କି ତପ
କରିଥିଲେ କି ପୂର୍ବରୁ ।୧୫।

ଯା ଗୁଣାର୍ଣ୍ଣବରୁ ବିନ୍ଦୁଏ ବର୍ଣ୍ଣିଲେ
ଶେଷରେ ନ ହେବ ଶେଷ
କି କହିବ ତାହା ଗୋପାଳକୃଷ୍ଣ ତ
ନୁହଇ କୀଟ ସଦୃଶ ।୧୬।



୧୩ । ନବରତ୍ନ କୂଟ—ନବଧା ଭକ୍ତି ୧୬ । ଶେଷରେ—
ସହସ୍ର ବଦନ ନାଗ ଶେଷଦେବ ବା ଅନନ୍ତଙ୍କ ଦ୍ୱାରା

(ଚଉତିଶା)

# ଶ୍ରୀଚକାନୟନ ଜଣାଣ

## ଚନ୍ଦନ ହଜୁରୀ ( ଗୁଣ୍ଡି ଖୁଣ୍ଟିଆ )

( ଊନବିଂଶ ଶତାବ୍ଦୀ )

[ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ସେବକବଂଶୀୟ ଚନ୍ଦନ ହଜୁରୀ (ଗୁଣ୍ଡି ଖୁଣ୍ଟିଆ) ସିପାହୀବିପ୍ଲବର ଅନ୍ୟତମ ନେତା ଥିଲେ । ଝାନ୍‌ସିର ରାଣୀ ଲକ୍ଷ୍ମୀବାଈଙ୍କର ସେ ଧର୍ମଭାଇ ଓ ବ୍ରିଟିଶମାନଙ୍କ ଦ୍ୱାରା ନିର୍ବାସିତ ଗଜପତି ମହାରାଜା ଦିବ୍ୟସିଂହ ଦେବଙ୍କର ବନ୍ଧୁ ସେ । କଥିତ ଅଛି, ତାଙ୍କର ସିଂହସମ ପରାକ୍ରମ ଥିଲା ଏବଂ ବହୁ ଇଂରାଜଙ୍କୁ ସେ ସ୍ୱହସ୍ତରେ ବଧ କରିଥିଲେ । ଉତ୍ତର ବୟସରେ ଶାନ୍ତିମୟ ଜୀବନ ଯାପନ କରିବା ପାଇଁ ସେ ବ୍ରିଟିଶ-ବୈରରୁ ବିରତ ହୋଇଥିଲେ ଏବଂ ଆତ୍ମାର ସଦ୍‌ଗତି କାମନା କରି ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଶରଣାଗତ ହୋଇଥିଲେ । ଏ ଜଣାଣଟିର ରଚନାଶୈଳୀ ଅତୀବ କମନୀୟ । ]

( ରାଗ ନସବୁଲ୍ୟା )

ଚକାନୟନଙ୍କୁ ପତିତ କେହୁ
ଡକାଇ ଖର ନିଶ୍ୱାସ ପକାଇ
ଡକା ପକାଇ ଗଛୁଡ଼ିଦେଉଛରେ
ବକାଇ ! ମୋ ଆର୍ତ୍ତି ଶୁଣ ସତ୍ୱରେ ହେ
ଢକ୍କା ବାଜୁଛି ମହିମା ହେ;
ଠକାଇ କରି କାଣ୍ଡେ ଗିର ନ ଶୁଣ
କାହିଁକି ବଧିରକର୍ମା ହେ ।୧।

କଷ୍ଟ-ହରଣୀ-ଦ୍ରୌପଦୀ-ଛପତ
ହରି ! ହରିଛ ପଦ୍ମ ନେତ୍ର ଶ୍ରୁତି
ଦରିଦ୍ର ସୁଦାମାକୁ କୋଟିନିଧି
ପରିପୂର୍ଣ୍ଣେ ଦେଲ କୃପାବାରିଧି ହେ
ଧରି ଯା ମହିମା ଶବ୍ଦେ ହେ
ସତ ତ ଯାଉଛୁ ହରି ! ଅନ୍ଧ ଥରେ
ନ ଶୁଣିଲ କୃପାନେତ୍ରେ ହେ ।୨।
ଆଜାନୁବାହୁ ! ମୁଁ ପତିତ ଜଣେ
ଅଜାମିଳୁଁ ବଳ ସହସ୍ର ଗୁଣେ
ଲଙ୍କା ହରି ନ ତାରିଲେ ନିକର
ଧ୍ୱଜା ଚନ୍ଦ୍ରରୁ ବହନ ଉତାର ହେ
ମଙ୍କାରେ ମୁଁ ଏହା ଭାବେ ହେ
ବଜାଇ ଜୟ-ଅଭିଯାନ-ଡିଣ୍ଡିମ
ହଜାଇ ଦେଉଛ ଏବେ ହେ ।୩।
ପିତାମାତାସେବା ମୋର ବଭଙ୍ଗ
ଲତାକୁ ଲତା ମୋ ଅସତସଙ୍ଗ
ସୀତାରେ ଅବଗାହନ ନାହିଁ ଦିନେ
ଗୀତା ଭାଗବତ ନ ଶୁଣେ କର୍ଣ୍ଣେ ହେ
ପୀତାମ୍ବର ଶବ୍ଦେ ଶଙ୍କ୍ର ହେ
କତାପ ଶମନଗୁପତୁଁ ଶରାଇବ
ମୋ ଅନ୍ତକାଳେ ଯେମନ୍ତ ହେ ।୪।

---

୪। ସୀତା—ଗଙ୍ଗା; ଶମନଗୁପତୁଁ—ଯମମହାରାଜାଙ୍କ ପାଞ୍ଜିଆ ଚିତ୍ରଗୁପ୍ତଙ୍କ ସିରସ୍ତାରୁ

ବଟପୁଟବାସୀ ଆରତତ୍ରାଣ !
ଘଟ ଘଟକେ ରହି ସବୁ ଜାଣ
ଖଟନ୍ତି ଯେଉଁ ଚରଣେ କମଳା
ହଟ କରି ମୋ ଦୁର୍ଦ୍ଦଶା ନ ଗଲା ହେ
ନଟବରବେଶଧାରି ହେ !
ଝଟତରେ ପ୍ରଭୁ ! ଶ୍ରୁତି ଡେରି ଶୁଣ
ଏ ଦୀନ-ଜନ-ଗୁହାରି ହେ ।୫।

ପାଣ୍ଡବପ୍ରିୟ ! ଦଣ୍ଡୁଛ କି ଦୋଷେ
ଦାଣ୍ଡକୁ ଏ କଥା କେମନ୍ତ ଦିଶେ
ଗୃଣ୍ଡରେ ମଇତ୍ରଛଳେ ଆପଣ
କାଣ୍ଡକରେ ନେଲ ବାଳୀର ପ୍ରାଣ ହେ
ତାଣ୍ଡବନୃତ୍ୟକାରୀଙ୍କି ହେ
ଭାଣ୍ଡ କରି ଦେଲ ବସ୍ତୁକୂଟମାୟା
ଲଗାଇ ଦେଇ ଭେଳକି ହେ ।୬।

ଆର ତ କେହି ନାହିଁ ମୋର ପ୍ରଭୁ
ଆରତତ୍ରାଣ, ପରିତ୍ରାଣ ସବୁ
ସାରଥି ହୋଇ ପାର୍ଥରଥେ ଶ୍ୟାମ !
ଭାରତଯୁଦ୍ଧେ ଭରତଅ ଉମ ହେ
ସାର ଘଟଣ୍ଟ ଘୋଡ଼ାଇଣ ହେ
ମାରପିଅର ତା ପରାଣ ରଖିଣ
ଲୁହାଇଛ ବଡ଼ପଣ ହେ ।୭।

---

୫ । ବଟପୁଟବାସୀ—ବଟପତ୍ରଶାୟୀ; ( ପ୍ରଳୟ କାଳରେ ଶ୍ରୀଜଗନ୍ନାଥ ବଟପତ୍ରରେ ଶିଶୁ ରୂପ ଧରି ଶୟନ କରିଥାନ୍ତି । ) ହଟ—ଛନ୍ଦ; ୬ । ଗୃଣ୍ଡ—ଶୀଘ୍ର; ତାଣ୍ଡବନୃତ୍ୟକାରୀ—ଶିବ; ୭ । ଆର—ଆଉ; ମାରପିଅର—ପ୍ରଦ୍ୟୁମ୍ନଙ୍କ ପିତା ଶ୍ରୀକୃଷ୍ଣ

କଷ୍ଟ-ହରଣୀ-ଦ୍ରୌପଦୀ-ପତି
ହରି ! ହରିଛ ପରା କେତେ ଶ୍ରୁତି
ଦରିଦ୍ର ସୁଦାମାକୁ କୋଟିନିଧି
ପରିପୂର୍ଣ୍ଣେ ଦେଲ କୃପାବାରିଧି ହେ
ଧରି ଯା ମହିମା ଗତେ ହେ
ପତି ତ ଯାଉଛୁ ହରି ! ଆଜ ଥରେ
ନ ଗୃହିଁଲ କୃପାନେତ୍ରେ ହେ ।୨।

ଆଜାନୁବାହୁ ! ମୁଁ ପତିତ ଜଣେ
ଅଜାମିଳୁଁ ବଳି ସହସ୍ର ଗୁଣେ
ଲଜ୍ଜା ହରି ନ ତାରିଲେ ନିକର
ଧ୍ୱଜା ଚକ୍ରରୁ ବହନ ଉତାର ହେ
ମଞ୍ଚାରେ ମୁଁ ଏକା ଭାବେ ହେ
ବଜାଇ ଜୟ-ଅଭିଯାନ-ଡିଣ୍ଡିମ
ହଜାଇ ଦେଉଛ ଏବେ ହେ ।୩।

ପିତାମାତାସେବା ମୋର ବିଭଙ୍ଗ
ଲିତାକୁ ଲିତା ମୋ ଅସତସଙ୍ଗ
ସୀତାରେ ଅବଗାହି ନାହିଁ ଦିନେ
ଗୀତା ଭାଗବତ ନ ଶୁଣେ କର୍ଣ୍ଣେ ହେ
ପୀତାମ୍ବର ଗତେ ଶନ୍ତ ହେ
କତାପ ଚିତ୍ରଗୁପତୁଁ ଗରାଇବ
ମୋ ଅନ୍ତକାଳେ ଯେମନ୍ତ ହେ ।୪।

---

୪। ସୀତା—ଗଙ୍ଗା; ଚିତ୍ରଗୁପତୁଁ—ଯମମହାରାଜାଙ୍କ ପାଞ୍ଜିଆ ଚିତ୍ରଗୁପ୍ତଙ୍କ ସିରସ୍ତାରୁ

ବଟପୁଟବାସୀ ଅରକ୍ଷତ୍ରାଣ !
ଘଟ ଘଟକେ ରହି ସବୁ ଜାଣ
ଖଟନ୍ତି ଯେଉଁ ଚରଣେ କମଳା
ହଟ କର ମୋ ଦୁର୍ଦ୍ଦଶା ନ ଗଲା ହେ
ନଟବରବେଶଧାରି ହେ !
ସଙ୍କଟରେ ପ୍ରଭୁ ! ଶ୍ରୁତି ଡେରି ଶୁଣ
ଏ ଦୀନ-ଜନ-ଗୁହାରି ହେ ।୫।

ପାଣ୍ଡବପ୍ରିୟ ! ଦଣ୍ଡୁଛ କି ଦୋଷେ
ଦାଣ୍ଡକୁ ଏ କଥା କେମନ୍ତ ଦିଶେ
ଗୃଣ୍ଡରେ ମଇସଛଲେ ଆପଣ
କାଣ୍ଡକରେ ନେଲ ବାଳୀର ପ୍ରାଣ ହେ
ତାଣ୍ଡବନୃତ୍ୟକାରୀଙ୍କି ହେ
ଭାଣ୍ଡ କରି ଦେଲ ବସ୍ତୁକୂଟମାୟା
ଲଗାଇ ଦେଇ ଭେଳିକ ହେ ।୬।

ଆଉ ତ କେହି ନାହିଁ ମୋର ପ୍ରଭୁ
ଅରତତ୍ରାଣ, ପରତ୍ରାଣ ସବୁ
ସାରଥି ହୋଇ ପାର୍ଥରଥେ ଶ୍ୟାମ !
ଭାରତଯୁଦ୍ଧେ ଭରତିଆ ଡମ ହେ
ସାର ଘଣ୍ଟ ଘୋଡ଼ାଇଣ ହେ
ମାରପିଅର ତା ପଣ ରଖିଣ
ଲୁହାଇଛ ବଡ଼ପଣ ହେ ।୭।

---

୫ । ବଟପୁଟବାସୀ—ବଟପତ୍ରଶାୟୀ; ( ପ୍ରଳୟ କାଳରେ ଶ୍ରୀଜଗନ୍ନାଥ ବଟପତ୍ରରେ ଶିଶୁ ରୂପ ଧରି ଶୟନ କରିଥାନ୍ତି । ) ହଟ—ହଠ; ୬ । ଗୃଣ୍ଡ—ଶୀଘ୍ର; ତାଣ୍ଡବନୃତ୍ୟକାରୀ—ଶିବ; ୭ । ଅଉ—ଆଉ; ମାରପିଅର—ପ୍ରଦ୍ୟୁମ୍ନଙ୍କ ପିତା ଶ୍ରୀକୃଷ୍ଣ

ପକ୍ଷହୀନ-ଜନ-ରକ୍ଷଣ ହୋଇ
ଲକ୍ଷଣ-ଅଗ୍ରଜଙ୍କୁ ଆଶ୍ରେ କଲି
ପକ୍ଷଦାୟକ ହେ ଲକ୍ଷଣ-ସୁଖ !
ଦକ୍ଷପଣେ ରଖିବାରେ ନିରକ୍ଷ ହେ
ଲକ୍ଷ କେ ତୁମ୍ଭର ଅଛୁ ହେ
ବକ୍ଷ ବିଦାରିଛ ନଖେ ହିରଣ୍ୟର
ପ୍ରହ୍ଲାଦ ମାନ ରଖି ହେ ।୮।
ଝଣ୍ଡାମାଳବୁହା । ଦୁର୍ଦ୍ଦଶାରହୁ
ଚଣ୍ଡାଳ ଗ୍ରାସୁଅଛୁ ଗୃହୁଁ ଗୃହୁଁ
ଭଣ୍ଡାରେ ଖଣ୍ଡା ନାହିଁ କି ମଣିମା !
ଗଣ୍ଡାକର ଦଶୁନାହିଁ ମହିମା ହେ
ହଣ୍ଡା ମୋ ଯାଉଛି ଫାଟି ହେ
ଥଣ୍ଡା କରି କୃପାଜଳ ବୃଷ୍ଟି କରି
ମୋ ଶତ୍ରୁ-ଗୃହକ-ଯାଚି ହେ ।୯।
ମନ୍ଦରଧର ନୀଳଗିରିବାସି !
କନ୍ଦରବାସୀ ପ୍ରାୟେ ଅଛ ବସି
ସନ୍ଦରନେନ୍ଦ୍ର ଧାତା ପୁରନ୍ଦର
ବନ୍ଦନ କରନ୍ତି ଯେଉଁ ପଯ୍ୟର ହେ
ଛନ୍ଦ ଗୁଞ୍ଜ ଦେବରାଜେ ହେ !
ନନ୍ଦନନ୍ଦନ-ଶ୍ରୀଚରଣାରବିନ୍ଦେ
ଚନ୍ଦନ ହରିଜୁଗ୍‌ ଭଜେ ହେ ।୧୦।

୮ । ପକ୍ଷ—ସହାୟ; ଲକ୍ଷଣସୁଖ—ଲକ୍ଷ୍ମଣଙ୍କ ସୁଖଦାତା (ଏ ଜଣାଣର ୭ ଓ ୮ ପଦ ବାଣୀକଣ୍ଠ ଶ୍ରୀ ନିମାଇଁ ଚରଣ ହରିଚନ୍ଦନ ବନ୍ଧୁ ଦୟା କରି ଯୋଗାଇଛନ୍ତି); ୯ । ହଣ୍ଡା—ଏଠାରେ ଅର୍ଥ ହୃଦୟ; ୧୦ । କନ୍ଦର—ପର୍ବତର ଗୁହା; ସନ୍ଦରନେନ୍ଦ୍ର—ଶିବ; ପୁରନ୍ଦର—ଇନ୍ଦ୍ର

(ପଞ୍ଚଦଶ)

# ଶ୍ରୀଜଗତପତିଶରଣ ଜଣାଣ

## ବଳଦେବ ରଥ—କବିସୂର୍ଯ୍ୟ

( ଊନବିଂଶ ଶତାବ୍ଦୀ )

[ କିଶୋର ଚନ୍ଦ୍ରାନନ୍ଦଚମ୍ପୂର ସ୍ରଷ୍ଟା ବଳଦେବ ରଥ କବିସୂର୍ଯ୍ୟଙ୍କ ରଚନାଶୈଳୀ ଅନୁପ୍ରାସାଦି ଅଳଙ୍କାରଯୋଗୁଁ ଅତ୍ୟନ୍ତ କମନୀୟ । କଳିଙ୍ଗର କବିଅଗ୍ରଣୀମାନଙ୍କ ମଧ୍ୟରୁ ସେ ଅନ୍ୟତମ । ଏ ଜଣାଣରେ ସେ ଛେକୋକ୍ତି ସାହାଯ୍ୟରେ ଅପୂର୍ବ ରସ ସୃଷ୍ଟି କରିଅଛନ୍ତି । ଏହାଙ୍କ ଜନ୍ମଭୂମି ଗଞ୍ଜାମ । ]

( ରାଗ—କାମବର୍ଦ୍ଧିନୀ )

କ୍ଷୀରମହୁ-ସିନ୍ଧୁ-ଜେମା-ପ୍ରାଣବନ୍ଧୁ-ତୁମ୍ଭେ ତ ଜଗତ-ପତି
ଟେକି ସମଦୃଷ୍ଟି-ପତାକାକୁ ପୁଣି ଏ କି ପକ୍ଷପାତ-ରୀତି
ହେ ମହାପ୍ରଭୁ !
କେ କି କଲା ମୁଁ ନ କଲି ?
କେ କି ଦେଲା ଅବା ମୁଁ ଅବା ନ ଦେବା
ଯେଣୁ ଏତେ ସହି ହେଲି ହେ ।୧।

ମୃଗୟୁବଣିକ ରଖିଲ ଯେ ନାଶି ମୃଗୟୁ-ବିଦ୍ୱେଷ-ଦାଉ
ଚରଣ-ପଙ୍କଜ-ସ୍ମରଣେ ବିନା ସେ କିସ କରିଥିଲା ଆଉ
ହେ ମହାପ୍ରଭୁ !
କୁମ୍ଭୀର ଗ୍ରାସନ୍ତେ ଗାଜ
ଜନେ କହିବାରେ ଅନେକପ-ରଜା
ମନେ କଲ ସିନା ମାତ୍ର ହେ ।୨।

---

୧ । ମୃଗୟୁ—ବ୍ୟାଧ; ଅନେକପ-ରଜା—ଗଜେନ୍ଦ୍ର

ନୃପସଭା ମଧ୍ୟେ ଅସ୍ଥିର ହୁଅନ୍ତେ ଦ୍ରୁପଦସୁତା ଅବର
ଧ୍ୟାନରୁ ତ ଅନ କଷ୍ଟ କରିବାର କାନେ ଶୁଣି ନାହିଁ ମୋର
ହେ ମହାପ୍ରଭୁ !
ହୃତେ ଯେ ଥାଅ ନରତେ
ଲକ୍ଷ ଦେଇଥିଲେ କାଞ୍ଚନ କେତେ କ
ପାଞ୍ଚ ପଣ୍ଡୁରାଜସୁତେ ହେ ।୩।

ରୂପରେ କେଳଣି ଉପରେ ପତାକା ଧଇଲ ଯେ କୁଜୀଳ
ଯାହା ହୋଇଥିଲ ଯାହା ହେଲ ତୁମ୍ଭ ପ୍ରସାଦବଶୁଁ କି ବଳୀ
ହେ ମହାପ୍ରଭୁ !
ଜଗତେ ତ ତାହା ଜଣା
ଅନ୍ଧକୁ ନେଇ ମିଳିବାରୁ ହୋଇଛୁ
ଯଶଉଣ୍ଡିମ ବାଜଣା ହେ ।୪।

ନଳକୁବରଙ୍କ ଚରିତ ଯେ ବୁଧେ ଜଲପୁଅଛନ୍ତି ଏବେ
ପ୍ରହ୍ଲାଦକୁ ମହା ଅହ୍ଲାଦ ଅପଣ କରିଛ ପରା ପୂର୍ବେ
ହେ ମହାପ୍ରଭୁ !
ମୁନିଙ୍କ ଅଶ୍ରମଶିଳା
ତୁମ୍ଭଙ୍କୁ କ ଉପକାର କରି ରୂପବତୀ
ହୋଇ ପୁଣ ବଲସିଲ୍ଲ ହେ ।୫।

---

୩ । କାଞ୍ଚନ—ସୁନା; ୪ । କେଳଣି—ରଥ
୫ । ନଳକୁବର—କୁବେରଙ୍କ ଦୁଇ ପୁତ୍ର ନାରଦଙ୍କ ଶାପରେ ଗୋପରେ ଯାମଳାର୍ଜ୍ଜୁନ ଗଛ ହୋଇଥିଲେ; ଶ୍ରୀକୃଷ୍ଣଙ୍କ ସ୍ପର୍ଶରେ ବୈକୁଣ୍ଠଗାମୀ ହେବାକଥା ପୁରାଣ ପ୍ରସିଦ୍ଧ ।

କେବଳ ସୁଦାମା ଦ୍ୱିଜ ନିଜ ଶକ୍ତି ଅନୁରୂପ ଆଚରିଲେ
ଗଳିତାଏ ଖୁଦ ନଜର ଦେବାରୁ ଫଳ ତାଦୃଶ ଲଭିଲେ
ହେ ମହାପ୍ରଭୁ !
ଆଉ କେ କି କଲେ କହ
କାହା କାମକୁମ୍ଭ ପୂରିନାହିଁ ତୁମ୍ଭ
ଅହେତୁକ ଅନୁଗ୍ରହ ହେ ।୬।

ଅନନୁଗତ ତୋ ମନ ନୋହେ ବୋଲି
ଆଜ୍ଞା ହେବ ପଛେ ମୋତେ
ନାମ ସ୍ୱସୁତର ଡାକିବାରୁ ଧନ୍ୟ ଧାମ ଲଭିଲେ କେମନ୍ତେ
ହେ ମହାପ୍ରଭୁ !
ଅଜାମିଳ ମହୀସୁର
କେଉଁ ସାବଧାନ ହୋଇ ନାମଗାନ
କରିଥିଲେ ସେ ତୁମ୍ଭର ହେ ।୭।

କବରବ ସ୍ୱମୁଖରୁ ଯୋଡ଼ି କରଯୁଗକୁ ସମ୍ମୁଖରେ କହେ
ଭଲ ଅବା ମନ୍ଦ କରିବାକୁ ତ ମୁଁ ମୋହର ଆୟତ୍ତ ନୁହେ
ହେ ମହାପ୍ରଭୁ !
ସବୁ ତୁମ୍ଭ ଇଚ୍ଛା ସିନା
ରଖ ବା ନ ରଖ ମୋହର ଗତି ତ
ପତିତପାବନବାନା ହେ ।୮।



୬ । କାମକୁମ୍ଭ—କାମନା ରୂପକ କଳସୀ; ୭ । ମହୀସୁର—ବ୍ରାହ୍ମଣ

( ଛତଶ )

# ଶ୍ରୀ ଛଟୋକ୍ତି ଜଣାଣ

## ବଳଦେବ ରଥ—ଜାବନ୍ମୂର୍ତ୍ତି

( ଉଦୀବଂଶ ଚୌଧୁରୀ )

[ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ସର୍ପ ସହିତ ସାମ୍ୟ ଦେଖାଇ ଏ ଜଣାଣଟି ରଚିତ ହୋଇଅଛି । ଭଗବାନଙ୍କୁ ନିଜର ଅର୍ତ୍ତି ଜଣାଇବା ନିମନ୍ତେ ଭକ୍ତର ସବୁ ପ୍ରକାର ସ୍ୱାଧୀନତା ରହିଅଛି । ଏ ଜଣାଣରେ ଏହାହିଁ ପ୍ରମାଣିତ ହୋଇଅଛି । ]

( ରାଗ କାମୋଦୀ )

ବାଧିଲ୍ଲ ଜାଣି କ୍ଷମା କର ନୋହିଲେ ରମା-
ରମଣ ଦଣ୍ଡେ ଦିଅ ଠାଳି
ତୁମ୍ଭଙ୍କୁ ଜଗନ୍ନାଥ ! ଆଜ ମୋ ମନୋରଥ
ପୂର୍ଣ୍ଣ କରିବ ଦେଇ ଗାଳି
ହେ କୃପାନିଧି !
କରୁଣାସିନ୍ଧୁ ବୋଲି କରି
କହନ୍ତି ବୁଧେ ଉଚ୍ଚସ୍ୱରି
କାଳସର୍ପ ଆପଣ କବଳ କର ପ୍ରାଣ-
ପବନମାନଙ୍କୁ ସବୁରି ହେ ।୧।

---

୧ । ବାଧିଲ୍ଲ ଜାଣି········ମୋ ଦ୍ୱାରା ଯଦି ବାଧୁଥାଏ ତେବେ କ୍ଷମା କର ଅଥବା ଶାସ୍ତି ଦେଇ ମୋତେ ନିପାତ କରିଦିଅ; ବୁଧେ—ପଣ୍ଡିତମାନେ; କବଳ କର—ଗ୍ରାସ କର

ଜଳଧିଅନ୍ତେ ନିଜ ଘର ଦେବାଧିରାଜ
ବୁଡ଼ାଇଦେଇଛ ଆପଣ
ତୁମ୍ଭର ସିନା ଧନ ଐଶ୍ୱର୍ଯ୍ୟ ନୋହେ ଆନ !
ଜନର ଘରବୁଡ଼ାପଣ
ହେ କୃପାନିଧି !
ଭୁଜଙ୍ଗ ସାମ୍ୟ ଆମ୍ଭ ତୁଲେ
ବତାଅ ବୋଲି ଆଜ୍ଞା ହେଲେ
ମୁଁ ନୁହେଁ ଘରବୁଡ଼ା ବତାଇବାକୁ ଛୁଡ଼ା
ହୋଇଛୁ ବତାଇବ ଭଲେ ହେ ।୨।
ତାହାକୁ ବୋଲି ଚକ୍ରୀ ଚକ୍ର ଥିବାରୁ ଚକ୍ରୀ
ତୁମେ ତ ତ୍ରୈଲୋକ୍ୟ ମଣ୍ଡଳେ
ବେଶରେ କୁଣ୍ଡଳୀ ଯେ ଆପଣ ତ ବିଶେଷେ
ଭୂଷିତ ମକରକୁଣ୍ଡଳେ
ହେ କୃପାନିଧି !
ଅଦୃଶ୍ୟ ହେବାରୁ ତା ପାଦ
ତାହାକୁ ବୋଲି ଗୂଢ଼ପାଦ
ଆପଣା ଚରଣ ତ ବିରଞ୍ଚିଙ୍କ ଗୁପତ
କାହିଁ ତାଠାରୁ ତୁମ୍ଭ ଭେଦ ହେ ।୩।

---

୨ । ଜଳଧିଅନ୍ତେ······ଦ୍ୱାରକାପୁରକୁ ସମୁଦ୍ର ଗର୍ଭରେ ବୁଡ଼ାଇ ଦେଇଅଛ; ଭୁଜଙ୍ଗ ସାମ୍ୟ ଆମ୍ଭ ତୁଲେ······ଯଦି ଆମ୍ଭେ କପଟ ସାପ ସଙ୍ଗେ ସମାନ ଏହା ପ୍ରମାଣ କର ବୋଲି ଆପଣ ଆଜ୍ଞା କରନ୍ତି;

୩ । ସାପ ମୁଣ୍ଡରେ ଚକ୍ର ଚିହ୍ନ ଥିବାରୁ ସେ ଚକ୍ରୀ, ଆପଣଙ୍କର ସୁଦର୍ଶନ ଚକ୍ର ଥିବାରୁ ଆପଣ ମଧ୍ୟ ଚକ୍ରୀ; ସାପ ଚେଙ୍କା ବାନ୍ଧି ଥିବାରୁ କୁଣ୍ଡଳୀ, ଆପଣଙ୍କ କାନରେ ମକରକୁଣ୍ଡଳ ଥିବାରୁ ଆପଣ କୁଣ୍ଡଳୀ; ବିରଞ୍ଚି—ବ୍ରହ୍ମା

ହେବ ବା ଅବଧାନେ ତାହାକୁ ତ୍ରିଭୁବନେ
ବୋଲନ୍ତି କାକୋଦର ନରେ
ଏ ତ୍ରିବିଷ୍ଟପଯାକମଧ୍ୟେ ଗୋଟିଏ କାକ
ନାହିଁ କି ତୁମ୍ଭର ଉଦରେ
ହେ କୃପାନିଧି !
ବପୁରେ ସେ ଅତି ଲମ୍ପଟ
ଖ-ବର ବିହଙ୍ଗମରାଟ
ବଧିବେ ସେ ଲମ୍ପଟ, ଆପଣ ସେ ତ ପଟ-
ପଟଳେ ହୋଇଅଛ ସ୍ପୃଷ୍ଟ ହେ ।୩।
କାନ ନ ଥାଇ ଆଖି ଭୁଜଙ୍ଗଠାରେ ଦେଖି
ନୟନଶ୍ରବା ବୋଲି ତାକୁ
କହ କମଳାନନ ! କାହିଁକି ତୁମ୍ଭ କାନ
ସର୍ପ ବୋଇଲେ ଚଳିବାକୁ
ହେ କୃପାନିଧି !
ଫଣୀକାୟାକୁ ବୋଲି ଭୋଗ
ଥିବାରୁ ସେ ଦୁଇ ସଂଯୋଗ
ତାହାକୁ ବୋଲି ଭୋଗୀ, ତୁମ୍ଭେ କି ନୁହ ଭୋଗୀ
କରୁ ଯା ଅଛ ମହାଭୋଗ ହେ ।୪।

---

୪ । କାକୋଦର—ବକ୍ରଗତିରେ ଚାଲୁଥିବା; ବପୁ—ଗାତ୍ର; ଖ-ବର—ପକ୍ଷିଶ୍ରେଷ୍ଠ ଗରୁଡ଼; ଲମ୍ପଟ—ପ୍ରିୟ; ପଟପଟଳ—ବସ୍ତ୍ରମାନ, ସାପ ଦେହ ତଥା ଆପଣଙ୍କ ଦେହ ତସ ବଟନ୍ତି;
୫ । ଚଳିବାକୁ—କ୍ରୁଦ୍ଧ ହେବାକୁ; ଫଣିକାୟା—କାଡ଼ (କାଡ଼କୁ ଭୋଗ କହନ୍ତି, ତେଣୁ ସାପ ଭୋଗୀ; ଆପଣ ଅଶେଷ ଭୋଗ କରୁଥିବାରୁ ଆପଣ ମଧ୍ୟ ଭୋଗୀ)

ଯେବେ ଭୁଜଙ୍ଗ ନୁହ କାଳୀୟଠାରେ ଦ୍ରୋହ
କଲ କାହ୍ନିକ ଏଡ଼େ କରି
କେବେ ନ ଥିଲେ ଗୋପେ ତୁମ୍ଭେ କାହ୍ନିକ କୋପେ
ତାହାକୁ ଦେଲ ପ୍ରାଣେ ମାରି
ହେ କୃପାନିଧି !
ତାହାର ନାମେ ତୁମ୍ଭ ନାମ
ଅଦ୍ୟାପି ହୋଇଛି ଜନମ
ଯେବେ ସ୍ୱଗୋତ୍ରଦ୍ରୋହ ନ ଥାନ୍ତା ନାଥ ! କହ
କପାଇଁ ହୁଅନ୍ତା ଏ କ୍ରମ ହେ ।୬।

ଜାଣି ବାଳୁତକାଳୁ ଲବଣୀ ହାଣ୍ଡିରୁ
ଧରି ପାଶରେ ହୃଦେ ଭିଡ଼ି
ଦୟା ନ କରି ତଳେ ଯମଳା ତରୁତଳେ
ଜନମି ନେଇ ଦେଲେ ଛାଡ଼ି
ହେ କୃପାନିଧି !
ଯେତେକ ଥିଲା ଗର୍ଭେ ପଡ଼ି
ଜୀର୍ଣ୍ଣ ହେବାକୁ ହେଲ ହିଡ଼ି
ତିନି ଜଗତଯାକେ ଜାଣି ତ ଥିବେ ଲୋକେ
ସେ ତରୁ ଯିବାର ଉପୁଡ଼ି ହେ ।୭।

---

୬ । ଦେଲ ପ୍ରାଣେ ମାରି—( କିନ୍ତୁ ମହାପ୍ରଭୁ କାଳୀୟକୁ ପ୍ରାଣରେ ମାରି ଦେଇ ନ ଥିଲେ); ତାହାର ନାମେ—ସେ କାଳୀୟ, ତୁମ୍ଭେ କାଳିଆ; କ୍ରମ—ଖ୍ୟାତି

ବ୍ରହ୍ମା ଶଙ୍କର ମୁଖ୍ୟଦେବଙ୍କଠାରୁ ମୋକ୍ଷ
ପ୍ରଧାନ ଧନ ଗୁଡ଼ା କଲ
ପଣ୍ଡତଙ୍କୁ ନ ପୋଷିବାରୁ କ୍ରମରେ ଅଶୀ-
ବିଷ ପରି ଏ ଆଭାସିଲ
ହେ କୃପାନିଧି !
ଅସାବଧାନେ ଗଲେ ମିଳି
ଗୋଟିକୁ ଗିଳଇ କୁଣ୍ଡଳୀ
ଅଗଣିତ ବ୍ରହ୍ମାଣ୍ଡ ହାଣ୍ଡି ମଣ୍ଡଳୀ ଭୁଣ୍ଡ
କରି ଆପଣ ଅଛ ଗିଳି ହେ ।୮।

ଅହ୍ନ ତ ବୋଲାଏ ସେ ଏକଅକ୍ଷରକୋଷେ
ଅହ୍ନଲ ବୋଲାଅ ନପୁଣ
ହଂସ ପ୍ରମୁଖ୍ୟାସୁର ବିପକ୍ଷମାନଙ୍କର
ଅହ୍ନତ ହୋଇଛ ଆପଣ
ହେ କୃପାନିଧି !
ଜଗତେ ଧରି ଯେବେ ଅହ୍ନ
ଘଟ ଗୋଟିକେ ନେଇ ଥୋଇ
ଅଛ ଯାଇତ ଘଟେ ବଞ୍ଚାଅ ଯେ କପଟେ
ମୋର ହାବୁଡ଼ୁ ଯିବ କାହିଁ ହେ ।୯।

୮। ପ୍ରଧାନ ଧନ ଗୁଡ଼ାକଲ—ମୋକ୍ଷକୁ ଏକଗୁଡ଼ିଆ କରି ନିଜ କୁକ୍ଷିକୁହରେ ରଖିଲ; ଅଶୀବିଷ—ସାପ; ୯। ଏକାକ୍ଷରକୋଷ—ନ୍ମ୍ନ ନାମକ ଶବ୍ଦ ଅଭିଧାନ; ଅ—ବସ୍ତ୍ର ଘଟ—କଳସୀ; ଘଟ—ଦେହ; ବଞ୍ଚାଅ—ଠକିଦିଅ

କେଉଁ ଶିଶୁ କାମିନୀସ୍ତନ୍ୟପାନରୁ ଘେନ
ଜୀବନ ଯାଇଛନ୍ତି ଜଗତେ
ଶୋଷି ପୂତନା ପ୍ରାଣ ଦେନବାର ଜୀବନ
ନାହିଁ କି ତୁମ୍ଭ ଦନ୍ୟ ଖାତେ
ହେ କୃପାନିଧି !
ଅଛନ୍ତି ଲକ୍ଷ ଲକ୍ଷ ସାକ୍ଷୀ
ସକଳ କଥା ମୋର ଦେଖି
ବ୍ରଜେ ଭୁଜଙ୍ଗ-ଶୂଳ କର ମୁଁ ନାହିଁ ବୋଲି
କୁଆଁ ତ ଥରେ ଚକା ଆଖି ହେ ।୧୦।

ନୂହେ ଆବାସ ଘର ମାନସ-ସରୋବର
ଶୁଭିଲା ନାଗେଶ୍ୱର ରବ
କ୍ଷଣେ ନ ରହି ଧାଇଁଗଲଟି କାହିଁପାଇଁ
ଆଜ ନ ଥିଲେ କେତେ ଦେବ
ହେ କୃପାନିଧି !
ମନ୍ତ୍ର ଜାଣିବା ଲୋକବଶ
ହୁଅନ୍ତି ସବୁ ଆଶୀବିଷ
ମନ୍ତ୍ରାଧୀନ ତ ତୁମ୍ଭେ ବନ୍ଦୀଭଅଛ ଦମ୍ଭେ
ଭୁଜଙ୍ଗ ନୁହଁ ଆଉ କିସ ହେ ।୧୧।

୧୦ । ଭୁଜଙ୍ଗ—ଲମ୍ପଟ ବ୍ୟକ୍ତି; ଶୂଳ—ଖାଡ଼ି; ୧୧ । ନାଗେଶ୍ୱର—ଗଜଶ୍ରେଷ୍ଠ; ବନ୍ଦୀଭଅଛ—ଠକିଛ

କହଇ କବିସୂର୍ଯ୍ୟ ନାଥ ନୁହ ଅଧୈର୍ଯ୍ୟ
ଏଣିକି ମହତ ନ ଯାଉ
ମୁଁ ତୁମ୍ଭ ପରିଗ୍ରହ ଜାଣିଲେ କି ବିଗ୍ରହ ?
ଇତରେ ନ ଜାଣନ୍ତୁ ଆଉ

ହେ କୃପାନିଧି !
ଯେତେବେଳେ ମୋ ଅନ୍ତ ହେବ
ଏତିକି ମାତ୍ର ମୋତେ ଦେବ
ପରେତରାଟଦ୍ୱାରସୀମାରୁ ପରିହାର
କରାଇ ଯହିଁ ତହିଁ ନେବ ହେ ।୧୨।



୨୨ । ମୁଁ ତୁମ୍ଭ ପରିଗ୍ରହ—ମୁଁ ତୁମ୍ଭ ସେବକ ହୋଇ ତୁମ୍ଭଙ୍କୁ ପୁଣି ଏହା କହୁଛି ଲୋକେ ଜାଣିଲେ କଅଣ ହେବ ବିଗ୍ରହ କରନ୍ତୁ; ପରେତରାଟ—ପ୍ରେତରାଟ ଅର୍ଥାତ ଯମ; ପରିହାର କରାଇ—ଉଦ୍ଧାର କରାଇ

( ସତତରଶ )

# ଶ୍ରୀ ପ୍ରାଣବନ୍ଧୁ ଜଣାଣ

## ବଳଭଦ୍ର

( ଅଷ୍ଟାଦଶ ଶତାବ୍ଦୀ )

[ ବଳଭଦ୍ରନାମା ଏହି କବିଙ୍କର ଅନ୍ୟ କୌଣସି ଗୀତ ଆବିଷ୍କୃତ ହୋଇ ନାହିଁ । ତାଙ୍କ ବିଷୟରେ ମଧ୍ୟ ସବୁ ତଥ୍ୟ ଅଜ୍ଞାତ । ତଥାପି ଏ ଭଜନଟିର ମାଧୁରୀ ପାଇଁ ସେ ଲୋକମୁଖରେ ଜୀବିତ ରହିଅଛନ୍ତି ଓ ରହିଥିବେ । ]

( ରାଗ ଚନ୍ଦ୍ରାକାମୋଦୀ )

ଦୀନବନ୍ଧୁ ! କୃପାସିନ୍ଧୁ ! ମୋ ବନ୍ଧୁ କେ ହୋଇବ
(ଯେବେ) କୃପାରେ କୃପଣ ହେବ ? । ଘୋଷା ।

ବିପଦନାଶନବାନା ବିପଦକୁ ବଜ୍ରସେହ୍ନା
ଉଡ଼ାଉଛ ହେ ଇନ୍ଦିରାଧବ !
ବିପଦରେ କେ କାହାଁକି ଶରଣ ଯିବ
ଜୀବଧବ[1] ନ ଶୁଣିଲେ କର୍ମକୁ ଆଦରିବ ।୧।

ଥାଉ ଥାଉ ଗଙ୍ଗାକୂଳେ ତୃଷାର୍ତ୍ତି କି ତୃଷାବଳେ
ପୟ[2] ବିନା ପ୍ରାଣ ହରାଇବ
ତୁମ୍ଭେ ବୁଝ ନିନ୍ଦା ଲଜ୍ଜା କାହାକୁ ହେବ
କଳ୍ପବୃକ୍ଷ ହୋଇ ଯେବେ କର୍ମକୁ ନ ଫଳିବ ।୨।

---

୧। ଜୀବଧବ—ପ୍ରାଣବନ୍ଧୁ ; ୨। ପୟ—ଜଳ

ହେ ପ୍ରଭୁ କରୁଣାଗ୍ରଣି !            ଭବଜଳେ ଗଲି ଭାସି
ପଛେ ଥାଇ ନାବ କି କରିବ
ଚକ୍ରଧର ! ଚକ୍ର କପାଁ କରେ ବହିବ
ବଙ୍କ ହେଲା ଧାର ବୋଲି ଜଗତେ ବାଜିଣିଯିବ ।୩।

ଶୁଣ ବା ନ ଶୁଣ ବାଟରେ            ଜଣାଉଛି ଶ୍ରୀଛାମୁରେ
କହିଁଥରେ ଦୟା ତ ହୋଇବ
ବୋଲେ ବଳଭଦ୍ର ଯା ଶ୍ୱଶୁର ଯାଦବ !
ଶିରସ ମୂଳରେ ଯେବେ କୁଳିଶ ବରଷା ହେବ ।୪।



୩ । ଧାର—ଦାନ୍ତ; ବାଜିଣ ଯିବ—ଜଣା ପଡ଼ିଯିବ, ପ୍ରକଟ ହୋଇଯିବ; ୪। କୁଳିଶ—ବଜ୍ର

( ଅଠତରଣ )

# ଶ୍ରୀ ଚକାଆଖି ଜଣାଣ

## ସାନନ୍ଦ ଦ୍ୱିଜ

(ଅଷ୍ଟାଦଶ ଶତାବ୍ଦୀ)

[କବି ବଳଭଦ୍ରଙ୍କ ପରି କବି ସାନନ୍ଦ ଦ୍ୱିଜ ମଧ୍ୟ ତାଙ୍କର ଗୋଟିଏ ଦୁଇଟି ଭଜନ ନିମନ୍ତେ ଅମର ଯଶର ଅଧିକାରୀ ହୋଇଅଛନ୍ତି ! ତାଙ୍କ ଭଜନ ରସିକ ଭକ୍ତମାନଙ୍କ ଗଣ୍ଠିଧନ ।]

( ଗଉ ଜନ୍ତ୍ର )

କାହାକୁ ମୁଁ କରିବଇଁ ସାକ୍ଷୀ
ହେ ଚକାଆଖି ! । ଘୋଷା ।

ଡାକିଲେ ନାମ ଆରତେ ନ ଶୁଣ କପାଁ ଛୁରତେ
କି ବସୁଚ ହୃଦଗତେ ନ ଦେଉ ଶ୍ରବଣପଥେ
ଜପି ନାମ
କଣ୍ଠ ଗଲା ଶୁଖି ହେ । ୧ ।

ମୋ ଶୋଷ ଘଟ ମାତର ତୁମ୍ଭ କୃପା ଅକୂପାର
ରଖିଛ ରଙ୍କ ଉଦର ଭୁଷା ନ ହରଇ ମୋର
ହେଉଅଛ
ନିଷ୍ଠୁର କାହିଁକି ହେ । ୨ ।

ନେବ ବୋଲି କହୁ ନାହିଁ ମନେ କରିଅଛ ଯାହିଁ
ସେ କଥା ମନରୁ ମୁହିଁ ବଳିଗଲି ମନ ଝୁଛି
ଗୋପପୁରେ
ଧନ୍ୟ-ଯଶ ଗୁଣି ହେ । ୩ ।

---

୨। ଘଟ—ମାଠିଆ, ଅକୂପାର—ସମୁଦ୍ର

ପାଇ ନାନା ଉପବନ ହେବାରେ ହରଷ ମନ
ଅଳସ କି ଅପଘନ ଘାରିଲା ନିଦ୍ରା ନୟନ
ନ ଶୁଣୁଛ
ସେ କାରଣୁ ନିକ ହେ । ୪ ।

କହଇ ସାନନ୍ଦ ଦ୍ୱିଜ ଅହେ ପ୍ରଭୁ ଚତୁର୍ଭୁଜ
ଗଲାନି କି ପୂର୍ବ ତେଜ ଦୁଃଖିଦୁଃଖ ଯା ନ ବୁଝ
ହୋଇବାରୁ
ନୀଳାଚଳେ ସୁଖୀ ହେ । ୫ ।



୪ । ଅପଘନ—ଶରୀର

( ଅଣଚ୍ଳଣ )

# ଶ୍ରୀ କରୁଣାକର ଜଣାଣ

## ସାନନ୍ଦ ଦ୍ୱିଜ

(ଅଷ୍ଟାଦଶ ଶତାବ୍ଦୀ)

( କଳହଂସ କେଦାର ଛନ୍ଦ ବୃତ୍ତ )

କରୁଣାକର ! ଅହେ କରୁଣା କର
ଆରତେ ଡାକୁଅଛୁ ଯୋଡ଼ିଣ କର ହେ
ଖେଦ ଜଞ୍ଜାଳ ମୋର ହର ସତ୍ୱରେ
ଖଟି ମୁଁ ଅଛୁ ପଦ ତୁମ୍ଭ ପଦ୍ମରେ ହେ । ୧ ।
ଏ ଘୋର ସଙ୍କଟରୁ କର ଉଧାର
କଆଁ ସଅନ୍ଧାର ତ ଜଗଦଗର ହେ
ଘୋଟିଲା ସବୁ ମୋରେ ଦଶେ ମୂଢ଼ର
କେଣିକି ଯିବ ନାହିଁ ଉପାୟ ମୋର ହେ । ୨ ।
କରୁଛୁ ନିବେଦନ ତୁମ୍ଭ ଛାମୁରେ
ଭାସିଯାଉଛୁ ପଡ଼ି ଶୋକସାଗରେ ହେ
ବେଳକୁ ବେଳ ମୋର ବଢ଼ିଲା କଷ୍ଟ
ତୁମ୍ଭେ ତ ନିଶ୍ଚିନ୍ତରେ ଦେଖୁଛ ହଠ ହେ । ୩ ।
ହେ ଜଗବାହା ! ମୋର ଆଉ କେ ସାହା
କଷ୍ଟ ଉପରେ କଷ୍ଟ ଦେଉଛ ଯାହା ହେ
ରଖିଲେ ରଖ ଅବା ମାରିଲେ ମାର
ସାନନ୍ଦ ଦ୍ୱିଜ କରେ କୋଟି ଜୁହାର ହେ । ୪ ।

---

୨ । ମୂଢ଼ର—ନଷ୍ଟପ୍ରଜ୍ଞ, ନିଃସନ୍ଦେହଭାବରେ; ୩ । ହଠ—ହଠହଠା

୧୨୫

( ଗୀଳଣ )

# ଶ୍ରୀ ମାନ ଉଦ୍ଧାରଣ ଜଣାଣ

## ଉପେନ୍ଦ୍ର ଭଞ୍ଜ—କବିସମ୍ରାଟ

(ଅଷ୍ଟାଦଶ ଶତାବ୍ଦୀ)

[ କବିସମ୍ରାଟ ଗଞ୍ଜାମ ଘୁମୁସର ରାଜବଂଶର ଦାୟାଦ । ବାଣୀଙ୍କ ଅପାର କରୁଣାରୁ ସେ ରାଜୈଶ୍ୱର୍ଯ୍ୟରୁ ବଞ୍ଚିତ ହୋଇଥିଲେ । ତାଙ୍କ ସର୍ବଜନବୋଧ ସରଳ ରଚନାମାନଙ୍କ ମଧ୍ୟରୁ ଏ ଜଣାଣଟି ଅନ୍ୟତମ ।]

( ରାଗ ହନୁମନ୍ତତୋଡ଼ି )

ମାନଉଦ୍ଧାରଣ ! କରେ ହେ କାରଣ
ଶରଣ ମୁଁ ତୁମ୍ଭ ପାଦତଳେ ।ଘୋଷା।
ଅନାଥର ନାଥ ନୀଳଗିରିନାଥ
ଜଗନ୍ନାଥନାମ ନୀଳାଚଳେ
ମହୋଦଧିକୂଳେ କଳ୍ପବଟମୂଳେ
ବିଜେ କରିଛ ବଡ଼ ଦେଉଳେ ।୧।
ଲକ୍ଷେ ଯୋଜନରେ ଗଜ ଡାକ ଦେଲା
ତା ଡାକ ଶୁଣିଲ ପଶାଖେଳେ
ମାର୍କଣ୍ଡ ଋଷି ଯାଉଥିଲେ ଭାସି
ଉଦରେ ଧଇଲ ବାମକରେ ।୨।

---

୦ । ମାନଉଦ୍ଧାରଣ—ମାନରକ୍ଷକ; ୨ । ମାର୍କଣ୍ଡ ଋଷି..... ପ୍ରଳୟ କାଳର କଥା—ଜଗନ୍ନାଥ ମହାପ୍ରଭୁ ପ୍ରଳୟ ଜଳରେ ବଟପତ୍ର ଉପରେ ଶୋଇରହି ମାର୍କଣ୍ଡେୟଙ୍କୁ ନିଜ ଗର୍ଭରେ ସ୍ଥାନ ଦେଇଥିଲେ

କଣ୍ଟିକ୍ୟାକୁ ଗଣି ଥ୍ଥାଳ ବନାଇଲ
ବନ୍ଧ ଯେ ବାନ୍ଧିଲ ସିନ୍ଧୁଜଳେ
ଲଙ୍କାରେ ରାବଣ ବଧିଲ ଆପଣ
ଜନକନନ୍ଦନୀ-ସୀତା-ଛଳେ ।୩।
ଯୁଧିଷ୍ଠିର ବୋଲେ ହସ୍ତିନାକୁ ଗଲ
ଭୋଜନ କଲ ବିଦୁର ଘରେ
କୁରୁସଭାତଳେ ଦ୍ରୌପଦୀ ଶରଣ
କୋଟି ବସ୍ତ୍ର ଦେଲ ଅବହେଳେ ।୪।
ବଣପୋଡ଼ ବେଳେ ଘୋର ଦାବାନଳୁଁ
ଉଧରି ରଖିଲ ବ୍ରଜବାଳେ
କହେ ଉପଇନ୍ଦ୍ର କବି-କୁଳ-ଚନ୍ଦ୍ର
ଶରଣ ମୁଁ ତୁମ୍ଭ ପାଦତଳେ ।୫।



( ଏକତ୍ରିଂଶ )

# ଶ୍ରୀ ଗିରିଧାରୀ ମୁରାରି ଜଣାଣ

## ସୁବୁଦ୍ଧି

(ସପ୍ତଦଶ ଶତାବ୍ଦୀ)

[ ସୁବୁଦ୍ଧି ନାମଧାରୀ ଏ କବିଙ୍କର ଅନ୍ୟ କୌଣସି ଗୀତ ଆବିଷ୍କୃତ ହୋଇ ନାହିଁ । ଲୋକମୁଖରେ ବହୁକାଳ ହେଲା ଏ ଜଣାଣଟି ପ୍ରଚଳିତ ରହିଅଛି । ଏହାର ଜନପ୍ରିୟତା ଖୁବ୍ ବେଶୀ । ]

( ରାଗ କଲ୍ୟାଣ )

ଦୀନବନ୍ଧୁ ହେ ଗିରିଧାରୀ ମୁରାରି !
ଦିନ ନ ଗଲା ଏତେ ଦୁଃଖେ ମୋହର । ଘୋଷା ।
ଶରଣ ରଖ କାରଣ କର ହେ ହରି !
ବାରଣ ତ ଯାଉନାହିଁ କର୍ମ ମୋହର
ବାରିନିଧି-ଦୁହିତା-ପତି ବିନୁ ରକ୍ଷିତା
ନାହିଁ ମହୀରେ କେହି ତୁମ୍ଭ ବିନୁ ଶକତା
ଧରି ବିଷୟୀ ଜାଲେ ହୋଇଲି ମନମତା
ଦିନମଣି ମଣିଲି ତିମିର ।୧।

ପିତାସତ୍ୟ ପାଳିଣ ଅରଣ୍ୟେ ବିହରି
ସଙ୍ଗେ ଘେନି ଲକ୍ଷ୍ମଣ ଜନକକୁମାରୀ
ବାଳି ଦଶାନନଙ୍କୁ ଶରେ ଛେଦିଲ ତାଙ୍କୁ
ନୃପତିପଣ ଦେଇ ସୁଗ୍ରୀ ବିଭୀଷଣଙ୍କୁ
ରଖିଣ ଅଯୋଧେ ଚଳିଗଲ ନିଜ ରାଜ୍ୟକୁ
କୁହାରୁଛି ନ ଶୁଣ ଗୁହାରି ।୨।

---

୧ । ବାରଣ ତ ଯାଉନାହିଁ—ଖଣ୍ଡିତ ହୋଇ ପାରୁନାହିଁ; ଶକତା—ସମର୍ଥ; ହୋଇଲି ମନମତା—ବେଭୁଲ ହେଲି; ଦିନମଣି—ସୂର୍ଯ୍ୟ; ତିମିର—ଅନ୍ଧାର

ବସୁଦେବଙ୍କ ପ୍ରଭୁ ସହି ନ ପାରି
ଦେବକୀର ଗର୍ଭେ ଆପେ ଜନମେ କରି
ସ୍ୱର୍ଗୁ ଦେବତା ଯାଇଁ ଗୁହାରି କଲେ ତହୁଁ
ଜନ୍ମ ହୋଇଣ ଗୋପପୁରେ ବଢ଼ିଲ ଯାଇଁ
ଗୋପାଙ୍ଗନାଙ୍କୁ ରଖି କଂସକୁ ମାରି ତହୁଁ
ଉଗ୍ରସେନଙ୍କୁ ନୃପତି କରି ।୩।

କୁରୁପତିସଭାତଳେ ପାଞ୍ଚାଳୀ ହରି !
ବିବସନ କଲାବେଳେ ତୁମ୍ଭଙ୍କୁ ସ୍ମରି
କାହୁଁଥିଲ ଆପଣ କୋଟି ବସ୍ତ୍ର ଦେଇଣ
ଆକାଶରୁ ବସନ ତଳେ ଖସିପଡ଼ିଣ
ପାଞ୍ଚାଳୀ ଅଙ୍ଗେ ବସ୍ତ୍ର ହୋଇଲା ଆବରଣ
କେଡ଼େ ବିପତ୍ତି ଦେଲ ନିବାରି ।୪।

କହଇ ଦୀନ ସୁବୁଦ୍ଧି ଶୁଣ ହେ ହରି !
ମୋ ଗୁଣ ହୀନ ପାମର କି କହି ପାରି ?
ଶୁଣ ହେ ଭଗବାନ ! ମୋର କରମ ହୀନ
କରି ସୁଦୟା ବାରେ କଷ୍ଟ ଯାଉ ଦୁଃଖୀଣ
ପାପରାଶି ମୋ ଅଙ୍ଗୁଁ କରି ଶୀଘ୍ରେ ଦହନ
ଚିତ୍ତରେ ନାମ ରହୁ ତୁମ୍ଭରି ।୫।



( ବସ୍ତାଳଣ )

# ଶ୍ରୀ ଚକାଡୋଳା ଭଜନ

## ଭରତ ଦାସ

( ଅଷ୍ଟାଦଶ ଶତାବ୍ଦୀ )

[ ଭକ୍ତ ଭରତ ଦାସଙ୍କର ଏ ଭଜନ ଓ ଏହାର ପରବର୍ତ୍ତୀ ଜଣାଣଟି ଛଡ଼ା ଅନ୍ୟ କୌଣସି ଗୀତ ଆବିଷ୍କୃତ ହୋଇନାହିଁ । ତାଙ୍କ ପଦଯୋଜନାରେ ମର୍ମସ୍ପର୍ଶିତା ଗୁଣ ରହିଅଛି । ତେଣୁ ତାଙ୍କ ଗୀତ ଦୁଇଟି ଭଜନାମୋଦୀ ଭକ୍ତମାନଙ୍କ ପକ୍ଷରେ ଅମୂଲ୍ୟ ନିଧି । ]

( ସ୍ୱର ସିନ୍ଧୁଭୈରବୀ )

ଚକାଡୋଳା ଚକ୍ଷୁଣକଳା
ଚଉବର୍ଗଦାୟୀ ନନ୍ଦର ବଳା
ଶୁଣିବା ମାତ୍ରକେ ଦୁରିତ ପଳାଏ
ଯୋଗକ୍ଷେମ ନ ରହେ ସଂସାର-ଜାଲା । ଘୋଷା ।

ଚମତ୍କାର ବେଶ ପ୍ରଭୁ ହୃଷୀକେଶ
ଚରଣ ଶୁଶ୍ରୂଷନ୍ତି ଯା'ର କମଳା
ଚଉଦ ବ୍ରହ୍ମାଣ୍ଡଯାକର ବଲ୍ଲଭ
ଚମ୍ପାଦସ୍ତୁଣିଆ ମେ ଭାବଭୋଳା ।୧।

---

୧। ବଲ୍ଲଭ—ପ୍ରଭୁ, ନାଥ; ଚମ୍ପାଦସ୍ତୁଣିଆ—ଚମ୍ପାଫୁଲ ଓ ଦସ୍ତୁଣା ପତ୍ରରେ ଭୂଷିତ ହୋଇଥିବା

ଗୁରୁଧାମେ ସାର ଶ୍ରୀପୁରୁଷୋତ୍ତମ
କ୍ଷେତ୍ରବର ନାମେ ଯେବଣ ଖଳା।
ଚଟକ ନୀଳକନ୍ଦର ମୃଗପତି
ଭଙ୍ଗ ଭିଆଇଲେ ଭକତମେଳା ।୨।
ଚଢ଼ି ନନ୍ଦଘୋଷେ ଅତ୍ୟନ୍ତ ଉଲ୍ଲାସେ
ଲଗାନ୍ତି ରଥ ଉତ୍ସବ ଲୀଳା।
ଚନ୍ଦନପାଠୀ କି ମନୋହର ଦଶେ
ଅଳକଆବଳି କୁଣ୍ଡଳଖେଳା ।୩।
ଚତୁର୍ଦ୍ଧା ମୂରତି ଜଗତର ପତି
ଚତୁର ସାମନ୍ତ ସେ କଳାଧଳା।
ଶତରଞ୍ଜନିଆ ଗର୍ବଗଞ୍ଜନିଆ
ଚରଣେ ଭରତ ମତ୍ତ ଭ୍ରସଳା ।୪।



୨। ଖଳା—ଅସ୍ଥାନ; ଚଟକ—ପୁରୀର ବାଲୁକାଦ୍ରିବିଶେଷ, ଯାହାକୁ ଦେଖି ଶ୍ରୀଚୈତନ୍ୟ ମହାପ୍ରଭୁ ଗୋବର୍ଦ୍ଧନଗିରି ଭ୍ରାନ୍ତିରେ ଅଚେତ ହେଉଥିଲେ; ମୃଗପତି—ସିଂହ, ୩। ଅଳକଆବଳି—ଚୂର୍ଣ୍ଣ କୁନ୍ତଳ, କପାଳରେ ପଡ଼ିଥିବା ଛୋଟ ଛୋଟ କୁଞ୍ଚ କୁଞ୍ଚିଆ କେଶ, ୪। ଚତୁର୍ଦ୍ଧାମୂରତି—ଶ୍ରୀ ଜଗନ୍ନାଥ, ଶ୍ରୀ ବଳଭଦ୍ର, ଶ୍ରୀ ସୁଭଦ୍ରା ଓ ଶ୍ରୀ ସୁଦର୍ଶନ; ଭ୍ରସଳା—ଭ୍ରସଳ ଅର୍ଥାତ ଭ୍ରମର

( ଚୌୟାଳିଶ )

# ଶ୍ରୀ କଳାକୃଷ୍ଣ କମଳଆଖି ଜଣାଣ

ଭରତ ଦାସ

( ଅଷ୍ଟାଦଶ ଶତାବ୍ଦୀ )

( ରାଗ ରେଖୁପ୍ତ )

କଳାକୃଷ୍ଣ   କମଳଆଖି  !
ଡାକଲେ ନ ଶୁଣ କାହିଁପାଇଁ କି ?  । ଘୋଷା ।

ଶ୍ରୀନୀଳକନ୍ଦରେ ବିଜେ କରିଅଛ
ମିଛେ ଭଣ୍ଡିବାକୁ ଲୋଡ଼ୁଅଛ କି ?
ଅହଲ୍ୟାତାରଣ  ଭୟୁନବାରଣ
ବାଳକ ମାରି ରଖିଲ ସୁଗ୍ରୀକ ।୧।

ମହାବଳବନ୍ତ ବିଶ୍ରବାର ସୁତ
ଛେଦ ଧକାଇଲ ଦଶଶିର କି
ଲକ୍ଷେ ଯୋଜନରେ ଗଜ ଡାକ ଦେଲା
ତା ଡାକ ଶୁଣିଲ ମଣାଖେଳେ କି ।୨।

କୁରୁସଭାତଳେ ଦ୍ରୌପଦୀ ଚିନ୍ତିଲା
ତାକୁ କୋଟି ବସ୍ତ୍ର ଦେଇଥିଲ କି
ଭାରତ ଯୁଦ୍ଧରେ ଘଣ୍ଟ ଘୋଡ଼ାଇଣ
ରଖିଥିଲ ଭରତଆ ପକ୍ଷୀକି ।୩।

ସେ ଯୁଦ୍ଧରେ ଥିବେ ଅର୍ଜୁନ ରଥରେ
ଆପଣ ସାରଥି ହୋଇଥିଲ କି
ଭଣଇ ଭରତ ଆହେ ଜଗନ୍ନାଥ !
ମୋ ମନ ରହିବ ନୀଳାଚଳେ କି ।୪।



( ଚଉବଳଣ )

# ଶ୍ରୀ କମଳାସାଇଁ ଭଜନ

## ଚକ୍ରଧର

( ଊନବିଂଶ ଶତାବ୍ଦୀ )

[ ଚକ୍ରଧର କବିଙ୍କର ଏହି ଗୋଟିକ ମାତ୍ର ଭଜନ ହସ୍ତଗତ ହୋଇଅଛି । କଳିଙ୍ଗରେ ଏହାର ଯଥେଷ୍ଟ ଜନପ୍ରିୟତା ରହିଅଛି । ]

(ରାଗ ରେଖ୍ତା)

ଭଜ ମନ ! କମଳାସାଇଁ
ଭଜିଲେ ଏ ଦୁଃଖ ରହିବ ନାହିଁ
ଅତି ଆରତରେ ମୃଗୁଣୀ ଡାକିଲା
ବ୍ୟାଧଭୟରୁ ଦେଲେ ମୁକୁଳାଇ । ଘୋଷା ।

କୁରୁସଭାମଧେ ଦ୍ରୌପଦୀ ଡାକିଲା
କୋଟି ବସ୍ତ୍ର ଲାଗି ଦେଲେ ଗୋସାଇଁ !
ଭୀମହସ୍ତେ ଜରାସନ୍ଧକୁ ବଧିଲେ
ଲକ୍ଷେ ରାଜା ବନ୍ଦୀ ଉଦ୍ଧାର ପାଇଁ ।୧।

ରୁଧିରନଦୀ ଯେ ଯାତ ତା'ଲ ହେଲା
ଭାରତଯୁଦ୍ଧରେ ସଂଗ୍ରାମ ଭୂଇଁ
ଭରତଆ ପକ୍ଷୀ କଷ୍ଟ ନ ସହିଲେ
ଘଣ୍ଟି ଘୋଡ଼ାଇଲେ ତା ପରେ ନେଇ ।୨।

ଗଜକୁ କୁମ୍ଭୀର ନାଶିବାର ବେଳେ
ହୃଦେ ଶଚ୍ରାକଲ୍ଲ ଲକ୍ଷ୍ମ ଲଗାଇ
ଦ୍ୱାରକାପୁରରେ ପଶା ଖେଳୁଥିଲେ
ଚକ୍ର ପେଷିଦେଲେ ରଖିବାପାଇଁ ।୩।

ଯେଉଁ ପଦ୍ମପାଦ ପ୍ରହ୍ଲାଦ ଶକ୍ର
ସ୍ୱର୍ଗେ ଇନ୍ଦ୍ରପଦେ ରହିଲେ ଯାଇଁ
ସେହୁ ପଦ୍ମପାଦେ ଶରଣ ମାଗୁଛୁ
ଦୀନ ଚକ୍ରଧର ଲକ୍ଷ୍ମ ଲଗାଇ ।୪।



( ପଞ୍ଚତ୍ରିଂଶ )

# ଶ୍ରୀ ଚତୁର୍ଯୁଗ ଅବତାର ଜଣାଣ

## ଗୋପୀନାଥ

(ଊନବିଂଶ ଶତାବ୍ଦୀ)

[ ଭକ୍ତ ଗୋପୀନାଥଙ୍କର ଏ ଜଣାଣଟି କଳିଙ୍ଗର ସର୍ବତ୍ର ଗୀତ ହୋଇଥାଏ । ତାଙ୍କ ବିଷୟରେ କୌଣସି ତଥ୍ୟ ଅଦ୍ୟାବଧି ହସ୍ତଗତ ହୋଇନାହିଁ । ]

( ରାଗ ଶୁଦ୍ଧସାବେରୀ )

ଜୟ ଜଗବନ୍ଧୁ ଯଦୁ-କୁଳ-ଇନ୍ଦୁ
ଜୟ ଯାମଳାଭଞ୍ଜନ
ଜୟ ଜନାର୍ଦ୍ଦନ ଜଗତଜୀବନ
ଜୟ ଯଶୋଦାନନ୍ଦନ ।ଘୋଷା।

ସତ୍ୟରେ ମର୍ତ୍ତ୍ୟରେ ନରହରି ! କରେ
ବଧିଲ ବୀର ହିରଣ୍ୟ
ପ୍ରହଲ୍ଲାଦେ ଇନ୍ଦ୍ର- ପଦକୁ ଗୋବିନ୍ଦ !
ବଳେ କରିଛ ପ୍ରଦାନ ।୧।

ତ୍ରେତୟା ଯୁଗରେ ରାମ ଅବତାରେ
ପିତୃସତ୍ୟେ ଗଲ ବନ
ଲଙ୍କାରେ ରାବଣ ବଧିଲ ଆପଣ
ଭକ୍ତକୁ କଲ ରାଜନ ।୨।

ଦ୍ୱାପରେ ଗୋପରେ କୃଷ୍ଣ ଅବତାରେ
ମୋହିଲ ଗୋପୀଙ୍କ ମନ
କଂସ କେଶୀ ନାଶି ଭୂଭାର ଉଣ୍ଠାପି
ରାଜା କଲ ଉଗ୍ରସେନ ।୩।

କଳିଯୁଗେ ହରି ବଜେ ନୀଳଗିରି
ଶ୍ୱେତ ପୀତ କୃଷ୍ଣ ବର୍ଣ୍ଣ
କମଳପଦ୍ମରୁଁ ବହେ ମକରନ୍ଦ
ମଧୁକର ଗୋପୀ-ମନ ।୪।



୪ । ମକରନ୍ଦ—ମଧୁ; ମଧୁକର—ଭ୍ରମର

( ଛୟାଳିଶ )

# ଶ୍ରୀ ଶରଣରକ୍ଷଣ ଜଣାଣ

## ରାମଚନ୍ଦ୍ର

(ଅଷ୍ଟାଦଶ ଶତାବ୍ଦୀ)

[ କବି ରାମଚନ୍ଦ୍ରଙ୍କର ଏ ଜଣାଣଟି ଭକ୍ତମାନଙ୍କର ଅମୂଲ୍ୟ ଧନ । ତାଙ୍କର ଅନ୍ୟ କୌଣସି ଗୀତ ଆବିଷ୍କୃତ ହୋଇନାହିଁ । ]

( ରାଗ ଚକ୍ରକେଦାର )

ଦୀନବାନ୍ଧବ ହୋଇ ଦୀନେ ଦୟା ନୋହିଲା
ତୋ ଭରସା କରି ହରି ! ବ୍ୟର୍ଥେ ପ୍ରାଣ ଗଲା । ଘୋଷା ।

ଜଗବନ୍ଧୁ ହେ !
ଯେତେ ହୁରେ ଯେତେ ଯେତେ ମୋକ୍ଷଣ ହେଲା
ତୁମ୍ଭରେ ଭରସା କରି ଦ୍ରୁପଦରାଜକୁମାରୀ
ଶୁଣିଛୁ ଥିଲ ଉଧରି
ମୋ ଦୁଃଖ ନ ଲାଗିଲା ।୧।

ପତିଶାପେ ଘୋରବନେ ଥିଲା ଅହଲ୍ୟା
ଲାଗି ଶ୍ରୀଚରଣରେଣୁ , ମୋକ୍ଷ ହେଲା ସେ ପାଷାଣୁ
ମୋ ଭରସା ଥିଲା ତେଣୁ
କର୍ମକୁ ନ ଥାକଲା ।୨।

---

୧ । ମୋକ୍ଷଣ—ଉଦ୍ଧାର

ଗଜରାଜ ଦେବରାଜ ! ଜଳେ ଡାକିଲା
ବିଷମ ଗ୍ରାହ ମୁଖରୁ ଉଧାରିଛ ଶରା-ମାରୁ
ସେ କାଳ କରୁଣା ହରି !
ଏ କାଳେ କେଣେ ଗଲା ।୩।

ଶୁଣିଅଛୁ ଚକ୍ରପାଣି ! ବେଶ୍ୟା ପିଙ୍ଗଳା
ସର୍ବ ପାପର ଆକର ଥିଲା ଯେ ତାର ଶରୀର
ତାକୁ କରିଛ ଉଧାର
ମୋ ଦୁଃଖ ନ ଲାଗିଲା ।୪।

ରାମଚନ୍ଦ୍ର ହେ ଗୋବିନ୍ଦ ! ତାହା ଶୁଣିଲା
ଦ୍ୱିଜଙ୍କୁ ଅନ୍ନ ବଢ଼ାଇ ବୋଲୁଛ ମୁଁ ରଖିନାହିଁ
ଆଜ କିଏ ଅଛେ ହରି !
ପାଣ୍ଡବଙ୍କୁ ରଖିଲା ? ।୫।



୩ । ଗ୍ରାହ—କୁମ୍ଭୀର

( ଯନ୍ତ୍ରାଗ୍ନଳଣ )

## ୬୧. ଦୀନବନ୍ଧୁ ଦଇତାରି ଜଣାଣ

**ବନମାଳୀ ଦାସ**

(ଅଷ୍ଟାଦଶ ଶତାବ୍ଦୀ)

( ରାଗ କାମୋଦୀ )

ଦୀନବନ୍ଧୁ ଦଇତାରି !
ଦୁଃଖ ନ ଗଲା ମୋହର
ଚହଲ କି ନଷ୍ଟ ଚରିତ୍ର ମାଲାଚଲେ ବଜେ କର । ଘୋଷା ।

ଲକ୍ଷେ ଯୋଜନରେ ଗଜ ଡାକିଲା ହେ ଦେବରାଜ
ତା ଡାକକୁ ଚତୁର୍ଭୁଜ ! ଶୁଣିଛ ଶ୍ରବଣ ଡେର ।୧।

କୁରୁପତି-ସଭାତଳେ ଦ୍ରୌପଦୀ-ଅଠଙ୍ଗ-କାଳେ
କୋଟି ବସ୍ତ୍ର ଦେଇ ହେଲେ ଲଜ୍ଜାରୁ କରିଛ ପାର ।୨।

ବଳବନ୍ତ ପ୍ରଭୁ ବୋଲି ବଳେ ମୁଁ ଯେ ଆଶା କଲି
ଦେଖୁ ଦେଖୁ ଭାସିଗଲି କେ ଏଥୁ କରିବ ପାର ।୩।

ରଖ ବା ନ ରଖ ମୋତେ ଶରଣ ତୋ ପାଦଗତେ
କହେ ବନମାଳୀ ଗୀତେ ବସିଅଛୁ ଧ୍ୟାନ କର ।୪।



( ଅଠର୍ଗ୍ଳଣ )

# ଶ୍ରୀ ବ୍ରଜବଲ୍ଲବୀନାୟକ ଜଣାଣ

## ଯଦୁମଣି ମହାପାତ୍ର

(ଊନବିଂଶ ଶତାବ୍ଦୀ)

[ ପ୍ରବନ୍ଧପୂର୍ଣ୍ଣଚନ୍ଦ୍ରର କବି ଯଦୁମଣି ମହାପାତ୍ର ନୟାଗଡ଼ ନିବାସୀ । ସେ କବିସୂର୍ଯ୍ୟ ବଳଦେବ ରଥଙ୍କ ସମସାମୟିକ । କଳିଙ୍ଗର କବିଅଗ୍ରଣୀମାନଙ୍କ ମଧ୍ୟରେ ସେ ମଧ୍ୟ ଅନ୍ୟତମ । ତାଙ୍କ ରଚନା-ଚାତୁରୀ ଓ ଆଳଙ୍କାରିକ ପଦ ଯୋଜନା ଘେନି ସେ ଅତ୍ୟନ୍ତ ସମ୍ମାନିତ । ସେ ରହସ୍ୟରେ ମଧ୍ୟ ବିଖ୍ୟାତ ବୀରବଲଙ୍କ ପରି ଧୁରନ୍ଧର । ଯଦୁମଣି ରହସ୍ୟ ପୁସ୍ତକ ସର୍ବତ୍ର ବିଖ୍ୟାତ । ]

( ରାଗ ଯଦୁକୁଳ କାମୋଦୀ )

ବ୍ରଜବଲ୍ଲବୀବୃନ୍ଦ-ନାୟକ ହେ
ପ୍ରଣତସର୍ବସୁଖଦାୟକ ହେ
ବଲ୍ଲବରାଜକୁମାର ବୃନ୍ଦା-ଅରଣ୍ୟର ମାର
ବ୍ରଜେଶ୍ୱରୀଙ୍କ ଦୁଃଖଦାୟକ ହେ । ଘୋଷା ।
ସ୍ଫୁଟ-ସରସିରୁହ-ଲୋଚନ ହେ
ଅଖିଳ-ଭବଭୟ-ମୋଚନ ହେ
ସ୍ୱପରିବାରସମୂହ- ପାଳିତ ସୌମ୍ୟବିଗ୍ରହ
କୃଷ୍ଣେଶ୍ୱରୀ-ପଦାବ୍ଜ-ଅର୍ଚ୍ଚକ ହେ ।୧।
ନବ ତରୁଣ ନବ ନାଗର ହେ
ନଟତିଳକ ରସସାଗର ହେ
ନୟନ-ଆନନ୍ଦ-ଘନ ସୁନ୍ଦର ଶ୍ରୀ ଅପଘନ
ନୀଳେନ୍ଦୀବର-ନେତ୍ରଧାରକ ହେ ।୨।

---

୦ । ବଲ୍ଲବୀ—ଗୋପବାଳା; ବଲ୍ଲବ—ଗୋପାଳ ୧ । ସ୍ଫୁଟ—ଫୁଟିଲ୍ଲ; ସରସିରୁହ—ପଦ୍ମ

ରସିକାକୁଳ-ପରିହାସକ ହେ
ସୁରସଲାସ-ମୃଦୁ-ଲାସ୍ୟକ ହେ
ରମଣୀୟ ଲଳିତାଙ୍ଗ ଅନଙ୍ଗ ତରଙ୍ଗ ରଙ୍ଗ
ରହସ୍ୟାମୃତ-ଭାଷା-ଭାଷକ ହେ ।୩।

ତପନସୁତାତଟସନ୍ନଟ ହେ
ଶକଟଭଞ୍ଜା ରତିଲମ୍ପଟ ହେ
ଋଷି-ମାନସ-ହଂସ ତୃଣାବର୍ତ୍ତାଦି ଧ୍ୱଂସ-
କାରକ ମୁରଲୀବାଦକ ହେ ।୪।

ଶିଖି-ଶିଖଣ୍ଡ-ପରିଲକ୍ଷିତ ହେ
କଚ-ଚିକୁର-ଗଭା-କୁଞ୍ଚିତ ହେ
ଶ୍ରୀମତୀ-ସ୍ତନ-ହେମ- କୁମ୍ଭଯୁଗ ସୁଷମ
-ମର୍ଦ୍ଦନକାରୀ ସୁଖଦାୟକ ହେ ।୫।

ମଧୁଦ୍ୱିଷ ମଦନଗୋପାଳ ହେ
ମହାନାଗର ରସଭୂପାଳ ହେ
ମଧୁ-ସୁବଳ-ଦାମ ସଙ୍ଗିଆ ପୂର୍ଣ୍ଣକାମ
ବାମ ଦକ୍ଷ ଶ୍ୟାମକାମପାଳକ ହେ ।୬।

ଯଦୁନନ୍ଦନ ଜଗଦ୍‌ବନ୍ଦନ ହେ
ଯାମଳାର୍ଜ୍ଜୁନ-ତରୁ-ଭଞ୍ଜନ ହେ
ଖେଦ ଯଦୁମଣିର ହର ଯାଦବବୀର !
ଶୋକପାପକାମାଦବମର୍ଦ୍ଦନ ହେ ।୭।

---

୩ । ଲାସ୍ୟକ—ନୃତ୍ୟକାରୀ; ୪ । ପରିଲକ୍ଷିତ—ଶୋଭିତ
୬ । ମଧୁଦ୍ୱିଷ—ମଧୁସୂଦନ, ବାମଦକ୍ଷ—ବାଁ ଡାହାଣ ହୋଇ ବିରାଜମାନ କରିଥିବା ଶ୍ରୀଜଗନ୍ନାଥ (ଶ୍ରୀକୃଷ୍ଣ) ଓ ଶ୍ରୀବଳରାମ

# ଶ୍ରୀ ଚିକ୍କଣକାଳିଆ ଜଣାଣ

## ବନମାଳୀ ଦାସ

( ଅଷ୍ଟାଦଶ ଶତାବ୍ଦୀ )

( ରାଗ ଗୁଜ୍ଜରୀ )

ଚକାଡୋଳା ଚିକ୍କଣ କାଳିଆ ହେ !
ଧକାର ! ମୋ କଥା ଶୁଣ
ଠକାଠକ ଖଣ୍ଡେ ଚଳାବ ନାହିଁଟି
ପକାଇ କହୁଛୁ ରାଣ । ଘୋଷା ।

ଡଙ୍କା ବାଜୁଅଛି ଚଉଦ ବ୍ରହ୍ମାଣ୍ଡେ
ତୁମ୍ଭର କେତନ ଗୁଣ
ଢକ୍କା ଜଣେ ବୋଲି ଆଗୁ ଜାଣିଥିଲି
ଡକାଇଛରେ ଆପଣ ।୧।

ଣକାରଥେ ବସି ପକାଇଲ ଧ୍ୱଂସି
ନିଜ ମାତୁଳେ ଆପଣ
ଣକାର ଥିଲା ସେ ମନେ କୂଟ ପାଞ୍ଚି
ଶୁଣି ହେଲ ପିତୃରଣ ।୨।

---

୨ । ଣକାରଥ—ଅକ୍ରୂର ତାଙ୍କ ଣକା, ତା ରଥରେ ଯାଇ ଣକାରଥିଲ—ନିମନ୍ତ୍ରଣ କରିଥିଲ

ଅକାମନା ଭକ୍ତ କର ଗୋପ ଗୋପୀ
ଚରଣେ ଗଲେ ଶରଣ
ବକାଛଲେ କେ ବା ରଙ୍ଗ ରହସ୍ୟରେ
କଲେ ନିତ ସୁମରଣ ।୩।
ଅକାଳିଆ ଦାସ ବନମାଳୀ ପାଶ-
ଛଡ଼ା ହେଲେ ଏକ କ୍ଷଣ
ଡକାଇବ ନାହିଁ ନଷ୍ଟେ ଗାଳିଦେବ
ଯା ଇଚ୍ଛା ତାହା ବୋଲିଣ ।୪।



୩ । ଅକାମନାଭକ୍ତ—ନିଷ୍କାମଭକ୍ତ, ବକାଛଲେ—ବକିବା ଅର୍ଥାତ୍ ଗାଳିଦେବାରେ, ୪ । ଅକାଳିଆ—ଯେଉଁ ସେବକର ସେବା ସୁସ୍ଥିର ହୋଇନାହିଁ; ଡକାଇବ ନାହିଁ—ମୁଲହଜା ରଖିବ ନାହିଁ

( ପଚିଶ )

# ଶ୍ରୀ ଆରତଦଳନ ଜଣାଣ

## ସାଲବେଗ

( ସପ୍ତଦଶ ଶତାବ୍ଦୀ )

( ରାଗ ପ୍ରଭାତ ଭୈରବ )

ଅହେ ନୀଳଶଇଳ-ପ୍ରବଳ-ମତ୍ତ-ବାରଣ !
ମୋ ଆରତ-ନଳିନୀ-ବନକୁ କର ଦଳନ । ଘୋଷା ।
ଗଜରାଜ ଚିନ୍ତାକଲା ଥାଇ ଘୋର ଜଳେଣ
ଚକ୍ର ପେଷି ଗ୍ରାହ ନାଶି ଉଦ୍ଧରିଲ ଆପଣ ।୧।
ଘୋର ବନେ ମୃଗୁଣୀକି ପଡ଼ିଥିଲା କଷଣ
କେତେ ବଡ଼ ବିପତ୍ତିରୁ କରିଅଛ ତାରଣ ।୨।
କୁରୁସଭାତଳେ ଶୁଣି ଦ୍ରୌପଦୀର ଜଣାଣ
କୋଟି ବସ୍ତ୍ର ଦେଇ ହେଲେ ଲଜ୍ଜା କଲ ବାରଣ ।୩।
ରାବଣର ଭାଇ ବିଭୀଷଣ ଗଲା ଶରଣ
ଶରଣ ସମ୍ଭାଳି ତାକୁ ଲଙ୍କେ କଲ ରାଜନ ।୪।
ପ୍ରହ୍ଲାଦ-ପିତା ସେ ଯେ ବଡ଼ ଦୁଷ୍ଟ ଦାରୁଣ
ସ୍ତମ୍ଭରୁ ବାହାରି ତାକୁ ବିଦାରିଲ ତକ୍ଷଣ ।୫।
କହେ ସାଲବେଗ ହୀନ ଜାତିରେ ମୁଁ ଯବନ
ଶ୍ରୀରଙ୍ଗା ଚରଣତଳେ କରୁଅଛି ଜଣାଣ ।୬।



° । ମତ୍ତ-ବାରଣ—ପଗଲ ହାତୀ; ଆରତ—ଆର୍ତ୍ତି—ଦୁଃଖ; ନଳିନୀବନ—ପଦ୍ମବନ

( ଏକାବନ )

# ଶ୍ରୀ ଦର୍ଶନମାଗୁଣି ଜଣାଣ

## ସାଲବେଗ

( ସପ୍ତଦଶ ଶତାବ୍ଦୀ )

( ରାଗ କାମୋଦୀ )

ମୋତେ ସେହି ରୂପ ଦେଖାଅ ହରି
ଜମ୍ବୁ ଶ୍ରୀ ରନ୍ଧ୍ର ମଧ୍ୟେ (ବୋଲି) ଡାକେ ବାଂଶରି
ଯେଉଁ ରୂପେ ବଳିଦ୍ୱାରେ ହେଲ ଭିକାରି । ଘୋଷା ।

ତ୍ରିପାଦରେ ଦାନ ନେଇ ବଳିକି ପାତାଳେ ଥୋଇ
ତେଣୁକରି ଶୁକ୍ରମନ୍ତ୍ରୀ ନୟନରେ କୁଶ ଭରି । ୧ ।

କୈକେୟୀ ହେଲେ ଭଗାରି ରାମ ହେଲେ ବନଚାରୀ
ସଙ୍ଗତେ ସୀତାମ୍ବା ନାରୀ ଲକ୍ଷ୍ମଣ ଯା ସେବାକାରୀ । ୨ ।

ଗୋପେ ଜନମ ହୋଇଲ ବନେ ଧେନୁ ଚରାଇଲ
ଗୋପାଳପୁଅଙ୍କ ମେଳେ ନାଚୁଥାଅ ଢଳା ଢଳି । ୩ ।

ଡାହାଣେ ଶ୍ରୀ ହଳପାଣି ମଧ୍ୟେ ସୁଭଦ୍ରା ଭଉଣୀ
ବାମ ପାଶେ ବସିଛନ୍ତି ଶଙ୍ଖ-ଚକ୍ର-ଗଦାଧାରୀ । ୪ ।

କହେ ସାଲବେଗ ହୀନ ଜାତିରେ ଅଟେ ଯବନ
କଂସଅସ୍ତ୍ରମଲ୍ଲ ମାରି କାହାକୁ ନ ଅଛ ଡରି । ୫ ।



( ବାବନ )

# ଶ୍ରୀ ଭକ୍ତଜନମାଗୁଣି ଜଣାଣ

## ଦ୍ୱିଜ

( ଅଷ୍ଟାଦଶ ଶତାବ୍ଦୀ )

[ ଏ ଗୀତଟି ଭକ୍ତ କବି ଦ୍ୱିଜଙ୍କଦ୍ୱାରା ସାଲବେଗଙ୍କ ଜଣାଣର ଅନୁକରଣରେ ଲିଖିତ ହୋଇଅଛି । ଏହା ମଧ୍ୟ ଲୋକମୁଖରେ ସର୍ବତ୍ର ପ୍ରଚଳିତ ।]

( ରାଗ କାମୋଦୀ )

ମୋତେ ସେହି ରୂପ ଦେଖାଅ ହରି
ଜୟ ଶ୍ରୀ ରାଧେ ରାଧେ (ବୋଲ) ଡାକେ ବାଂଶରୀ । ପଦ ।

ଯେଉଁ ରୂପେ ବଳିଦ୍ୱାରେ ହୋଇଥିଲ ଟି ଭିକାରୀ
ତିନିପାଦ ଦାନ ନେଇ ବଳିକି ପାତାଳେ ଥୋଇ
ଯଶ ଜଗତେ ଅଛି ବିସ୍ତାରି । ୧ ।

ଗୋପପୁରେ ନନ୍ଦଘରେ ରଖିଥିଲ ବାଛୁରୀ
ଯାମଳାଅର୍ଜୁନ ଭାଙ୍ଗି ଶକଟାଦର୍ପକୁ ଗଞ୍ଜି
କୁବେରର କୁମାରଙ୍କୁ ତାରି । ୨ ।

କୁରୁପତିସଭାତଳେ ଦ୍ରୌପଦୀ ଜଣାଣ କରି
ବିବସନ ହେବା କାଳେ କୋଟି ବସ୍ତ୍ର ଦେଇ ହେଳେ
ତାକୁ ଲଜ୍ଜାରୁ କରିଛ ପାରି । ୩ ।

ଆରତେ ଡାକିଲା ଗଜ ରଖିଲ ହେ ଚକ୍ରଧାରି !
ତା ଡାକକୁ ଚତୁର୍ଭୁଜ ରକ୍ଷାକଲ ଦେବରାଜ
ଥିଲ ଟି ତୁମ୍ଭେ ଶ୍ରବଣ ଡେରି । ୪ ।

ଗହନ ବନେ ମୃଗୁଣୀ ଡାକିଲା ରଥାଙ୍ଗପାଣି !
ବେନି ଶିଶୁ ଗର୍ଭୀଏଣୀ ଚିନ୍ତିଲା ହେ ଚକ୍ରପାଣି !
ବ୍ୟାଧମୁଖରୁ ଉଞ୍ଛିଲ ତାର । ୫ ।

କହଇ ଦ୍ୱିଜ ଅଧମ ତୁମ୍ଭ ପାଦ ଧ୍ୟାନ କରି
ମୋ କର୍ମକୁ ହେଲ ବାମ ଆହେ ନବଘନ ଶ୍ୟାମ
ନ ସ୍ଫୁରିଲ ନେତ୍ରରେ ମୋହର । ୬ ।



( ତେପନ )

# ଶ୍ରୀ ଦୁଃଖଦହନ ଜଣାଣ

## ଭିକାରୀ

( ସପ୍ତଦଶ ଶତାବ୍ଦୀ )

[ ଭିକାରୀଙ୍କର 'ବେଢ଼ାବୁଲ୍ଲ ଭଜନ' ନାମରେ ଆଉ ଗୋଟିଏ ଭଜନ ଏ ସଂଗ୍ରହରେ ରଖାଯାଇଅଛି । ଏ ଦୁଇଟି ଛଡ଼ା ତାଙ୍କର ଅନ୍ୟ କୌଣସି ଗୀତ ଆବିଷ୍କୃତ ହୋଇନାହିଁ ।]

( ରାଗ ପ୍ରଭାତ ଭୈରବୀ )

ଦୀନବନ୍ଧୁ ହେ ! ବାରେ ଘେନ ଜଣାଣ
ଏ ମହାଦୁଃଖକୁ ମୋର ଶୀଘ୍ର କର ଦହନ । ଘୋଷା ।

ସତ୍ୟ ତ୍ରେତା ଦ୍ୱାପର କଳିରେ ଅବତାର
ବହିଛ ମୀନକନ୍ଦର
ହୋଇ ପର ମଣ୍ଡନ । ୧ ।

ତୁମ୍ଭ ନାମ ଶୁଣି ହନୁ ଅଇଲ ଲଙ୍କାଭୁବନୁଁ
ବିଂଶବାହୁ ବିନାଶିଣ
ବିଭୀଷଣ ରାଜନ । ୨ ।

କୁରୁପତି ସଭାତଳେ ଦ୍ରୌପଦୀ ଆତଙ୍କକାଳେ
କୋଟି ବସ୍ତ୍ର ଦେଲ ହେଲେ
ଲଜ୍ଜା ତା ନିବାରଣ । ୩ ।

ବନସ୍ତେ ଡାକେ ହରିଣୀ ରଖ ଆହେ ଚକ୍ରପାଣି !
ସେ ଡାକ କର୍ଣ୍ଣରେ ଶୁଣି
ରଖିଛ ଭଗବାନ୍ ! । ୪ ।

ଅଗାଧ ଜଳରେ ଗଜ ଉଦ୍ଧରିଲ ଦେବରାଜ !
କାକ ପଣ୍ଡ ଚତୁର୍ଭୁଜ
ହେଲ୍ଟି ଯେନ ନାମ । ୫ ।

ଶ୍ରୀଗୁରୁଦେବଚରଣେ ଚିତ୍ତ ରହୁ ଅନୁକ୍ଷଣେ
ବାଇ ଭିକାରିଆ ଭଣେ
ଦୁଃଖ କର ଦହନ । ୬ ।



( ଚଉବନ )

# ଶ୍ରୀ ନିଶ୍ଚଳମତିମାଗୁଣି ଜଣାଣ

## ବନମାଳୀ ଦାସ

( ଅଷ୍ଟାଦଶ ଶତାବ୍ଦୀ )

[ ଏ ଜଣାଣରେ କବିଙ୍କ ଗାର୍ହସ୍ଥ୍ୟ ଜୀବନର କରୁଣ ଚିତ୍ର ରହିଅଛି । ସବୁ ଜଞ୍ଜାଳମଧ୍ୟରେ କବିଙ୍କ ମନ ଇଶ୍ୱରେ ନିଶ୍ଚଳ ରହିବ, ସେଥିପାଇଁ ସେ ଆକୁଳ ନିବେଦନ କରି ଅଛନ୍ତି । ]

( ରାଗ ଦକ୍ଷିଣ କାମୋଦୀ )

ଆହେ ପ୍ରଭୁ କଳାଶ୍ରୀମୁଖ !
କାଳେ କାଳେ ମୋର ନ ଗଲା ଦୁଃଖ । ଘୋଷା ।

କ ଅବା ଶ୍ରୀମୁଖରେ ଜଣାଇବି ମୁହିଁ
ସାକ୍ଷାତେ ମୋ ଦୀନ ଅବସ୍ଥା ଦେଖ
ତେଣୁ ଶ୍ରୀମୁଖକୁ ଯାଇ ନ ପାରଇ
ଖଣ୍ଡିଏ ତ ମୋର ନ ଥାଇ ଭେକ ।୧।

ସାଉଙ୍କ ଜଞ୍ଜାଳ କୁଟୁମ୍ବଙ୍କ ଗୋଳ
ଅନ୍ତରବେଦନାସବୁ ଅଧିକ
କା ଆଗେ କହିବି କେ କଷ୍ଟ ଫେଡ଼ିବ
ସଂସାରେ ମୋ ସରି ନାହିଁ ନିରେଖ ।୨।

ମନ ମଧ୍ୟେ ମୋର ହରଷ ନ ଥାଇ
ହୃଦୟମଧ୍ୟରେ ସଦା ବିମୁଖ
ଚତୁର୍ବର୍ଗଦାତା ଆଶ୍ରେ କରି ମୁଁ ଯେ
କାହିଁରେ ଆଉ ନ ପାଇଲି ସୁଖ ।୩।

ବାତଚକ୍ର ପ୍ରାୟେ ମନ ଭ୍ରମୁଥାଇ
ଦଣ୍ଡେ ନ ରହଇ ତୁମ୍ଭର ପାଖ
କହେ ବନମାଳୀ ଶଙ୍ଖରେ ଘୁରାଇ
ଚକ୍ର ଉହାଡ଼ଣ ଘୋଡ଼ାଇ ରଖ ।୪।



୩। ବିମୁଖ—ନୈରାଶ୍ୟଜର୍ଜରିତ

( ପଞ୍ଚାବନ )

# ଶ୍ରୀ ଦୁଃଖନାଶନ ଜଣାଣ

## ବନମାଳୀ ଦାସ

( ଅଷ୍ଟାଦଶ ଶତାବ୍ଦୀ )

[ ଏ ଜଣାଣରେ ବନମାଳୀଙ୍କ ଗାର୍ହସ୍ଥ୍ୟ ଜୀବନର ଚିତ୍ର ଦେଖିବାକୁ ମିଳେ । ସେ ସଂସାର ତ୍ୟାଗ କରି ଯେଉଁ ସବୁ ଭଜନ ଓ ଜଣାଣ ଲେଖିଅଛନ୍ତି, ସେ ସବୁରେ ଏପରି ଭାବ ଦୁର୍ଲଭ ।]

( ରାଗ ସାବେରୀ—ଚନ୍ଦନଯାତ୍ରା ଭଜନ ବୃତ୍ତ )

ଦୁଃଖନାଶନ ହେ ! ସୁଖ ନ ପାଇଲି ଧନେ
ବେଳୁଁ ବେଳ ଦୁଃଖ ପ୍ରବଳ ହେଉଛି
ବିଜୁଳି ଯେସନ ଘନେ । ଘୋଷା ।

ଅନାଥର ନାଥ ନୀଳଗିରିନାଥ
ଜଗନ୍ନାଥ ଲକ୍ଷ୍ମୀସାଇଁ
ଅରକ୍ଷିତକୁ ତ ରଖି ଦେଉନାହଁ
ଭବଜଳରେ ଭସାଇ ।୧।

ଆହେ ହରି ! ମୁହିଁ ସହି ତ ନ ପାରି
ଅନ୍ତରବେଦନାମାନ
ଯେଣୁ କରି ତୁମ୍ଭେ ଦୟା ନ କଲ ହେ
ପ୍ରଭୁ ଆରତଭଞ୍ଜନ ।୨।

ଏବେ ନିଷ୍ଠୁରତା ହେଲ ମୋହ ଭଳ
ଦୁଃଖୀ ଜନ ସ୍ଥାନଠାରେ
ଦୀନ ଜନମାନେ ଗୁହାରି କରନ୍ତି
ନ ଶୁଣ କ ତୁମ୍ଭେ ବାରେ ।୩।

ପୋଡ଼ୁ ମୋ ଅଦୃଷ୍ଟ ଅନ୍ନ-ବସ୍ତ୍ର-କଷ୍ଟ
ଏବେ ବଡ଼ ପ୍ରଭୁ ଥାଉ
ବନମାଳୀ ବୋଲେ ଚଞ୍ଚଳ ମନ ମୋ
ପଦ୍ମପାଦେ ତୁମ୍ଭ ରହୁ ।୪।



( ଛପନ )

# ଶ୍ରୀ ପହୁଡ଼ଲାଗି ଭଜନ

## (ଦୀନ) କୃଷ୍ଣ ଦାସ

(ସପ୍ତଦଶ ଶତାବ୍ଦୀ)

[ ଶ୍ରୀ ଜଗନ୍ନାଥ ମନ୍ଦିରରେ ମହାପ୍ରଭୁଙ୍କ ପହୁଡ଼ଲାଗି ସମୟରେ ଏ ଗୀତଟି ଦେବଦାସୀମାନଙ୍କ ଦ୍ୱାରା ଗାନ ହୋଇଥାଏ । ମହାପ୍ରଭୁଙ୍କ ଫିହାରୀ ( ବେଶକାରୀ ) ଶ୍ରୀ ଶ୍ୟାମସୁନ୍ଦର କର ମହୋଦୟଙ୍କ ବହୁ କୃପା କରି ଏ ଗୀତକୁ ପ୍ରାପ୍ତ କରାଇ ଅଛନ୍ତି । ]

( ରାଗ କାମ୍ବୋଜୀ—ତାଳ ଝୁଲ୍ଲ )

ଜଗବନ୍ଧୁଅଙ୍କେ ରତନପଲଙ୍କେ
ପହୁଡ଼ିଲେ ସିନ୍ଧୁ-ଜେମାଦେଇଙ୍କ । ଘୋଷା ।

ଦିବ୍ୟ ସୁବାସ ଜଳ ସୁନାଝରିରେ
ଦିବ୍ୟ ସୁବାସ ପଇଡ଼ ତଳେ ଥୋଇ
କୁସୁମ ବଞ୍ଚଣୀ ଧରି କେ ବଞ୍ଚଇ
ବେନ ସଖୀ ହେଲେ କୁହାକୁହି ।୧।

ପୂଗ ଖଇର ଅଳାଇଚ ଲବଙ୍ଗ
ଯାତି ଶ୍ରୀଫଳ କରଣି ଏକ ସଙ୍ଗ
ବଟିନ କରଣି ବଡ଼ିଆ ସଜାଡ଼ି
ରତ୍ନବଟାରେ ଖଞ୍ଜିଲେ ନେଇ ।୨।

---

୨ । ପୂଗ—ଗୁଆ, ଯାତି—ଜାଇଫଳ, ଶ୍ରୀଫଳ—ନଡ଼ିଆ

କେ ବୋଲେ ଅନା ଆରେ ମୀନନୟନା
ଘନକୋଳେ କ ଚନ୍ଦ୍ର ଚକୋର ପିନା
ଝଳ ଅଙ୍ଗରେ ମରକତକୁନ୍ଦନ
ମୀନାକୁ ଫୁର୍କି ଦେଇଛୁ ବନ୍ଧ ।୩।

କହେ ଧନ କୃଷ୍ଣ ସେ ଶୋଭା ଦର୍ଶନ
ପଡ଼ିବ ଚରଣେ ହୋଇବେ ପ୍ରସନ୍ନ
ଯେଉଁ ଚରଣ କୋଟି ବ୍ରହ୍ମା ମୁନୀନ୍ଦ୍ର
ଯୋଗେନ୍ଦ୍ର ନ ପାନ୍ତି ଧ୍ୟାୟି ଧ୍ୟାୟି ।୪।



୩ । ଘନବରଣଙ୍କ କୋଳରେ ସୁନାଗୋରୀ ମହାଲକ୍ଷ୍ମୀଙ୍କ ଶୋଭାର ବର୍ଣ୍ଣନା

( ସତାବନ )

# ଶ୍ରୀ ଦୟାନିଧି ଜଣାଣ

## ସାଲବେଗ

( ସପ୍ତଦଶ ଶତାବ୍ଦୀ )

( ରାଗ ଛଳାହାରୀ )

ବାଛୁ କେ ନାମ ଦେଲୁ ଦୟାନିଧି
ଦଇତାରି ଦୟାନିଧି ଦୟାକୁ ସମହର
ନିର୍ଦ୍ଦୟ କପାଁ ହେଲ ନିରବଧି । ଘୋଷା ।

ଭଜଣ ସେ ପଦାମ୍ବୁଜ ହେଲେ ତରିଗଲ ଦ୍ୱିଜ
କାହୁଁ ସ୍ଫୁରିଲ ତାର ବଳବୁଦ୍ଧି ।୧।

ଚିନ୍ତିଲ ପ୍ରହଲଦ ଭକ୍ତ ପାଇଁ ବିଷାଦ
ସ୍ତମ୍ଭରୁ ବାହାରି ତା ପିତାକୁ ବଧି ।୨।

ଗୋପେ ରଖି ଗୋକୁଳ ଗିଳିଲ ଦାବାନଳ
କଲ ଗୋପୀଙ୍କର କାମନା ସିଦ୍ଧି ।୩।

କହେ ସାଲବେଗ ହୀନ ଏହି ମୋର ନିବେଦନ
ସେ ପାଦେ ଚିତ୍ତ ରହୁ ନିରବଧି ।୪।



( ଅଠାବନ )

# ଶ୍ରୀ ଛଳଭକ୍ତି ଜଣାଣ

## ଦୀନବନ୍ଧୁ ଦାସ

( ଅଷ୍ଟାଦଶ ଶତାବ୍ଦୀ )

[ ଦୀନବନ୍ଧୁ ଦାସଙ୍କର ଏ ଭଜନଟି ଅତ୍ୟନ୍ତ ଜନପ୍ରିୟ । ଦୀନବନ୍ଧୁ ଦାସଙ୍କ ସମ୍ପର୍କରେ କୌଣସି ତଥ୍ୟ ସୁଲଭ ନୁହେଁ । ମୁଦ୍ରକବିଶେଷରେ ଏ ଗୀତଟି ବନମାଳୀ ଦାସଙ୍କ ନାମରେ ଭଣିତା ହୋଇଥିବା ଦୃଷ୍ଟିଗୋଚର ହୋଇଅଛି । ]

( ରାଗ ମୁଖାରୀ )

ଦୀନବାନ୍ଧବ ହେ !

ଶରଣାଗତ-ରକ୍ଷଣ ଜାଣି

ଆଶ୍ରେ କରିଅଛି ହୃଦୟ ଥରୁଛି

ଥରେ ଥରେ ତୁମ୍ଭ କଥା ଶୁଣି । ଘୋଷା ।

ବଳି ମହୀପତି ସକଳ ସମ୍ପତ୍ତି

ଦେଇ ସମର୍ପିଲା ଶିର ଆଣି

ଧରି ତାକୁ ବଳେ ଗୃପିଲ ପାତାଳେ

ବିଶ୍ୱାସ ଯିବାରୁ ତୁମ୍ଭ ବାଣୀ ।୧।

କେତେ ଅନୁଗ୍ରହ ଯାଦବନୀରଧି-

ଠାରେ ହେ କମ୍ବୁରଥାଙ୍ଗପାଣି !

ରୁକ୍ ଶାମ୍ବ ଗଦ ପ୍ରଦ୍ୟୁମ୍ନ ସହିତେ

ନିଜ ବଂଶ ପକାଇଲ ହାଣି ।୨।

---

୧ ! ନୀରଧି—ସମୁଦ୍ର

କ ହେବ ଅନେକ କହିଲେ ଜନକ-
ସୁତାଠାରୁ ନାହିଁ ସୁଲକ୍ଷଣୀ
ନ ବୁଝି ତା ଦୋଷ ବ୍ୟର୍ଥେ ବହି ରୋଷ
ବନେ ନବାସିଲ ତାକୁ ପୁଣି ।୩।

ଧରଣୀତଳେ ତରଣିସୁତଭୟ
ନାଶିବାକୁ ଯେବେ ଥାନ୍ତା ପ୍ରାଣୀ
ଦୀନବନ୍ଧୁ ଦାସ ନ ମାଗନ୍ତା ପାଶ
କୋଟିଏ ସୁବର୍ଣ୍ଣ ଦେଲେ ଗଣି ।୪।



୪ । ତରଣିସୁତ—ସୂର୍ଯ୍ୟଙ୍କ ପୁତ୍ର ଯମ

( ଅଣଷଠି )

# ଶ୍ରୀ ଶ୍ରୀ ପଞ୍ଚକୋଶୀ ବାଟୋଇ ଭଜନ

## ସାରଆ ଭିକ

( ସପ୍ତଦଶ ଶତାବ୍ଦୀ )

[ସାରଆ ଭିକଙ୍କ ଏ ଭଜନଟି ଜନଗଣରେ ଅତୀବ ଜନପ୍ରିୟ । ଏ ଭଜନକୁ ପଦେ ଅଧେ ନ ଜାଣିଥିବା ଲୋକ ନାହାଁନ୍ତି କହିଲେ ଚଳେ । ଶ୍ରୀକ୍ଷେତ୍ର ଓ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀମୁଖଦର୍ଶନାଭିଳାଷୀ ସରଳପ୍ରାଣ ଭକ୍ତର ମନକଥା ଏ ଭଜନଟିରେ ଅତୀବ ମର୍ମସ୍ପର୍ଶୀ ଓ ପ୍ରାଣସ୍ପର୍ଶୀ ଭାଷାରେ ପ୍ରକାଶ ପାଇଅଛି ।

( ରାଗ ଖମାନ )

ଥକା[୧] ମନ ଚାଲ ଯିବା
ଚକାନୟନ ଦେଖିବା
ଶଙ୍ଖନାଭିମଣ୍ଡଳରେ ବେନି ନେତ୍ର ପଖାଳିବା । ଘୋଷା ।

ବାଟରେ ବାଟମଙ୍ଗଳା
ଦେଖିବା ଅଠରନଳା
ପାଞ୍ଚମନ ଏକମେଳା ନରେନ୍ଦ୍ରସ୍ନାନ କରିବା ।୧।

ପହଞ୍ଚିବା ବଡ଼ଦାଣ୍ଡେ
ସେ ରେଣୁ ପାଇବା ତୁଣ୍ଡେ
ଛତାତଳେ ରହି ଦଣ୍ଡେ ସାଧୁଙ୍କ ସେବା କରିବା ।୨।

---

୧ । ଥକା—ଏକଠାବରେ ରହୁଥିବା,

ସିଂହଦ୍ୱାରେ ଭଡ଼ାଭଡ଼
ବାଜୁଅଛୁ ବେତ ବାଡ଼
ଠେଲିଦେଇ ଯିବା ମାଡ଼ ଧକା ବାଜିଲେ ସହିବା ।୩।

ବାଇଶି ପାବଚ୍ଛେ ବଙ୍କା
ହେଉଛୁ କୈବଲ୍ୟ ରେଖା
ହାଣ୍ଡିକ ପଡ଼େ ସୀଉକା ମନରଙ୍କା ଛଡ଼ାଇବା ।୪।

ଗରୁଡ଼ ପଛରେ ଦେଖ
ହସୁଛୁ କଳାଶ୍ରୀମୁଖ
କହଇ ସାରଥା ଭକ ବଳରାମଙ୍କୁ କହିବା ।୫।



୪ । ରେଖା—ବଡ଼କୃଷ୍ଣ ।

( ଷାଠିଏ )

# ଶ୍ରୀ ବେଢ଼ାବୁଲା ଭଜନ

## ଭିକାରୀ

(ସପ୍ତଦଶ ଶତାବ୍ଦୀ)

( ରାଗ କଲ୍ୟାଣ )

ନ ଗଲୁ ମନ ! କ୍ଷେତ୍ରସ୍ଥଳକୁ
ଧନ ଦାରା ସୁତ ଆବୋର ବସିଛୁ
କେହି ନୋହେ ସଙ୍ଗ ଗଲାବେଳକୁ । ଘୋଷା ।

ତୁଳସୀଚଉରା- ଠାରେ ନୃତ୍ୟଲୀଳା
ପ୍ରଦକ୍ଷିଣ କର ଯୋଡ଼ କରକୁ
ମଧ୍ୟେ ପଞ୍ଚକୋଶୀ ପ୍ରଭୁ ଛନ୍ତି ବସି
ସେଠାରୁ ଦେଖ ତୁ ନୀଳଚକ୍ରକୁ
ଧ୍ୱଜାଖଣ୍ଡିକୁ ଚାହିଁ ଆଗକୁ
ଚଉକ ଛନ୍ତି ଅଠରନଳାକୁ । ୧ ।

ସେ ଅଠରନଳା ପଶ୍ଚିମରୁ ଜଳା
ବହିଯାନ୍ତେ ପଥ ପୂର୍ବଭାଗକୁ
ଜନକପୁର ବାଲି ଆପେ ହରି ବୁଲି
ଯେ ରେଣୁ ନ ମିଳେ ବ୍ରହ୍ମାଶିବକୁ
ଧାଇଁ ତାହାଙ୍କୁ ଚଉବାହାକୁ
ବଜାଏ ଡମ୍ବରୁ ଚଢ଼ି ଷଣ୍ଢକୁ । ୨ ।

---

୦ । କ୍ଷେତ୍ରସ୍ଥଳକୁ—ପୁରୁଷୋତ୍ତମକୁ; ୧ । ଚଉକ—ଚଉଆଳ ୨ । ଜନକପୁରୀ ବାଲି—ନନ୍ଦ ମହାରାଜାଙ୍କ ରାଜଧାନୀ ବାହାର ବାଲି (ଗୁଣ୍ଡିଚା ବାଡ଼ ବାହାର ବାଲି)

ଧନ୍ୟ ବଡ଼ଦାଣ୍ଡ ସର୍ବ ପାପଖଣ୍ଡ
ସକଳ ତୀର୍ଥ ସେବନ୍ତ ତାହାକୁ
ଗୋରୁ ବିପ୍ର ମାରି ଗୁରୁପତ୍ନୀ ହରି
ଯେଠାବକୁ ଗଲେ ଦହେ ପାପକୁ
ତଳେ ହସ୍ତକୁ ଦେଇ ମସ୍ତକୁ
ଗଡ଼ଘାଲ ଶୁଅ ବଡ଼ଦାଣ୍ଡକୁ । ୩ ।

ଛତା ପୋତ ସାଧୁ ବୈଷ୍ଣବ ମହନ୍ତ
କରୁଛନ୍ତ ଲୀଳା ଗାଇ ନାମକୁ
କଣ୍ଢୁଆ ଗଞ୍ଜାଇ ବଡ଼ା ବଡ଼ା ଖାଇ
ଡାକୁଛନ୍ତ ସେ ମୁକତଧାମକୁ
ଚଉବାହାକୁ ଧାଇଁ ତାହାଙ୍କୁ
ମିଳୁଛି ଅବଢ଼ା ଛେଙ୍କବେଳକୁ । ୪ ।

ସେ ଅରୁଣ ସ୍ତମ୍ଭ ମେରୁ ସରି ଦମ୍ଭ
ଦେଖ ସିଂହଦ୍ୱାରେ ଗଜସିଂହକୁ
ବାଇଶ ପାବଛ ଲଗା ତହିଁ ହସ୍ତ
କୈବଲ୍ୟପସରା ବେନ ପାଶକୁ
ଗୁହାଁ ଆଗକୁ ବକାକଣାକୁ
ବହି ନେଉଛନ୍ତ ବଡ଼ଦାଣ୍ଡକୁ । ୫ ।

---

୩ । ଗଡ଼ଘାଲ ଶୁଅ—ସାଷ୍ଟାଙ୍ଗ ହୋଇ ପଡ଼ିଯାଅ; ବଡ଼ଦାଣ୍ଡକୁ—ବଡ଼ଦାଣ୍ଡରେ

ସେ ଠାବରୁ ଧୀରେ କଳ୍ପବଟମୂଳେ
ଦେଖ ବଟପୁଟଶାୟୀ ପ୍ରଭୁଙ୍କୁ
ପଦାଙ୍ଗୁଳି ନେଇ ବଦନରେ ଦେଇ
ହସୁଛନ୍ତି ଚୁହିଁ ମାତାମୁଖକୁ
ତହିଁ ଆଗକୁ ଦକ୍ଷ ଭାଗକୁ
ପାହାଣ ରଖିଛି ଗଜମୁଖକୁ । ୭ ।

ମୁକ୍ତି ମଣ୍ଡପେ ବସିଛନ୍ତି ବିପ୍ରେ
ପଢ଼ୁଛନ୍ତି ବେଦ ସ୍ମୃତିଶାସ୍ତ୍ରକୁ
ସେ ରୋହଣୀକୁଣ୍ଡ ସର୍ବପାପଖଣ୍ଡ
କାକ ପଡ଼ି ହେଲା ଚତୁର୍ଭୁଜକୁ
ଗଲା ସ୍ୱର୍ଗକୁ ଯାଅ ଆଗକୁ
ବିମଳା ଦେଖ ପଶ୍ଚିମ ଭାଗକୁ । ୭ ।

ସେଠାରେ ହିରଣ୍ୟ କୋପେ ନାରାୟଣ
ଚିନ୍ତା କର ବାରେ ହୃଦେ ତାହାଙ୍କୁ
ମାତା ସରସ୍ୱତୀ ତହିଁ ଆଗେ ଛନ୍ତି
ନମସ୍କାର କର ତାଙ୍କ ପାଦକୁ
ତହିଁ ଆଗକୁ ଉତ୍ତର ଦିଗକୁ
ମାତା ମହାଲକ୍ଷ୍ମୀ ଦେଖ ତାହାଙ୍କୁ । ୮ ।

---

୭ । ଚତୁର୍ଭୁଜକୁ—ଚତୁର୍ଭୁଜ ( ଲୁ ନରଥବ )

ଧନ୍ୟ ବଡ଼ଦାଣ୍ଡ ସର୍ବ ପାପଖଣ୍ଡ
ସକଳ ତୀର୍ଥ ସେବନ୍ତ ତାହାକୁ
ଗୋରୁ ବିପ୍ର ମାର ଗୁରୁପତ୍ନୀ ହର
ସେଠାବକୁ ଗଲେ ଦହେ ପାପକୁ
ତଳେ ହସ୍ତକୁ ଦେଇ ମସ୍ତକୁ
ଗଡ଼ଖାଲ ଶୁଅ ବଡ଼ଦାଣ୍ଡକୁ । ୩ ।

ଛତା ପୋତ ସାଧୁ ବୈଷ୍ଣବ ମହନ୍ତ
କରୁଛନ୍ତି ଲୀଳା ଗାଇ ନାମକୁ
କଲୁଆ ଗଞ୍ଜାଇ ବଡ଼ା ବଡ଼ା ଖାଇ
ଡାକୁଛନ୍ତି ସେ ମୁକତିଧାମକୁ
ଚଉବାହାକୁ ଧାଇଁ ତାହାଙ୍କୁ
ମିଳୁଛି ଅବଢ଼ା ଛେକବେଳକୁ । ୪ ।

ସେ ଅରୁଣ ସ୍ତମ୍ଭ ମେରୁ ସର ଦମ୍ଭ
ଦେଖ ସିଂହଦ୍ୱାରେ ଗଜସିଂହକୁ
ବାଇଶ ପାବଛ ଲଗା ତହିଁ ହସ୍ତ
କୈବଲ୍ୟପସରା ବେନ ପାଶକୁ
ଯହିଁ ଆଗକୁ ଝକାକଣାକୁ
ବହି ନେଉଛନ୍ତି ବଡ଼ଦାଣ୍ଡକୁ । ୫ ।

---

୩ । ଗଡ଼ଖାଇ ଶୁଅ—ସାଷ୍ଟାଙ୍ଗ ହୋଇ ପଡ଼ଯାଅ; ବଡ଼ଦାଣ୍ଡକୁ—ବଡ଼ଦାଣ୍ଡରେ

ସେ ଠାବରୁ ଧୀରେ କଳ୍ପବଟମୂଳେ
ଦେଖ ବଟପୁଟଶାୟୀ ପ୍ରଭୁଙ୍କୁ
ପଦାଙ୍ଗୁଳି ନେଇ ବଦନରେ ଦେଇ
ହସୁଛନ୍ତି ଚାହିଁ ମାତାମୁଖକୁ
ତହିଁ ଆଗକୁ ଦକ୍ଷ ଭାଗକୁ
ପାହାସ୍ତ ରଖିଛି ଗଜମୁଖକୁ । ୬ ।

ମୁକ୍ତି ମଣ୍ଡପେ ବସିଛନ୍ତି ବିପ୍ରେ
ପଢ଼ୁଛନ୍ତି ବେଦ ସ୍ମୃତିଶାସ୍ତ୍ରକୁ
ସେ ରୋହଣୀକୁଣ୍ଡ ସର୍ବପାପଖଣ୍ଡ
କାକ ପଡ଼ି ହେଲ ଚତୁର୍ଭୁଜକୁ
ଗଲ ସ୍ୱର୍ଗକୁ ଯାଅ ଆଗକୁ
ବିମଳା ଦେଖ ପଶ୍ଚିମ ଭାଗକୁ । ୭ ।

ସେଠାରେ ହିରଣ୍ୟ କୋପେ ନାରାୟଣ
ଚିନ୍ତା କର ବାରେ ହୃଦେ ତାହାଙ୍କୁ
ମାତା ସରସ୍ୱତୀ ତହିଁ ଆଗେ ଛନ୍ତି
ନମସ୍କାର କର ତାଙ୍କ ପାଦକୁ
ତହିଁ ଆଗକୁ ଉତ୍ତର ଦିଗକୁ
ମାତା ମହାଲକ୍ଷ୍ମୀ ଦେଖ ତାହାଙ୍କୁ । ୮ ।

---

୨ । ଚତୁର୍ଭୁଜକୁ—ଚତୁର୍ଭୁଜ ( ବୃ ନରଥକ )

ସେ ଠାବରୁ ଏକ କୁଣ୍ଡ ଯାଇଁ ଦେଖ
ଚାହୁଁ ନେଇ କ୍ଷେପ ନିଜ ଗର୍ଭକୁ
ପର ପ୍ରାପ୍ତ ପ୍ରଭୁ ଫିଙ୍ଗି ଦେଉଅଛ
ଏ ନିନ୍ଦା ହୋଇବ ଆଉ କାହାକୁ ?
ଚଉବାହାକୁ ଚାହାଁ ଊର୍ଦ୍ଧ୍ୱକୁ
ଉଡ଼ୁଛି ପତାକା ତନପୁରକୁ । ୯ ।

ଜଗମୋହନରେ ପଶିଯାଅ ଥରେ
ଆଲିଙ୍ଗନ କର ପକ୍ଷିରାଜକୁ
ରତ୍ନବେଦୀପରେ ଚାହିଁଦିଅ ଥରେ
ଦେଖ କଳାଧଳାମୁଖଶୋଭାକୁ
ପାଦତଳକୁ ଲଗା ଶିରକୁ
ପରିକ୍ରମା କର ରତ୍ନବେଦୀକୁ । ୧୦ ।

ଆଗେ ରତ୍ନଦୀପ ଜଳେ ଦପଦପ
ଥୟ ହୋଇ ଲୟକର ତାହାକୁ
କହଇ ଭକାଣୀ ସାହା କେହି ନାହିଁ
ଦଣ୍ଡେ ନ ଛାଡ଼ଇ ରହି ଧନ୍ଦାକୁ
ଧରି ନାମକୁ ଡାକେ ତୁମ୍ଭଙ୍କୁ
ଅନ୍ତେ ନୋହୁ ଗତି ଯମପୁରକୁ । ୧୧ ।

୧୦ । ଧନ୍ଦାକୁ—ଧନ୍ଦାରେ, ବ୍ୟସ୍ତ ଜଞ୍ଜାଳରେ

( ଏକଷଠୀ )

## ଶ୍ରୀ ଜଗନ୍ନାଥ ରଥାଙ୍ଗପାଣି ଜଣାଣ

### ହରେକୃଷ୍ଣ ସିଂହ ଯୁବରାଜ

( ଅଷ୍ଟାଦଶ ଶତାବ୍ଦୀ )

[ କବି ହରେକୃଷ୍ଣ ସିଂହଙ୍କର ଅନ୍ୟ କୌଣସି ଗୀତ ଅବଗତ ହୋଇନାହିଁ। ତାଙ୍କର ପରିଚୟ ମିଳିବା ମଧ୍ୟ ଦୁଷ୍କର। ତଥାପି ପଦଯୋଜନା ଓ ଭାବସମ୍ଭାର ଦେଖି ଏ ଜଣାଣଟି ଏତେ ହୃଦୟସ୍ପର୍ଶୀ ଯେ ଏହାକୁ ବାରମ୍ବାର ଗାନ କଲେ ସୁଦ୍ଧା ମନ ତୃପ୍ତ ହୁଏ ନାହିଁ। ]

( ରାଗ କଲ୍ୟାଣୀ )

ଜଗବନ୍ଧୁ ରଥାଙ୍ଗପାଣି !*
ରତ୍ନସିଂହାସନ-ମସ୍ତୁଡ଼ମଣି ! । ଘୋଷା ।

ମହୋଦଧିତଟରେ ଶ୍ରୀନୀଳକନ୍ଦରେ
ସଙ୍ଗେ ଘେନି ରଙ୍ଗେ ଭାଇ ଭଉଣୀ
କରୁଛ ବିଜୟ ପ୍ରଭୁ ଦୟାମୟ
କୋଟିମନ୍ମଥ ହୃଦୟ ମଥାଣି ।୧।

ପତିତଙ୍କ ହିତେ ଅନୁରାଗ ଚିତ୍ତେ
ହସି ହସାଉଛ ଜଗତ ପ୍ରାଣୀ
ଅତି ମନୋହର ବେଶ ନଟବର
ଚକା ନୟନରେ ମୃଦୁ ଚାହାଣି ।୨।

---

* ରଥାଙ୍ଗପାଣି—ଚକ୍ରପାଣି

ଅପୂର୍ବମୂରତି ଚଦ୍ଭୁଲସ୍ଥାପତି
ଅଗତିଙ୍କ ଗତି ବଶ୍ୱବନ୍ଧାଣି
ପାତକୀମାନଙ୍କ ଅଶେଷ ପାତକ
ଚକାଉଛ ଚକ୍ରଦାଢ଼ରେ ହାଣି ।୩।

ଆହେ ଆର୍ତ୍ତତ୍ରାଣ ! ଗରୁଡ଼ଆସନ !
ମୁଁ କି ଜଣାଇବି ନିଷ୍ଠୁରେ ବାଣୀ
ହରେକୃଷ୍ଣ ସିଂହ ଯୁବରାଜ ଲେହ—
ହୃଦୟୁ ଦ୍ରବାଇ ନ କଲ ପାଣି ।୪।



( ବାଷଠୀ )

# ଶ୍ରୀ ଜଗବନ୍ଧୁ ନାଥ ଭଜନ

## କବି କଳ୍ପଲତା ଜେମା

( ଅଷ୍ଟାଦଶ ଶତାବ୍ଦୀ )

[ କବିକଳ୍ପଲତା ଜେମାଙ୍କ ପରିଚୟ ମିଳିବା ଏ ପର୍ଯ୍ୟନ୍ତ ସମ୍ଭବ ହୋଇନାହିଁ । ଜଣେ କେହି ଜେମା "ଦେଖିଲି ଦେଖିଲି ଘନଶ୍ୟାମଙ୍କୁ" ଗୀତଟି ରଚନା କରି ଧନ୍ୟ ହୋଇଅଛନ୍ତି । ଏ ଜେମା ସେହି କବି ହୋଇ ପାରନ୍ତି । ]

( ରାଗ ଗୌରୀ )

ଜଗବନ୍ଧୁ ନାଥଙ୍କୁ ଯେ ମୂର୍ତ୍ତି ନୁହଇ
ଯେଣିକ ଗୃହିଁଲେ ତେଣେ ଶ୍ରୀମୁଖ ଦିଶଇ । ଘୋଷା ।

ଧନ୍ୟ ତାଙ୍କ ଚକା ଆଖି ମନ ରହିଥାଏ ଲାଖି
ବାହୁ ଟେକିଛନ୍ତି ଦୁଃଖୀ ତାରିବା ପାଇଁ ।୧।

ମାଳାମାନ ଲମ୍ବିଥାଇ ପାଦତଳଯାଏଁ ରହି
ଶ୍ରୀମୁଖରେ ଗନ୍ଧଚନ୍ଦନ ପଶି ନୁହଇଁ ।୨।

ଯେଣିକ ଦେଖିଲେ ନୟନ ଦିଶଇ କଳା ବଦନ
କଟୀରେ ଯେ ପୀତାମ୍ବର କ ଶୋଭା ପାଇ ।୩।

କବିକଳ୍ପଲତା ଜେମା ବୋଲେ ଦୋଷ କର କ୍ଷମା
ଜେମା ବୋଲେ ପାଦେ ପଡ଼ି ଉଠିବ ନାହିଁ ।୪।



( ତେଷଠି )

# ଶ୍ରୀ ଶରଣପଞ୍ଜର ଜଣାଣ

## ଦୁଃଖୀଶ୍ୟାମ ଦାସ

( ଅଷ୍ଟାଦଶ ଶତାବ୍ଦୀ )

[ କବି ଦୁଃଖୀଶ୍ୟାମ ଦାସ ମଧୁମଙ୍ଗଳ ନାମକ ଅପ୍ରକାଶିତ କାବ୍ୟର କବି । ତାଙ୍କ କୃତ ଏ ଜଣାଣଟି ସର୍ବଜନ ପରିଚିତ । ]

( ରାଗ ଶଙ୍କରାଭରଣ )

ହେ ଜଗନ୍ନାଥ ! ଦୟାସାଗର
ମୋହ ବିଷୟରେ କପାଁ କୃପା ନ କର । ଘୋଷା ।

ପୂର୍ବେ ସୁଗ୍ରୀବର ସଙ୍ଗେ ମୈତ୍ର ହୋଇଲ

( ପଦ )

ସେଠାରେ ପ୍ରବେଶିଲ ସଙ୍ଗେ ମଇତ୍ର ହେଲ
ମନେ ପ୍ରତେପିବାକୁ ସପ୍ତଶାଳା ଛେଦିଲ
ଚରଣେ ଦୁନ୍ଦୁଭିର ଅସ୍ଥି ପଦେ ଫିଙ୍ଗିଲ
ମଇସଛଳେ ମାୟା- ଯୁଦ୍ଧେ ବାଳି ମାରିଲ
ସୁଗ୍ରୀବେ ରାଜ୍ୟ ଦେଇ ତାରାକୁ ସମର୍ପିଲ
ବାନର ବଳ ଘେନ ସମୁଦ୍ରେ ସେତୁ କଲ
ଲଙ୍କାଗଡ଼ ବିଧ୍ୱଂସି ରାବଣକୁ ମାଇଲ
ବିଭୀଷଣେକୁ ରାଜା- ପଣେ ଶାଢ଼ୀ ବାନ୍ଧିଲ
ସୀତାଙ୍କୁ ବନ୍ଧନରୁ ଫିଟାଇଲ । ୧ ।

ପୂର୍ବେ ଗଜରାଜ ସଙ୍ଗେ ମୈତ୍ର କୁମ୍ଭୀର
( ପଦ ).
ଜଳରେ ନେଇ ତାକୁ ପାଦ ଧରି କୁମ୍ଭୀର
ବିଶ୍ୱାସ କରି ତାକୁ ବନ୍ଧନେଲା କନ୍ଦର
କଷ୍ଟ ହୋଇ କାତର ଡାକଲା ଆଦିମୂଳ !
ଦ୍ୱାରକାପୁରେ ତୁମ୍ଭେ ସତ୍ୟଭାମା ସଙ୍ଗର
ପଶାରି ଖେଳୁଥିଲ ଲଗିଥିଲା ସେଠାରେ
ଚକ୍ରକୁ ଗ୍ରହି ଆଜ୍ଞା ଦେଲ କମଳାବର !
ଚକ୍ର ତୁ ବେଗେ ଯାଅ ଶିର ଛେଦନ କର
ଆଜ୍ଞାରେ ଚକ୍ର ଗଲା ଶିର ଛେଦନ କଲା
ଗଜକୁ ଉଦ୍ଧରିଲ ସେଠାରି । ୨ ।

ପୁଣି ଗରଭିଣୀ ଏଣୀ ଶିଶୁ ସଙ୍ଗର
( ପଦ )
ଚରୁଥିଲା ବନରେ ବ୍ୟାଧ ମିଳି ସେଠାରେ
ପାଶକେ ଶ୍ୱାନ ରଖି ପାଶକେ ଦେଇ ଜାଲ
ପୂର୍ବଦିଗେ ଅନଳ ଜାଳିଣ ଖରତର
ଅତି ହରଷଭରେ ଧାଇଁ ଆସି ଶବର
ଅଗ୍ରତେ ଉଭା ହୋଇ ଧରଇ ଧନୁଶର
ମନେ ସ୍ମରିଲା ତାରେ ରଖ ହେ ଆଦିମୂଳ !
ବାତେ ଛିଡ଼ିଲା ଜାଲ ଜଳେ ଲିଭେ ଅନଳ
ବଜ୍ରରେ ଶ୍ୱାନ ନାଶ ଗଲା ସେହି ଶବର
ଆନନ୍ଦେ ଏଣୀ ଗଲା ସତ୍ୱର । ୩ ।

ଦୁଃଖୀଶ୍ୟାମ କହେ ଭବ କଞ୍ଜପଦ୍ମର

( ପଡ଼ )

ଆହେ ରଙ୍ଗାଅଧର ମୋ ଦୋଷ କ୍ଷମାକର
ମୁହିଁ ହୀନ ପାମର ଚରଣରେ କିଙ୍କର
ମୋଠାରୁ କେହି ଘୃର ନାହିଁ ଏହି ସଂସାର
କ୍ଷମା ନ କଲେ ତୁମ୍ଭେ କାହାର ହେବ ତେବେ
ତେଣୁ ତୁମ୍ଭ ପାଦରେ କୋଟି ଜୁହାର କରେ
ନାହିଁ କ୍ଷମତା ମୋର ତେଣୁ ଅକ୍ଷମ ନର
କର କରୁଣା ମୋତେ ପାପ ଖଣ୍ଡ ତୁରିତେ
ତୁମ୍ଭେ କରୁଣାକର ! ଏହି କରୁଣା କର
ଭବସାଗରୁ ହେବ ଉଦ୍ଧାର । ୪ ।



୪ । କଞ୍ଜପଦ୍ମର — ପଦ୍ମଚରଣ, ତୁମ୍ଭେ କରୁଣାକର — ତୁମ୍ଭେ କୃପାସିନ୍ଧୁ ।

( ଚଉଷଠୀ )

# ଶ୍ରୀ ଜୟ ଜନାର୍ଦ୍ଦନ ଭଜନ

( ଦୀନ ) କୃଷ୍ଣ ଦାସ

( ସପ୍ତଦଶ ଶତାବ୍ଦୀ )

( ରାଗ ବଙ୍ଗଳା )

ଜୟ ଜନାର୍ଦ୍ଦନ ଭବଭୟଭଞ୍ଜନ
ପୀତବସନ ବନମାଳୀ
ଦୈତ୍ୟବନାଶନ ସତ୍ୟ ସନାତନ
ଅତୁଳପ୍ରତୁଳଯଶଶାଳୀ । ଘୋଷା ।

ପୁରଟମୁକୁଟଧାରୀ ସଙ୍କଟଚୟହାରୀ
ପ୍ରସ୍ଫୁଟ ପଙ୍କଜଧାରୀ
ଶ୍ରୀପାଦପଦ୍ମ ତବ ଯାର ମୂଳ ବଇଭବ
ତାର ତାହାକୁ ହେ ମୁରାରି ! ।୧।

ବ୍ରଜନରେନ୍ଦ୍ରସୁତ ଗୋପୀନାଥ ଅଚ୍ୟୁତ
ହେ ବନ୍ଧୁ ପାତକହାରି !
କମଳାଦେବୀକାନ୍ତ ଜୟ ଜଗନ୍ନାଥ
ଶଙ୍ଖରଥାଙ୍ଗଗଦାଧାରୀ । ୨ ।

ଜୀବନବାନ୍ଧବ ମୁକୁନ୍ଦ ମାଧବ
ବୈକୁଣ୍ଠଭୁବନବିହାରୀ
ପତିତପାବନ ମାନଉଦ୍ଧାରଣ
କେଶବ କୃଷ୍ଣ କଂସାରି ।୩ ।

ଲଜ୍ଜାନିବାରଣ ବାରଣ ତାରଣ
ବଳଦୁଆରଭିକାରୀ
ଅଭୟଚରଣ- ପଙ୍କଜେ ଶରଣ
ଦୀନ କୃଷ୍ଣ ମଧୁହାରୀ ।୪ ।

---

୦ । ପ୍ରତୁଳ—ଅପର୍ଯ୍ୟାପ୍ତ, ଅଶେଷ; ୩ । ପୁରଟ—ସୁବର୍ଣ୍ଣ;
୪ । ବାରଣତାରଣ—ଗଜେନ୍ଦ୍ରରକ୍ଷଣକାରୀ; ମଧୁହାରୀ—ମଧୁସୂଦନ

( ପଞ୍ଚଷଠୀ )

# ଶ୍ରୀ ଜଗଜ୍ଜନପାଳନ ଭଜନ

## ଶ୍ୟାମଘନ

(ଅଷ୍ଟାଦଶ ଶତାବ୍ଦୀ)

[ କବି ଶ୍ୟାମଘନଙ୍କର ଅନ୍ୟ କୌଣସି ଗୀତ ହସ୍ତଗତ ହୋଇନାହିଁ । ତଥାପି ଏହି ନିଖିଳ ଜନପ୍ରିୟ ଗୀତଟି ଯୋଗେ ସେ କଳିଙ୍ଗରେ ଅମର ଯଶର ଅଧିକାରୀ । ପ୍ରାୟ ସବୁଲୋକଙ୍କ ମୁହଁରେ ଏ ଗୀତର ପଦେଅଧେ ଥିବାର ଦେଖାଯାଏ । ]

( ରାଗ ବଙ୍ଗଳା )

ଜଗଜ୍ଜନପାଳନ ଜଗତଜନସ୍ତାରଣ
ହେ ଘନଜନ-ହିତକାରି !
ଭବଭୟଭଞ୍ଜନ ଭକତଜନସ୍ତାରଣ
ଜନ୍ମେ ଜନ୍ମେ ଦଇତାରି । ଘୋଷା ।

ପୀତାମ୍ବରଧର ଗୋକୁଳସୁଧାକର
ହେ ବଂଶୀବଟବିହାରି !
ହେ ଧରଣୀଧର ସୁରନରକିନ୍ନର-
ଝାହ୍ନକାରି ! ହେ ମୁରାରି ! ।୧।

ନାରାୟଣ ଗଜସଙ୍କଟତାରଣ
ବାମନ ହେ ଇନ୍ଦ୍ରାରି !
ଗୋପୀଜନଜୀବନ ହେ ନନ୍ଦନନ୍ଦନ
ଶ୍ୟାମ ଗିରିବରଧାରି ! ।୨।

ଅଜ-ଶିବ-ବନ୍ଦନ ମୁନି-ମୋଦ-ବର୍ଦ୍ଧନ
ହେ କଂସ-କେଶୀ-ଧେନୁକାରେ !
ଦାବାନଳଭକ୍ଷକ ଅରକ୍ଷରକ୍ଷକ
ପାଣ୍ଡବପକ୍ଷ ଦନୁଜାରେ ।୩।

ବୃନ୍ଦାବନଧନ ଗରୁଡ଼ଆସନ
ହେ ଶଙ୍ଖାସୁରଅରେ !
ଫନ୍ଦାହୀନ ଜନ ବନ୍ଦନ୍ତ ଶ୍ୟାମଘନ
ଛନ୍ଦାଚରଣ ଅନୁସରେ ।୪।



୪ । ଫନ୍ଦାହୀନ ଜନ—ଜୀବିକା ନ ଥିବା ହୀନ ଦରିଦ୍ର ଲୋକ

( ଛଅଷଠି )

# ଶ୍ରୀ ନାରାୟଣଶରଣ ଜଣାଣ

## ଗଣେଶ ପଟ୍ଟନାୟକ

(ସପ୍ତଦଶ ଶତାବ୍ଦୀ)

[ କବି ଗଣେଶ ପଟ୍ଟନାୟକଙ୍କର ଏ ଜଣାଣଟି ସର୍ବତ୍ର ପ୍ରଚଳିତ ଥିଲେ ସୁଦ୍ଧା ତାଙ୍କ ବିଷୟରେ କୌଣସି ତଥ୍ୟ ସୁଲଭ ନୁହେ । ଭଜନ ଓ ଜଣାଣ ଲେଖକ ବହୁ କବିଙ୍କର ଅନୁରୂପ ଦଶା । ]

( ରାଗ ଶୁଦ୍ଧସାବେରୀ )

ମୋତେ ଏ ସଙ୍କଟୁ କର ପରିତ୍ରାଣ
ହେ ନାରାୟଣ ! । ଘୋଷା ।

ଗମ୍ଭୀର ନରଧିମାରେ ଯାହା କଲ ଦ୍ୱିରଦରେ
ତା ପୁଣି ଗୁଣି ହୃଦରେ ପ୍ରତ୍ୟାଶା ଶ୍ରୀପଦରେ
ରଖିଅଛୁ ସମ୍ଭାଳ ଶରଣ ହେ । ୧ ।

କେତେକେ କୃପା ସୁଦାମାରେ ବଡ଼ ପ୍ରଶଂସା ତା ମା'ରେ
ଧୂଆଇ ପଦ ରମାରେ ମଣ୍ଡିଦେଲ ମହିମାରେ
ଅଣିମାଦି ସୁଖ ଦେଲ ପୁଣ ହେ । ୨ ।

---

୧ । ଦ୍ୱିରଦ—ଗଜ; ପ୍ରତ୍ୟାଶା—ଭରସା; ତା ମା'ରେ—ମା ଅର୍ଥାତ୍ ଜଗଜ୍ଜନନୀ ମହାଲକ୍ଷ୍ମୀ ରୁକ୍ମିଣୀଙ୍କ ଆଗରେ ତାହାଙ୍କର ଏତେ ପ୍ରଶଂସା ଆପଣ କରିଥିଲେ; ଧୂଆଇ ପଦ ରମାରେ—ମହାଲକ୍ଷ୍ମୀ ରୁକ୍ମିଣୀଙ୍କଦ୍ୱାରା ଦରିଦ୍ର ସୁଦାମାଙ୍କ ପଦ ଆପଣ ଧୂଆଇ ତାଙ୍କୁ ଦେବଦୁର୍ଲ୍ଲଭ ସମ୍ପଦର ଅଧିକାରୀ କରିଥିଲେ

ନିଷ୍ଠୁର ହେଲେ ବଳାଇ   କହିବ କେତେ ଛଳାଇ
ଅନାଇଁ ଦିଅ ହେଳାର   ଯାଉ ମୋ ଦୁଃଖ ପଳାଇ
କୃପାନିଧି ଅଟ ତ ଆପଣ ହେ । ୩ ।

ଘଟେ ଶ୍ରୀ ଗଣେଶ ପଞ୍ଚ-   ନାୟକ ମୋ ସାହାପଣ
ନୋହିଲେ ପାଣ୍ଡବପଣ   ସରିଗଲା ମୁଁ କପଟ
ମୋ ଡାକକୁ ବାରେ ଶ୍ରୁତ ଆଣ ହେ । ୪ ।



୩ । ଛଳାଇ—ଛଳଗୁଡ଼ିକ ଲଗାଇ କହିବ; ହେଳାଇ—ହେଳାରେ ହେଲେ ସୁଦ୍ଧା

( ସତଷଠୀ )

# ଶ୍ରୀ ମହିମାମେରୁ ଭଜନ

## ଯଦୁମଣି ମହାପାତ୍ର

(ଊନବିଂଶ ଶତାବ୍ଦୀ)

( ରାଗ ଏରଖାଳ କାମୋଦୀ )

ଚକାନୟନକୁ ଡକା ରେ ମାନସ ! ଚକାନୟନକୁ ଡକା
ନାଳିକବନ୍ଧୁଜ ନାଲନେଖତେଜ
କରପାରନ୍ତି ଯେ ଫକା । ଘୋଷା ।

ଯାହା ବଳେ ଭଜେ ପଡ଼ ଗୃହ ଭୁଜେ
ବିହରେ ବଲେମେ କକା
ଦର୍ଶନ ମାତ୍ରକେ ଯେ ଅଘ ଲଙ୍ଘନ
କଲେ ମଘବାରକକା । ୧ ।

ପଶୁ ଖର୍ଯ୍ୟକେ ଦୁଷ୍ଟପଣ ସର୍ଜକେ
ସୃଷ୍ଟି ଯେଉଁ ଷଣ୍ଢାବକା
ଯୁଗଳ ବଘାତ ସର୍ଜିବର୍ଜିଦେଲେ
ଅର୍ଜିତ ବୃଜନଦକା । ୨ ।

---

୦ । ଧଡକା—ଅନାଥ, ନାଳିକବନ୍ଧୁଜ—ପଦ୍ମବନ୍ଧୁ ସୂର୍ଯ୍ୟଙ୍କ ସୁତ ଯମ; ୧ । ଯାହା ବଳେ—ଯାହା ଆଗରେ ପଡ଼ିଯିବାରୁ ବଲେମେ କକା ଅର୍ଥାତ କକାରୁ ଓଲଟାଇ ଦେଲେ କାକ—ଭୁଷଣ୍ଡ ନାମକ କାକ ଚତୁର୍ଭୁଜରୂପ ଧାରଣ କରି ସାରୂପ୍ୟ ମୁକ୍ତି ପାଇଲେ; ଅଘ ଲଙ୍ଘନ—ପାପରୁ ମୁକ୍ତ; ମଘବାରକକା—ଇନ୍ଦ୍ର କଉଡର ଦାଢ ବଳାପଣ; ୨ । ପଶୁ ଖାର୍ଯ୍ୟକେ ଦୁଷ୍ଟପଣ ସର୍ଜକେ—ପଶୁପକ୍ଷୀ ଅଦଙ୍କ ପ୍ରତି ଦୁଷ୍ଟପଣ କରିବା ପାଇଁ ଜନ୍ମ ଲଭିଥିବା; ଯୁଗଳ ବଘାତ ସର୍ଜି—ଦୁହିଁଙ୍କି ହତ୍ୟାକରି; ବର୍ଜିଦେଲେ—ଦୂର କରିଦେଲେ, ଅର୍ଜିତ—ଅର୍ଜନ କରିଥିବା; ବୃଜନଦକା—ପାତକ ହେତୁ

ବାଜା-ବର୍ଜା ପାପି- ରେଜା ଅଜାମିଳ
ପୁତ୍ରକୁ ଡାକିବା ଛକା
ଗରିଷ୍ଠ ନଷ୍ଟ ଦୁରିତ ପାପିଷ୍ଠଙ୍କୁ
ଉଦ୍ଧରିତେ ମାଇଲେ ଧକ୍କା । ୩ ।
ନନ୍ଦା ସ୍ତୁତି ଭକ୍ତି ଯେନ ମୁକ୍ତି ଦେବା
ଶକ୍ତିମନ୍ତପଣେ ପକ୍କା
ଚେଦିରାଜପୁତ୍ର ନଦୀଜ ପୁତ୍ରଙ୍କ
ପାପକୁ ଯେ କଲେ ଏକା । ୪ ।
ମହା ମହିମାବନ୍ତ ବୋଲି ଯା ନାମେ
ବ୍ରହ୍ମାଣ୍ଡେ ବାଜଇ ଢକା
ମାନକୁ ଛଡ଼ାଇ ସେ ମାନଗୋବିନ୍ଦ
ନୃପକୁ କଲେଟି ବୋକା । ୫ ।
ଯଦୁମଣି ଭଣେ କଲି କର୍ମଗୁଣେ
ରଖିବେ ନାହିଁ ବଡ଼ କା
ନୀଳାଚଳଚୂଳେ ନୀଳଚକ୍ରେ ଲୁଳେ
ପାପିପାବନ ଫଡ଼କା । ୬ ।

---

୩ । ବାଜାବର୍ଜା—ବିଖ୍ୟାତ; ଗରିଷ୍ଠ ନଷ୍ଟ ପାପିଷ୍ଠ—ଏ ଶବ୍ଦୋଟିଯାକ ପଦ ଦୁରିତ (ପାପ)ର ବିଶେଷଣ; ୪ । ମହାପ୍ରଭୁ ଶ୍ରୀଜଗନ୍ନାଥ ନିନ୍ଦାସ୍ତୁତି ଉଭୟ ଶୁଣି ମୁକ୍ତି ଦେବାର ଉଲ୍ଲେଖ ଅଛି । ଚେଦିରାଜପୁତ୍ର ଅର୍ଥାତ୍ ଶିଶୁପାଳ ନିନ୍ଦା କରି ହତ ହୋଇ ମୁକ୍ତି ପାଇଗଲା ଏବଂ ନଦୀଜ ଅର୍ଥାତ ଗଙ୍ଗାଙ୍କ ପୁତ୍ର ଭୀଷ୍ମଦେବ ସ୍ତୁତିକରି ମୁକ୍ତି ପାଇଲେ; ୫ । ମାନଗୋବିନ୍ଦ—ଦୁର୍ଯ୍ୟୋଧନ ୬ । ବଡ଼ କା—କାହାର ହେଲେ ବଡ଼ପଣ; ଫଡ଼କା—ପତାକା

( ଅଠଷଠି )

# ଶ୍ରୀ ଦୀନବାନ୍ଧବ ଜଣାଣ

## ବଙ୍କା ଦାସ

( ଊନବିଂଶ ଶତାବ୍ଦୀ )

[ ବଙ୍କା ଦାସ ପୁରୀ ଅଞ୍ଚଳର ଜଣେ ପ୍ରସିଦ୍ଧ ପାଲା-ଗାୟକ ଥିଲେ । ତାଙ୍କ ରଚିତ ବହୁ ଗୀତ ଏବେ ସୁଦ୍ଧା ଲୋକମୁଖରେ ପ୍ରଚଳିତ ଅଛି । ସେ ଆଶୁ କବିତା ରଚନାରେ ଧୁରନ୍ଧର ଓ ତତ୍କାଳୀନ ଗାୟକମାନଙ୍କ ମଧ୍ୟରେ ଅପ୍ରତିଦ୍ୱନ୍ଦ୍ୱୀ ଥିଲେ । ]

( ରାଗ ସାବେରୀ )

ଦୀନବାନ୍ଧବ ହେ ! କେ କି ଦେଲା ମୁଁ ନ ଦେଲି ?
ଠେକଅଛ କର ଡାକିଲି ପ୍ରକାର
ଠକିଦେଲ ମୁଁ କି କଲି । ଘୋଷା ।

ତାରିଛ କଣିକି ମାରି ତା ଅରିକି
ସ୍ମର ସେ ହେବାରୁ ଘାଲି
ବାଜାବଜା ପାପି ରାଜା ଅଜାମିଳ
ସଜାରୁ ହୋଇଲା ଖାଲି । ୧ ।

ତରି ମରୁଥିଲା ହରି ଘେନ ଗଲା
ତରିଗଲା ହରି ବୋଲି
ଗଞ୍ଜାଇ ଭୁଞ୍ଜାଇ ଗଞ୍ଜାଇ ମାରୁଛ
କେଉଁ ଅପରାଧ କଲି । ୨ ।

---

୧ । ହରି—ଯମ; ୨ । ସଜାରୁ ହୋଇଲା ଖାଲି—ଯମଦଣ୍ଡରୁ ଖଲାସ ହେଲା; ଗଞ୍ଜାଇ ଭୁଞ୍ଜାଇ—ବିପତ୍ତି ରୂପ ଗଞ୍ଜାଇ ଖୁଆଇ; ଗଞ୍ଜାଇ ମାରୁଛ—ହନ୍ତସନ୍ତ କରୁଅଛ

ଅନ୍ଧ ବିପ୍ରକୁ ଚକ୍ଷୁଦାନ ଦେଲ ତା
ପୁଅସଙ୍ଗେ ଖେଳ ବାଲି
ଅଧମ ଦାସକୁ ଉଦ୍ଧରିଲ ନାହିଁ
ବଧ ହେଲ ବୁଲି ବୁଲି । ୩ ।

ପିଲାଟି ଦାନରୁ ଉକା ପକାଉଛୁ
ଫକା ହୁଅନ୍ତାଣି ନାଲି
ବଙ୍କା ବୋଲେ ଚକା- ନେଥ ନ ଜାଣଇଁ
ଏଡ଼େ ଉକାଇତ ବୋଲି । ୪ ।



୪ । ଫକା ହୁଅନ୍ତାଣି ନାଲି—ମୋ ଡାକ ଶୁଣିବାଦ୍ୱାରୁ କ୍ରୁଦ୍ଧ ଲେବର ନାଲି ଆଖି ମଧ୍ୟ ଫକା ହୋଇ ଯାଅନ୍ତାଣି, ଅର୍ଥାତ ସେ ମୋ ପ୍ରତି ଶଅରେ ଦୟା ବହନ୍ତାଣି

( ଅଣଷ୍ଟର )

# ଶ୍ରୀ ନୀଳାଦ୍ରିନାଥ ମହିମା ଜଣାଣ

## ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା

( ଅଷ୍ଟାଦଶ ଶତାବ୍ଦୀ )

[ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା "ବିଦଗ୍ଧ ଚିନ୍ତାମଣି"ର ମହାକବି ଅଭିମନ୍ୟୁ ସାମନ୍ତସିଂହାରଙ୍କ ଦୀକ୍ଷାଗୁରୁ । ସେ ନିଜେ ମଧ୍ୟ ଜଣେ ବିଖ୍ୟାତ କବି । ତାଙ୍କ କୃତ ଯୁଗଳ ରସାମୃତ ଲହରୀ, ଯୁଗଳ ରସାମୃତ ଭଉଁରୀ, ଯୁଗଳ ରସାମୃତ ଚଉଁରୀ ପ୍ରଭୃତି କାବ୍ୟ ବିଦଗ୍ଧ ଚିନ୍ତାମଣିର ଆଦର୍ଶ । ସେ ବିଶ୍ୱମ୍ଭର ବିଳାସ ନାମକ ଖଣ୍ଡିଏ କାବ୍ୟ ଲେଖିଥିବାର ଶୁଣାଯାଏ । କିନ୍ତୁ ଦୁଃଖର ବିଷୟ ଯେ ତାଙ୍କ ଗ୍ରନ୍ଥ ସବୁ ଏବେ ଦୁଷ୍ପ୍ରାପ୍ୟ ହୋଇ ପଡ଼ିଅଛି । ତାଙ୍କ ଏ ଜଣାଣଟିର ପ୍ରଥମ ଧାଡ଼ି ପ୍ରବଚନରେ ପରିଣତ ହୋଇ ସାରିଅଛି । ]

( ରାଗ କାମୋଦୀ )

ମହିମା ! ଶୁଣିମା ହେଉ ଗରିବ ଡାକ
ମରନ୍ତି ଜନକୁ ରଖ ପଙ୍କଜମୁଖ । ଘୋଷା ।
କୃପାସାଗର କାହିଁକି ମୋ ବେଳକୁ ଗଲ ଶୁଖି
ଜାଣିଲି ମୋ କର୍ମ ବାଙ୍କ ନୁହେ ସଳଖ । ୧ ।
ଆର୍ତ୍ତନାଶନବାନା ନ ଶୁଣ ଭକ୍ତବେଦନା
ଏବେ ହୋଇଯିବ ମନା କେ ଦେବ ଡାକ । ୨ ।
ଦାସ ଯେବେ ନାଶ ଯିବ କ୍ଷିତିରେ ଅକୀର୍ତ୍ତି ହେବ
ଭାରତ-ଚନ୍ଦ୍ରରେ ଲାଗିଯିବ କଳଙ୍କ । ୩ ।
କହେ ସଦାନନ୍ଦ ଗୁରୁ ନାହିଁ ଆନ ପ୍ରତିକାର
ଏ ଦୀନ ଅବସ୍ଥା ମୋର କେବେ ନ ଦେଖ । ୪ ।



( ସତୁର )

# ଶ୍ରୀ ଜଗନ୍ନାଥ ମହାବାହୁ ଜଣାଣ

## ବୈଦ୍ୟନାଥ ଦ୍ୱିଜ

( ସପ୍ତଦଶ ଶତାବ୍ଦୀ )

[ କବି ବୈଦ୍ୟନାଥ ଦ୍ୱିଜଙ୍କର ଅନ୍ୟ କୌଣସି ଗୀତ ଆବିଷ୍କୃତ ହୋଇନାହିଁ ବା ତାଙ୍କ ସମ୍ବନ୍ଧରେ କୌଣସି ତଥ୍ୟ ହସ୍ତଗତ ହୋଇନାହିଁ । ସେ ଏହି ଗୋଟିକ ଭଜନ ଲେଖି ଅମର ହୋଇଛନ୍ତି । ]

( ରାଗ ହନୁମତ ତୋଡ଼ୀ )



ଜୟ ଜୟ ଜଗନ୍ନାଥ ମହାବାହୁ
ଜଗବନ୍ଧୁ ବୋଲି ମୋ ଜୀବନ ଯାଉ । ଘୋଷା ।

ଆରତତାରଣ ଶରଣରକ୍ଷଣ
କାରଣେ ବାନା ଉଡ଼ାଉ
ମୋର ପଛେ ଯାଉ ପ୍ରାଣ କେବେ ନ ମିଳୁ ଦୂଷଣ
ଭବଭୟବାନାକୁ ତୋ ନିନ୍ଦା ନୋହୁ । ୧ ।

ଭରଡଆ ପକ୍ଷୀ ଘଣ୍ଟ ତାଙ୍କି ରଖି
ଜୀବଦାନ ଦେଲ ଯେଉ
ମୋ ସଙ୍କଟ ତାଠୁଁ ବଳ ରଖ ଆହେ ବନମାଳ !
ତୋତେ ଭଲ ହେବ କି ମୁଁ ମଲେ ଆଉ । ୨ ।

୧ । ଦୂଷଣ—ଅପମାନ, ଅପଯଶ; ୨ । ଯେଉ—ଯେ

ତୃଷାର୍ତ୍ତ ଯେ ଜନ ହାରେ କ ଜୀବନ
ଗଙ୍ଗାକୂଳେ ଥାଇ ଥାଇ
ଶିରୀଷ ପୁଷ୍ପରେ ଯେବେ କୁଳଶ ବରଷା ତେବେ
ମୋତେ ମାର କାଳେ କାଳେ ଯଶ ଥାଉ । ୩ ।

ଆହେ ଚନ୍ଦ୍ରମୁଖ ଦେଲ ଯେତେ ଦୁଃଖ
ଏହା କାହା ଦେହ ସହୁ
ଦ୍ୱିଜ ବୈଦ୍ୟନାଥ ବୋଲେ ଏ କାଳରେ ନ ରଖିଲେ
ପାପ ଶରୀରକୁ ମୋର ଅଗ୍ନି ଖାଉ । ୪ ।



୩ । କୁଳଶ—ବଜ୍ର

( ଏକସ୍ତର )

## ଶ୍ରୀ ନୀଳାଚଳକଳାକର ଜଣାଣ

### ଯଦୁମଣି ମହାପାତ୍ର

( ଊନବିଂଶ ଶତାବ୍ଦୀ )

( ରାଗ ବସନ୍ତ )

ଓଜଶୀଳ ଖେଜ-ଗଜ-          ଜୀବନ-ହରଣେ ତେଜ
ଅର୍ପଣ କଲ କୃପଣ ନୋହି
ଗମ୍ଭୀର ଜଳେ କୁମ୍ଭୀର          ଗଜ ଗ୍ରହଣେ କୁମ୍ଭୀର
ଜୀବରକ୍ଷା କଲ କକ୍ଷା ବନ୍ଧି
ହେ ନୀଳାଚଳ-କଳାକର !
ସତ କି ଏ ମିଛ ?
ନେଲ ଯାହା ଦେଲ ତାହା          ଏଥକୁ କିପାଇଁ ମହା-
ଦାତାପଣେ ପତାକା ବାନ୍ଧିଛ ହେ ।୧।

---

୧ । କଂସ ସଭାର କୁବଳୟାପୀଡ଼କୁ ମାରିବାରେ ପରାକ୍ରମ ଦେଖାଇଲ ଏବଂ ଏଣେ କୁମ୍ଭୀର ଜଳରେ ଗ୍ରାସ କରୁଥିଲାବେଳେ କୁମ୍ଭୀ ଅର୍ଥାତ୍ ଗଜର ପ୍ରାଣକୁ କକ୍ଷାବନ୍ଧ ଅର୍ଥାତ ବଦ୍ଧକରି ରକ୍ଷାକଲ । ଗୋଟିଏ ଗଜର ପ୍ରାଣକୁ ନେଇ ଅନ୍ୟ ଗୋଟିକୁ ପ୍ରାଣଦାନ ଦେଲ । ଏଣୁ ତୁମ୍ଭେ ସଚ୍ଚୋଟ ଦାତା ଅର୍ଥାତ ପ୍ରାଣଦାତା ହେଲ କିପରି ?

ଦଳି ବଳିଷ୍ଠ ବାଳକ । ଅକଳିତ ବିଭୂତିକି
ଦଳିତ କରରେ କରିଥିଲ
ନ ମାନିକରି ! ରମାକୁ ଅକିଞ୍ଚନ ସୁଦାମାକୁ
ବିପୁଳ ସମ୍ପଦେ ମଣ୍ଡିଦେଲ
ହେ ନୀଳାଚଳ-କଳାକର !
ସତ କି ଏ ମିଛ ?
ନେଲ ଯାହା ଦେଲ ତାହା । ଏଥିକୁ କିପାଇଁ ମହା-
ଦାତାପଣେ ପତାକା ବାନ୍ଧିଛ ହେ । ୨ ।

ଗୋକୁଳ-କୁଳଧଉତ- ଗଉରାଙ୍ଗୀଙ୍କ ମହତ
ନେଇଥିବା ସକାଶରୁ କରି
ଧ୍ରୁପଦ-ନୃପ-ନନ୍ଦନା- ମହତ-ହରି ବେଦନା-
ବିନାଶନେ ହେଲ ଧନ୍ଵନ୍ତରି
ହେ ନୀଳାଚଳ-କଳାକର !
ସତ କି ଏ ମିଛ ?
ନେଲ ଯାହା ଦେଲ ତାହା । ଏଥିକୁ କିପାଇଁ ମହା-
ଦାତାପଣେ ପତାକା ବାନ୍ଧିଛ ହେ । ୩ ।

---

୨ । ତୁମ୍ଭେ ଅକଳିତ ସମ୍ପଦଶାଳୀ କଷ୍କିନ୍ଧ୍ୟା ରାଜା ବାଳିର ଜୀବନକୁ ବିନଷ୍ଟ କଲ ଏବଂ ମହାଲକ୍ଷ୍ମୀଙ୍କଦ୍ୱାରା ଦରିଦ୍ର ସୁଦାମା ବ୍ରାହ୍ମଣର ପାଦ ଧୁଆଇ ତାକୁ ଦେବଦୁର୍ଲ୍ଲଭ ଭୋଗ ପ୍ରଦାନ କଲ । ଗୋଟିକୁ ମାରି ଗୋଟିକୁ ତାରିଲ । ତେଣୁ ତୁମ୍ଭ ଦାନକପଣିଆ ରହିଲା କେଉଁଠି ?

୩ । ତୁମ୍ଭେ ଷୋଳସହସ୍ର ସୁନାଗୋରୀ ଗୋପିକାଙ୍କ ମହତ ନେଲ ଏବଂ ଜଣେ ମାତ୍ର ରମଣୀ ଦ୍ରୌପଦୀଙ୍କ ମହତ ତାଙ୍କୁ କୁରୁସଭାରେ ବସ୍ତ୍ର ଦାନ କରି ରକ୍ଷାକଲ । ତେଣୁ ତୁମ୍ଭ ଦାନକ-ପଣିଆ ରହିଲା କେଉଁଠି ?

ପାତକ-ମୁକୁଟଶ୍ରେଣୀ- ଶିରୋମଣି ଯଦୁମଣି
ମନ ତଳେ ନେଇ ନ ପାରିବ
ଏହା ଉଦ୍ଧାରଣେ ଯେବେ ଚିତ୍ତ ଦେଇ ପାର ଲବେ
ତେବେ ଯିନା ଦାତା ବୋଲାଇବ
ହେ ନୀଳାଚଳ-କଳାକର !
ସତ କ ଏ ମିଛ ?
ନେଲ ଯାହା ଦେଲ ତାହା ଏଥକୁ କପାଇଁ ମହା-
ଦାତାପଣେ ପତାକା ବାନ୍ଧିଛ ହେ । ୪ ।



୪ । କେବଳ ଗୋଟିଏ ହେତୁରେ ତୁମ୍ଭ ଦାନକ୍ଷମତା ପ୍ରମାଣିତ ହୋଇ ପାରିବ । ମୁଁ କବି ଯଦୁମଣି ପାତକୀମାନଙ୍କ ଭିତରେ ଶ୍ରେଷ୍ଠ । ମୋ ମନକୁ ତୁମ୍ଭେ ତୁମ୍ଭ ପଦ୍ମପାଦ ତଳକୁ ନେଇ ପାରିବ ନାହିଁ । ତେଣୁ ମୋତେ ଉଦ୍ଧାର କରିବାକୁ ତୁମ୍ଭ ଚିତ୍ତ ଦେଇ ପାରିଲେ ତୁମ୍ଭ ଦାନକ୍ଷମତାର ପ୍ରମାଣ ତୁମ୍ଭେ ଦେଇପାରିବ ।

( ବାସ୍ତର )

ବନମାଳୀ ଦାସ

# ଶ୍ରୀ ଜଗନ୍ନିବାସ ଜଣାଣ

( ଅଷ୍ଟାଦଶ ଶତାବ୍ଦୀ )

ରାଗ ଦାଣ୍ଡମୋଖୀ )

ଜଗନ୍ନିବାସ ହେ !

ରଘୁବଂଶେ ତୁମ୍ଭେ ହୋଇଣ ଜାତ
ଜେନ୍ତେ କୃପାଳୁ ହୋଇଥିଲ ଆପଣ
ଏବେ ହେଲ ତ କର୍କଶଚିତ୍ତ । ଘୋଷା ।
ଗଉତମ ପ୍ରିୟତମାକୁ ପାଷାଣୁ
ତାରିଛ ଚରଣପରଶରେ
ବାନରରାଜ ସୁଗ୍ରୀବେ ଅନୁଗ୍ରହ
ଗାଉଛନ୍ତି ଜନେ ଅନଶରେ । ୧ ।
ଗୁହକ ଶବର ଚଣ୍ଡାଳ, ପୀରତି
ତାହାଠାରେ କଲ କେ ନ ଜାଣେ
ଏକା ହୋଇ ତିନ କଥା ମୋହଠାରେ
ଅଛଇ ଯେମନ ତା ବଖାଣେ । ୨ ।
ମୋ ହୃଦ ପଥର ମୋ ଚେଷ୍ଟା ବାନର
କର୍ମ ମୋହର ଚଣ୍ଡାଳୁ ବଳି
ମୋତେ ଉଦ୍ଧରିଲେ ରଘୁନାଥଠାରୁ
ବଡ଼ ତୁମ୍ଭେ ବୋଲେ ବନମାଳୀ । ୩ ।

---

୧ । ଅନଶରେ—ଦିନରାତି ୩ । ମୋହୃଦୟ ପଥରଭଳି ଟାଣ, ଚେଷ୍ଟାରେ ମୁଁ ବାନରପରି ଚପଳ ଓ କର୍ମରେ ମୁଁ ଚଣ୍ଡାଳପରି ପତିତ

( ତେସ୍ତର )

# ଶ୍ରୀ ରଘୁନାଥଦେଶ ଜଣାଣ

## ବଛନ୍ଦଚରଣ ପଟ୍ଟନାୟକ

( ୧୮ଂଶ ଶତାବ୍ଦୀ )

( ରାଗ କଲ୍ୟାଣୀ )

ନବକିଶୋର ଜାନକୀଶ୍ୱର ପ୍ରଭୁ !
ନାହିଁ କେହି ତୁମ୍ଭ ବାହାରେ।
ଗୋଚର କରିବ ତ୍ରିତାପଜାଳା ମୋ
ଲେଉଟକ ଉବାଳି ଯାହାରେ । ଘୋଷା ।

ଅହଲ୍ୟା-ଆରତି-ଖଣ୍ଡନକାରି !
ଯାଗ ରକ୍ଷା କରି ରାକ୍ଷସ ମାରି
କରମବନ୍ଧନ ହେଉ ମୋ ଛେଦନ
ଆଶ୍ରା ମୋର ସୀତାନାହାରେ । ୧ ।

କଇବର୍ତ୍ତ-ଗତିଦାତା ଖଗଶ୍ୱର
ଶଙ୍କର-ଶାମ୍ବୁକ-ଭଞ୍ଜନକାରି !
କି କରିବ ଘୋର ଏ ଭବ-ସଂସାର
ବସିଥିଲେ ନାମ-ନାହାରେ । ୨ ।

ଜାନକୀ-ମାନସ-ଚୋର ଚତୁର
ତୁମ୍ଭେ ଥାଉଁ କପାଁ ହେବ ଆତୁର
ଜସ ନ ଲଭିଲେ ସୁଗ୍ରୀ ବିଭୀଷଣ
ପାଇ ତୁମ୍ଭ ବାହୁସାହାରେ । ୩ ।

---

୦ । ବାହାରେ—ବିନୁ, ଉବାଳି—ଉଦ୍ଧାର କରି ଡାକ

ଜନକବରଚନେ କାନନଗୃହ୍ଣେ
ଆକୁଳ କୈତବେ ଜାନକୀ ହାର
ବନାଇଲ ଚୂନା କରି ସୁନାଲଙ୍କା
ନିର୍ଘାତ ଶାୟକପାହାରେ । ୪ ।
ଦ୍ୱାପରେ ହୋଇଣ କଳା କହ୍ନାଇ
ଯାହାରେ ଯା ଦେଲ ଛପା ତ ନାହିଁ
କୁବୁଜାତାରଣ ଗୋପିକାରମଣ
ନାଥ ! ମୁଁ ଯେ ତାଙ୍କ ବାହାରେ । ୫ ।
ନବଦୂର୍ବାଦଳଶ୍ୟାମଳ ରାମ
ଚରଣେ ଭକତ ଦିଅ ନିଷ୍କାମ
କରେ ଧର ରଙ୍ଗରାଜୀବପୟର
ଜଗାଇବ ଡରେ ତାହାରେ । ୬ ।
ସଞ୍ଚିତ କୁକର୍ମ ଏକତେ କେ ଜାଣି
ରହିଥିବ ମୋର କୋଦଣ୍ଡପାଣି !
କାଣ୍ଡ ପେଷି ସବୁ ଛେଦି ତା ପକାଅ
ବଜ୍ରଧର ଡର ତାହାରେ । ୭ ।



---

୪ । କୈତବେ—କପଟରେ (ଆଧ୍ୟାତ୍ମ ରାମାୟଣ ଓ ତୁଳସୀ ରାମାୟଣ ଅନୁସାରେ ରାବଣ ଛାୟା ସୀତାଙ୍କୁ ହରଣ କରିଥିଲେ ଏବଂ ଜଗଜ୍ଜନନୀ ଅଗ୍ନି ଦେବତାଙ୍କ ଜିମାରେ ଥିଲେ । ଲଙ୍କାରେ ଅଗ୍ନିପରୀକ୍ଷା ସମୟରେ ଅଗ୍ନିରେ ଛାୟା ସୀତା ଅନ୍ତର୍ହିତ ହେଲେ ଓ ଜଗଜ୍ଜନନୀ ମହାପ୍ରଭୁଙ୍କ ନିକଟରୁ ଫେରି ଆସିଲେ । )

( ଚଉସ୍ତର )

# ଶ୍ରୀ ଅନନ୍ୟଶରଣ ଜଣାଣ

## ବନମାଳୀ ଦାସ

( ଅଷ୍ଟାଦଶ ଶତାବ୍ଦୀ )

( ରାଗ କାମୋଦୀ )

ଆହେ ଜଗବନ୍ଧୁ !
ଆପଣଙ୍କ ବିନେ ନ ଜାଣେଁ ଆନ ଦେବତା

ଆପଣ କରୁଣା ଊଣା କଲେ ଆଉ
ନାହିଁ ଟି କେହୁ ରଖନ୍ତା । ଘୋଷା ।

ସପନରେ ବିନେ ଗୃହିଁ ନାହିଁ
ତପନକୁ ଭଲ କରି
ଜପ ନ କରଇ ଶରଧାରେ ପଞ୍ଚ-
ଲପନେ ନାମ ଉଚ୍ଚାରି । ୧ ।

ସର୍ବତୋପ୍ରକାରେ ନ ପ୍ରବର୍ତ୍ତେ ଚିତ୍ତ
ପର୍ବତ-ନନ୍ଦନାଠାରେ
ଖର୍ବ ତନୁରେ ମୁଁ ନ କରଇ ସ୍ତୁତି
ପର୍ବତଥିମାନଙ୍କରେ । ୨ ।

---

୧ । ପଞ୍ଚଲପନ—ଶିବ; ୨ । ସର୍ବତୋପ୍ରକାରେ—ସବୁମନ୍ତ୍ରେ;
ପର୍ବତନନ୍ଦନା—ପାର୍ବତୀ; ଖର୍ବତନୁ—ଗଣେଶ

ଶ୍ରୁତରେ ନ ଶୁଣେଁ ରତଏ ବସି ମୁଁ
ସ୍ମୃତ ଛନ୍ଦ ଯାହା ଲେଖି
ସ୍ଫୂର୍ତ୍ତି ନ ହୁନ୍ତ ଆନ ଦେଖା ଦେବତା
ମୂର୍ତ୍ତି ତୁମ୍ଭର ନରେଖି । ୩ ।

ମନ ବଚନ କର୍ତ୍ତବ୍ୟରେ ତୁମ୍ଭର
ଅନବରତରେ ମୁହିଁ
ଅବଧାନ ନ ହୋଇଲେ ଟି ଭାସିଲ
ବନମାଳୀ ଦାସ କହି । ୪ ।



( ପଞ୍ଚସ୍ତର )

# ଶ୍ରୀ ଦୟାସାଗର ଜଣାଣ

## ଗଙ୍ଗାଧର

( ଅଷ୍ଟାଦଶ ଶତାବ୍ଦୀ )

[ କବି ଗଙ୍ଗାଧରଙ୍କ ବିଷୟରେ କୌଣସି ତଥ୍ୟ ହସ୍ତଗତ ହୋଇନାହିଁ । ତାଙ୍କ ରଚିତ ଏ ଜଣାଣଟି ସର୍ବଜନ ପରିଚିତ । ]

( ରାଗ ମଲୁଆ )

ଦୀନବନ୍ଧୁ ! ତୁମ୍ଭେ ଦୟାସାଗର
ନ ରଖିଲେ ଭାସିଗଲି ଏଥର । ଘୋଷା ।

ନୃପତିସଭାରେ ଦ୍ରୌପଦୀ ମିଳିଲ
ସମର୍ପିଲ ତାକୁ କୋଟି ଭଣ୍ଡାର
ସୂର୍ଯ୍ୟଙ୍କ ରମଣୀ ଛାୟା ମାୟା ରାଣୀ
ବସନ ପିନ୍ଧାଇ କୁରୁସଭାର । ୧ ।

ଲଙ୍କାର ରାବଣ ସୀତା ହରିନେଲ
କୋଦଣ୍ଡେ କାଟିଲ ତା ଦଶଶିର
ଭାଇ ବିଭୀଷଣ ଶରଣ ପଶିଲା
ଯୁଗେ ଯୁଗେ ତାକୁ କଲ ଅମର । ୨ ।

ପ୍ରହଲାଦ ପାଇଁ ସ୍ତମ୍ଭରୁ ବାହାର
ହିରଣ୍ୟକୁ ନଖେ କଲ ବିଦାର
ଥିଲ ଗୋପପୁରେ ଇନ୍ଦ୍ର ବିବାଦରେ
ମନ୍ଦର ଧଇଲ ବାମହସ୍ତର । ୩ ।

ଗୋପଜନହିତ ଦରିଦ୍ରଙ୍କ ନାଥ
ସକଳ ଘଟେ କରୁଛ ବିହାର
କହେ ଗଙ୍ଗାଧର ବନ୍ଦଇ ପଯ୍ୟର
ଏ ଭବସାଗରୁ ବାରେ ଉଦ୍ଧର । ୪ ।



( ଛଅସ୍ତର )

# ଶ୍ରୀ ଆତଙ୍କନାଶନ ଜଣାଣ

## ଯଦୁମଣି ମହାପାତ୍ର

( ଊନବିଂଶ ଶତାବ୍ଦୀ )

( ରାଗ କ୍ଷିପ୍ରଣାଙ୍ଗୀ )

ଅନୁକମ୍ପାଧାରୀ ହରି ! ହର ମୋହର ଆତଙ୍କ
ଦନୁଜାରି ଚକ୍ରାୟୁଧ ହେ ଶିଖିପକ୍ଷ ଶ୍ରୀରଙ୍ଗ ! ।ଘୋଷା।

କୁଞ୍ଜରବରତାରଣ କୁଞ୍ଜର ମତ୍ତ ବାରଣ
କୁଞ୍ଜରନାଶକ ଗୁଞ୍ଜାଆବଳୀଭୂଷଣଅଙ୍ଗ । ୧ ।

ବାସବର ଗର୍ବଗଞ୍ଜା ଯାମଳା-ଅର୍ଜ୍ଜୁନ-ଭଞ୍ଜା
ଗୋପିକାମାନସରଞ୍ଜା ଶ୍ରୀବୃନ୍ଦାରଣ୍ୟଅନଙ୍ଗ । ୨ ।

ଉରଦେଶ ଧଳା-କଳା-ବଳାହକ-କାନ୍ତ କଳା-
ବକ୍ଷ ଶ୍ରୀ ଭାନୁଜା ଗଳା-ମାଳା ଧାରକ ସାରଙ୍ଗ ।୩।

ବଇକୁଣ୍ଠକଣ୍ଠୀରବ ମହିମା ପ୍ରଭାବ ତବ
ଦେଖାଅ ନ କରି ଲବ ଅବହେଳା ମଣି ଖଙ୍ଗ ।୪।

---

୦ । ଅନୁକମ୍ପାଧାରୀ—ଦୟାଳୁ ୧ । କୁଞ୍ଜରବରତାରଣ—ଗଜଶ୍ରେଷ୍ଠର ଉଦ୍ଧାରକାରୀ; କୁଞ୍ଜର ମତ୍ତ ବାରଣ—ବୃନ୍ଦାଟବୀର କୁଞ୍ଜମାନଙ୍କରେ ମତ୍ତ ହାତୀ ପରି ବିଳାସ କରୁଥିବା; କୁଞ୍ଜରନାଶକ—କଂସର କୁବଳୟା ହସ୍ତୀକୁ ମାରିଥିବା; ଗୁଞ୍ଜ—କାଇଁଚ; ୨ । ବାସବ—ଇନ୍ଦ୍ର; ରଞ୍ଜା—ରଞ୍ଜନକାରୀ; ୩ । ଧାରକ ସାରଙ୍ଗ—ସାରଙ୍ଗନାମକ ଧନୁ ଧରିଥିବା; ୪ । କଣ୍ଠୀରବ—ସିଂହ

ଖ-ପତି-ପତି ! ବିପତ୍ତି ବେଳକୁ ଉପୁଜି ଅଛି
କି ପତିଆରି ମୋ ଆଉ ଗ୍ରାସୁଛି କାଳ-ଭୁଜଙ୍ଗ ।୫।

ପ୍ରପନ୍ନ ଯଦୁମଣିର ଯଦୁମଣି । ବାଧା ଘୋର
ପ୍ରସନ୍ନେ ମୃଦୁ ପଦାବ୍ଜେ ଚିତ୍ତ ହେଉ ମତ୍ତ ଭୃଙ୍ଗ ।୬।



୫ । ଖ-ପତି-ପତି — ପକ୍ଷୀଶ୍ରେଷ୍ଠ ଗରୁଡ଼ର ପ୍ରଭୁ; ୬ । ପ୍ରପନ୍ନ — ଶରଣାଗତ

( ସତସ୍ତର )

# ଶ୍ରୀ ଦସ୍ଯୁମାଗୁଣି ଜଣାଣ

## ଅରକ୍ଷିତ

( ଊନବିଂଶ ଶତାବ୍ଦୀ )

[ କବି ଅରକ୍ଷିତଙ୍କର କେବଳ ଏହି ଗୋଟିଏ ଜଣାଣ ହସ୍ତଗତ ହୋଇଅଛି । ତାଙ୍କ ସମ୍ବନ୍ଧରେ କୌଣସି ତଥ୍ୟ ସୁଲଭ ନୁହେଁ । ]

( ରାଗ ଝାଞ୍ଜଟୀ )

( ମୁରଲି ତୋରେ ଶରଣ ଗଲି ବୃନ୍ଦେ )

ଜଗତେ ଜଗବନ୍ଧୁ ତୁମ୍ଭର
ନାମ ପଡ଼ୁଅଛି ଯେ ନିରନ୍ତର । ଘୋଷା ।
ଅହଲ୍ୟାକୁ ରାମରୂପେ ଉଧାରି
ଧରି ଉଶ୍ୱାସିଲ ରାବଣ ମାରି । ୧ ।
କୃଷ୍ଣ ରୂପ ଧରି କଂସକୁ ମାରି
ଜନକଙ୍କୁ ପରି ଦେଲ ଉଧାରି । ୨ ।
ବାଞ୍ଛା-କଳ୍ପତରୁ ଜଗତଗୁରୁ
ପାରି କର ମୋରେ ଭବସାଗରୁ । ୩ ।
ଦେବେ ଯେ ତୁମ୍ଭର ନ ପାନ୍ତି ଅନ୍ତ
ସାହସେ ଲୋଡ଼େ ମୁଁ ସେ ପଦପ୍ରାନ୍ତ । ୪ ।
ଅନାଥର ନାଥ ସୁହସ୍ତ ବହି
ଦାନ ଅରକ୍ଷିତେ ନିର୍ଦ୍ଦୟ ନୁହ । ୫ ।



( ଅଠସ୍ତର )

# ଶ୍ରୀ ଆରତହରଣ ଜଣାଣ

## ରଘୁନାଥ ଦ୍ୱିଜ

( ଊନବିଂଶ ଶତାବ୍ଦୀ )

[ ଭକ୍ତ ରଘୁନାଥ ଦ୍ୱିଜଙ୍କର ଏ ଜଣାଣଟି ଭକ୍ତଙ୍କରେ ସର୍ବତ୍ର ପ୍ରଚଳିତ ଥିଲେ ସୁଦ୍ଧା ତାଙ୍କର ପରିଚୟ ଦୁର୍ଲଭ । ]

( ରାଗ ଖରହରପ୍ରିୟା )

ଆହେ ପ୍ରଭୁ ଜଗନ୍ନାଥ !
ବାରେ ଫେଡ଼ ମୋ ଆରତ

ଦୁଃଖ ଦେଖି ମହାପ୍ରଭୁ ! କଷ୍ଟେ ଦେଇଛ କି ହସ୍ତ । ଘୋଷା ।

ଗଜ ଡାକଲା ଜଳରେ     ତାହା ଶୁଣିଲ କର୍ଣ୍ଣରେ
ଚକ୍ରକୁ ପେଷିଲ ଖରେ ଗ୍ରାହପ୍ରାଣ କଲ ହତ । ୧ ।

କୁରୁପତିସଭାତଳେ     ଦ୍ରୌପଦୀ ଆତଙ୍କକାଳେ
କୋଟି ବସ୍ତ୍ର ଦେଇ ହେଳେ ରଖିଲ ତାର ମହତ । ୨ ।

ଆହୁରି କଥାଏ ପୁଣି     ଆତଙ୍କେ ଡାକେ ମୃଗୁଣୀ
ବ୍ୟାଧକୁ ଜୀବନେ ହାଣି ଫେଡ଼ିଲ ତାର ଆରତ । ୩ ।

ଅତି କଷ୍ଟେ ଡାକେ ହରି !     ଦୁଃଖ ନ ଗଲା ମୋହରି
ବାରେ ଶୁଣ ମୋ ଗୁହାରି କହେ ଦ୍ୱିଜ ରଘୁନାଥ ।୪।



(ଅଣାଅଣି)

# ଶ୍ରୀ ମଙ୍ଗଳଆଳତି ଭଜନ

(ଦୀନ) କୃଷ୍ଣ ଦାସ

(ସପ୍ତଦଶ ଶତାବ୍ଦୀ)

(ଚୌପଇ ବୃନ୍ଦ)

ପାହିଲାକ ନିଶି ପହରେକ ଅଛି
ଘନ ଘନ ଶଙ୍ଖ ଫୁଟୁଛି
ରତ୍ନପଲଙ୍କ ଚେତଣ ଜଗନ୍ନାଥ
ସିଂହାସନେ ବିଜେ କରୁଛି । ୧ ।
ସ୍ୱର୍ଗକୁ ଅର୍ଗଳ ଫିଟିଲା କବାଟ
ସ୍ୱର୍ଗ ଅପସରୀ ଆସୁଛି
ହରି ହର ଇନ୍ଦ୍ର କୁଶକେତୁ ବ୍ରହ୍ମା
ଦ୍ୱାରେ ରାମ ରାମ ଭାଷୁଛି । ୨ ।
ବିଦ୍ୱଡ଼ ଘେନ କେ ନିଯୋଗର ଲୋକ
ଭ୍ରମୁକୁ ବୋଲିଣ ଆସୁଛି
ବାସୀ ବସନମାନ ଝାଡ଼ିଝୁଡ଼ି କେ
କର୍ପୂରର ଧୂଳି ଘେନୁଛି । ୩ ।
ଚନ୍ଦ୍ରଦେବତା ନିଶାର ଅଧିପତି
ସେହି ଦର୍ଶନକୁ ଉଇଁଛି
ଲଙ୍କାର ରାଜନ ନାମ ବିଭୀଷଣ
ସେ ଯେ ଥାଟ ଘେନ ଧାଇଁଛି । ୪ ।

---

୧ । ଫୁଟୁଛି—ବାଜୁଛି

ପାର୍ବତୀଙ୍କି କୋଳେ ଯେନ ସଦାଶିବ
ଆନନ୍ଦରେ ଚହିଁ ଆସୁଛି
ସବୁ ଭୂତମାନ ସଙ୍ଗତରେ ଯେନ
ବାବନା ଭୂତହିଁ ଧସୁଛି । ୫ ।

ପାତାଳପୁର ନାଗଲୋକ ସହିତେ
ଶେଷ ବର୍ଣ୍ଣନକୁ ଆସୁଛି
ବ୍ରଜଚରଙ୍କର କଳୁଷ ପଟଳ
ସେହି ଦରଶନ ନାଶୁଛି । ୬ ।

ଓଁଛେ ହରି ଡାକ ଫିଟିଲା କବାଟ
କେହି ପେଲାପେଲି ହେଉଛି
ଜଳୁଛି ଚନ୍ଦ୍ର ଉଦଆ ଯେ ଦହୁଡ଼ି
ଶ୍ରୀମୁଖକୁ ଶୋଭା ପାଉଛି । ୭ ।

ଦହୁଡ଼ି ଯେନ କେ ନଯୋଗର ଲୋକ
ଗ୍ରାମୁକୁ ବୋଲଣ ଧାଉଁଛି
ଦାନ୍ତକାଠି ଥୋଇ ଦର୍ପଣ ଦେଖାଇ
ଶ୍ରୀମୁଖ କେହି ପଖାଳୁଛି । ୮ ।

ପ୍ରଭୁଙ୍କର ଛଡ଼ା ତୁଳସୀ ଚନ୍ଦନ
ଯେନ କରି କେହି ଧାଇଁଛି
ଜଗମୋହନରେ ଛଡ଼ାହୋଇ କେହି
ଧର ଧର ବୋଲି ଯାଚୁଛି । ୯ ।

---

୫ । ଧସୁଛି—ଧାଉଁଛି; ୬ । ଶେଷ—ଅନନ୍ତ ଦେବ

ଉଠ କ ନା ମନ ! ଧରୁଛୁ ଚରଣ
ଗଦ୍ଗଦ୍ ହୋଇ ଯେ ଆସୁଛୁ
କାଳିଆ କାହ୍ନୁକୁ ବେଗେ ଦେଖିପିବା
ମୁଖରେ ଦର୍ଶନ ମିଳୁଛୁ । ୧୦ ।

ଆନନ୍ଦରେ କେହ୍ନ କର ପ୍ରସାରଣ
ଜୁଣ୍ଡେ ଖାଇ ମୁଣ୍ଡେ ପୋଛୁଛୁ
ସୁଦର୍ଶନ ଚକ୍ର ଗୃହ୍ନିଁ କର ଛନ୍ଦିଁ
ଦୀନ କୃଷ୍ଣ ଦାସ ଘଷୁଛୁ । ୧୧ ।



( ଅଶି )

# ଶ୍ରୀ ଚିତ୍ତସମର୍ପଣ ଭଜନ

## (ଦୀନ) କୃଷ୍ଣ ଦାସ

( ସପ୍ତଦଶ ଶତାବ୍ଦୀ )

( ରାଗ କାମୋଦୀ )

ଜୟ ଜଗବନ୍ଧୁ ହେ ଯଦୁନନ୍ଦନ
ବ୍ରଜବାଳୀ-ହୃଦଚନ୍ଦ୍ର-ଚନ୍ଦନ । ଘୋଷା ।

ବଡ଼ଦେଉଳେ ବିହାର  ବଡ଼ ଚିତା ବଡ଼ ଚୂଳ
କି ଶୋଭା ଦିଶୁଛି କଳା ବଦନ । ୧ ।

ସେ ଯେଉଁ ଅଳକାପନ୍ତି  ଦେଖି ଭୁଲିଯିବ ମତି
ମୁନିଜନଙ୍କର ମନମୋହନ । ୨ ।

ବଡ଼ ବଡ଼ ଚକା ଆଖି  ବଳିଆର ଭୁଜ ଦେଖି
ତହିଁରେ ରହିଲା ଲାଗି ମୋ ମନ । ୩ ।

ସେ ଯେଉଁ ରଙ୍ଗ ଅଧର  ପୂରି ରହିଛି ମଧୁର
ନାସେ ଗଜମୋତି ଅତି ଶୋଭନ । ୪ ।

କଟୀତଟେ ପାଟଝୁମ୍ପା  ଓଡ଼ିଆଣୀ ତନୁକମ୍ପା
କି ଶୋଭା ଦିଶୁଛି ରେଖା କୁନ୍ଦନ । ୫ ।

ଶ୍ରୀଜଗନ୍ନାଥଚରଣେ  ଚିତ୍ତ ରହୁ ଅନୁକ୍ଷଣେ
ଦୀନ କୃଷ୍ଣ ଦାସ କରେ ବଖାଣ । ୬ ।



୬ । କରେ ବଖାଣ—କହେ

( ଏକାଅଶି )

# ଶ୍ରୀ ଅନାଥନାଥଭଜନ

## ହୃଦାନନ୍ଦ ଦାସ

( ଅଷ୍ଟାଦଶ ଶତାବ୍ଦୀ )

[ କବି ହୃଦାନନ୍ଦ ଦାସଙ୍କର ଦୁଇ ଗୋଟି ଭଜନ ଏ ସଂଗ୍ରହରେ ସ୍ଥାନ ପାଇଅଛି । କଳିଙ୍ଗରେ ଦୁଇଟିଯାକ ପ୍ରସିଦ୍ଧ ଭଜନରେ ଗଣ୍ୟ । ]

( ରାଗ ଗୌରୀ )

ଅନାଥ-ନାଥଙ୍କୁ ଶ୍ରୀ ଜଗନ୍ନାଥଙ୍କୁ
ଧ୍ୟାନ କର ହୋ ମନ ! ଶ୍ୱେତପଦ୍ମ-ନେତ୍ରଙ୍କୁ । ଘୋଷା ।

ଧନ୍ୟ ସେ ନୀଳାଦ୍ରି-ଡୋଳା, ଭବସାଗରକୁ ଭେଳା
ଉଦେ, ନାହିଁ ଅସ୍ତକଳା ଧ୍ୟାନେ ସଦାଶିବ ଭୋଳା
ମନକୁ ଗଲା ହୋ, ସେ ନେତ୍ରେ ମିଳା ହୋ
ହେଳାକଲେ ପାଇବୁ ତୁ ଦଣ୍ଡଧରଘାତକୁ । ୧ ।

ଧନ୍ୟ ସେ ଗୁରୁ ଭ୍ରୂଲତା ସୁଧାସିନ୍ଧୁକଲ୍ଲଲତା
ଯହିଁଁଣ ଯା ଉର୍ଦ୍ଧ୍ୱରେତା ଧ୍ୟାନେ କରୁଛନ୍ତି ଶାନ୍ତା
ଚନ୍ଦନ ଚିତା ହୋ, କେଡ଼େ ଶୋଭିତା ହୋ
କି ବା ସବିତା ଉଦେ ହୋଇଛି ଜଗତକୁ । ୨ ।

---

୧ । ନୀଳାଦ୍ରି-ଡୋଳା—ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ନୟନଯୁଗଳ; ଉଦେ, ନାହିଁ ଅସ୍ତକଳା—ସଦା ଚିର ପ୍ରସନ୍ନ; ଦଣ୍ଡଧରଘାତ—ଯମଦଣ୍ଡ; ୨ । ଉର୍ଦ୍ଧ୍ୱରେତ—ସିଦ୍ଧଯୋଗୀ

ଫୁଟିଛି ଶ୍ୱେତକମଳ ସର୍ବଦାକାଳେ ଉଜ୍ଜ୍ୱଳ
ବାସନାରେ ହୋଇ ଭୋଳ ଚୁମ୍ବଇ ଭକ୍ତ-ଭୃସଳ
ପାଇ ଶୀତଳ ହୋ, ନ ଗ୍ଲୁଡ଼େ କୋଳ ହୋ
ଅମୃତପାନେ ସର୍ବଦା ବଳାଇଛୁ ଚଉକୁ । ୩ ।

ସୁଗନ୍ଧ କୁସୁମମାଳେ ବାନ୍ଧଣ ଅଛନ୍ତ ଗଳେ
ଇନ୍ଦ୍ରଧନୁଦର୍ପ ଦଳେ ମୟୂରଚନ୍ଦ୍ରିକା ଚୂଳେ
କେଉଁ ସୁଛଳେ ହୋ, ବାମକୁ ଢଳେ ହୋ
ସେ ପାଦପଦ୍ମରେ ହୃଦାନନ୍ଦ ରଖେ ଚଉକୁ । ୪ ।



---

୩ । ଭୃସଳ—ଭ୍ରମର

( ବୟାଅଶି )

# ଶ୍ରୀ ଶ୍ରୀ ଉମାଗୁଣି ଜଣାଣ

## ରାମକୃଷ୍ଣ ପଟ୍ଟନାୟକ କବିଚନ୍ଦ୍ର

(ଅଷ୍ଟାଦଶ ଶତାବ୍ଦୀ)

[ ରାମକୃଷ୍ଣ ପଟ୍ଟନାୟକ କବିଚନ୍ଦ୍ର ବନମାଳୀ ଦାସଙ୍କ ସମକକ୍ଷ ଜଣେ ପ୍ରସିଦ୍ଧ ସଙ୍ଗୀତଲେଖକ ଥିବେ । ତାଙ୍କ ସଙ୍ଗୀତାବଳୀ ଅଦ୍ୟାବଧି ଅପ୍ରକାଶିତ । ତାଙ୍କ ରଚନାଶୈଳୀ ପରିମାର୍ଜିତ ଓ ରମଣୀୟ । ]

( ରାଗ ଲଳିତ )

ଦୟାକର ଦୀନବନ୍ଧୁ ! ଶୁଭେ ଯାଉ ଆଜ ଦିନ
କର ଯୋଡ଼ି ତୁମ୍ଭ ପଦେ କରୁଅଛି ନିବେଦନ ।ଘୋଷା।
ଅନାଦି ଅନନ୍ତ ହରି କ୍ଷୀରସାଗରବିହାରି !
ଲକ୍ଷ୍ମୀଦେବୀମନୋହାରୀ ପ୍ରଭୁ ପତିତପାବନ । ୧ ।
ସନ୍ଥ[1]ଶାନ୍ତିପ୍ରଦାୟକ ଦୁଷ୍ଟଶାସ୍ତିବିଧାୟକ
ରୁକ୍ମଣୀପ୍ରାଣନାୟକ ଜଗତ-ଜନ-ବନ୍ଦନ । ୨ ।
ଜଗଜ୍ଜନହିତକାରୀ ଦଶଅବତାରଧାରୀ
ମଧୁସୂଦନ ମୁରାରି କାଳୀୟଦର୍ପଗଞ୍ଜନ । ୩ ।
ଯେଣେ ଚକ୍ଷୁ ପଡ଼େ ନାହିଁ ତୁମ୍ଭ କୀର୍ତ୍ତି ବିରାଜଇ
ଭବ ଚିତ୍ତ ପୁଲକଇ ହେ ଭକ୍ତହୃଦଚନ୍ଦନ । ୪ ।
ତୁମ୍ଭେ ଧ୍ୟାନ ତୁମ୍ଭେ ଜ୍ଞାନ ମୁକ୍ତିଦାତା ଭଗବାନ
ତୁମ୍ଭ ବିନୁ ନାହିଁ ଆନ କଳି-କଳୁଷନାଶନ । ୫ ।
ତୁମ୍ଭେ ଏ ସଂସାରେ ସାର ଆଉସବୁ ମାୟା ଘୋର
କୃତାନ୍ତଭୟୁଁ ଉଦ୍ଧର କହେ ରାମକୃଷ୍ଣ ଦୀନ । ୬ ।

---

୧ । ସନ୍ଥ—ସାଧୁ

( ଦେସ୍ନାଅଣି )

# ଶ୍ରୀ ଦେବସ୍ନାନ ଭଜନ

## ଗୌରଚରଣ ଅଧିକାରୀ

( ଊନବିଂଶ ଶତାବ୍ଦୀ )

( ରାଗ ସାବେରୀ )

ଦୀନବନ୍ଧୁ ଦୁରିତନାଶନ ହେ
ଶ୍ରୀଦେବାଧିଦେବରାଜେ
ମହାମହୋତ୍ସବ କରିବାକୁ ଦେବ-
ସ୍ନାନମଣ୍ଡପକୁ ବିଜେ । ଘୋଷ
ହେଲା ରତ୍ନସିଂହାସନ ମହାପ୍ରଭୁ !
ହେଳ ପତିତଙ୍କ ଦୁଃଖ
ନିରେଖମାନେ ନିସ୍ତାର ହୋଇଯିବେ
ନିରେଖି କଳାଶ୍ରୀମୁଖ ।୧।

ଦିବ୍ୟ ବେଶ ହୋଇ ଦୟାଳୁ ସାମନ୍ତ
ଦେଉଳରୁ ବାହାରିଲେ
ମସ୍ତକରେ ହସ୍ତ ନିବେଶି ସମସ୍ତ
ଜନମାନେ ଜୁହାରିଲେ ।୨।

ବାଜେ ଜୟଶଙ୍ଖ ମଙ୍ଗଳମହୁରୀ
ମର୍ଦ୍ଦଳ ବୀରକାହାଳୀ
ପୁରୁଷମାନଙ୍କ ହରିବୋଲଧ୍ୱନି
ନାରୀଙ୍କର ହୁଳହୁଳି ।୩।

କେହୁ ଧରେ ଛତ୍ର ଆଡ଼େଣୀ ବ୍ୟଜନ
କେ ଧୀରେ ଢାଳେ ଚାମର
ଆଗେ ମାଳ ମାଳ ଉଡ଼ୁଛି ଚଞ୍ଚଳ
ଢଳେ ଆଲଟ ରୁଚିର ।୪।

ଛଡ଼ବାଡ଼ ଧରି ଡାକେ ପଡ଼ିଆରୀ
ମଣିମା ମଣିମା ବାଣୀ
ସ୍ନାନମଣ୍ଡପକୁ ବିଜେ କର ପ୍ରଭୁ
ତ୍ରୈଲୋକ୍ୟର ଚିନ୍ତାମଣି ।୫।

ଝାଟଣିସେବକେ ପଥ ସମାର୍ଜନ୍ତି
ପକାନ୍ତି ପାଦ୍ୱାଡ଼ା ତୂଳି
ପହଣ୍ଡି ବିଜୟେ କରନ୍ତି ଗୋବିନ୍ଦ
ଧୀରେ ଧୀରେ ଚଳି ଚଳି ।୬।

ରତନମଣ୍ଡପ ଗୃହୁ ଚନ୍ଦ୍ରାତପ
ଚନ୍ଦ୍ରବଦନରେ ଶୋଭା
ଯହିଁରେ ପାବକ ବସିଅଛି ସ୍ୱଚ୍ଛ
ଶୁଦ୍ଧ ବ୍ରହ୍ମଜାତ ପ୍ରଭା ।୭।

ଜାମ୍ବୁନଦ ହେମବାଟେ ମନୋରମ
ଆଉଜିବା ଅପସର
ଭାଇ ଭଗ୍ନୀ ସଙ୍ଗେ ଦେନକଣ୍ଠ ରଙ୍ଗେ
ବିଜୟେ ଜଗୁସୋଦର ।୮।

ଇନ୍ଦ୍ର, ଚନ୍ଦ୍ରଦେବ, ନୈଋତ, ବରୁଣ
ସୁର ସିଦ୍ଧ ବିଦ୍ୟାଧରୀ
ଶ୍ରୀଗୁମ୍ଫରେ ଆସି ସେବା କରୁଛନ୍ତି
ମାନବ ମୂରତି ଧରି । ୯ ।

ଅନେକ କନକଘଟ ପୂର୍ଣ୍ଣକରି
ଆକାଶର ଗଙ୍ଗାପାଣି
ଜୟ ଜୟ ଜଗନ୍ନାଥ ବାଣୀ ଭଣି
ଶିରେ ନଉଛନ୍ତି ଆଣି । ୧୦ ।

ବ୍ରହ୍ମା ଶିବଙ୍କୁ ଲଭ୍ୟ ନୋହୁଥିଲା ଯେ
ସେହି ସେ ଚରଣାମୃତ
ଏବେ ଇଚ୍ଛାସୁଖେ ପାନ କରି ଲୋକେ
ହେଉଛନ୍ତି କୃତକୃତ୍ୟ । ୧୧ ।

ଅତି ସମ୍ଭ୍ରମରେ ସ୍ନାନମହୋତ୍ସବ
ବିଧାନକୁ ବଢ଼ାଇଲେ
ଧୂପଦୀପ ବନ୍ଦାପନା ଦେବାର୍ଚ୍ଚନ
କର୍ପୂରଆଳତି କଲେ । ୧୨ ।

ପଣ୍ଡା ପଶୁପାଳ ନାନା ଧଣ୍ଡାମାଳ
ଶ୍ରୀଅଙ୍ଗରେ ଲମ୍ବାଇଲେ
କଳା କରିବରବେଶ ଧରି ହରି
ନାହୁଡ଼ାବିଜୟ କଲେ । ୧୩ ।

ସ୍ୱପ୍ନରାଜଉପାସକ ଏକ ଦ୍ୱିଜ
ଭକ୍ତ ପୂର୍ବେ ଥିଲ ଆସି
ଏ ମହାପ୍ରଭୁ ନୁହନ୍ତ ବୋଲି କ୍ରୋଧେ
ଯାଉଥିଲ ସେହୁ ରୁଷି ।୧୪।

ଜାଣି ତାର ମନ କରୁଣାନିଧାନ
ଆଣି ପାଶେ ରଖାଇଲେ
ଗଜବଦନଶୋଭା ବେନି ନୟନ
ତାର ଆଗେ ଦେଖାଇଲେ ।୧୫।

ସେହି ଦିନଠାରୁ ଗଜବେଶ ହେଲେ
ଭକ୍ତବନ୍ଧୁ ଭାବଗ୍ରାହୀ
ବଡ଼ଦେଉଳକୁ ଝୁଲି ଝୁଲି ବଜେ
ଠାବେ ଠାବେ ରହି ରହି ।୧୬।

ଅନେକ ଜଳଅଭିଷେକ ହେବାରୁ
ଶ୍ରୀଅଙ୍ଗେ ଅଳସ ଯହୁଁ
ଲୋକତ ବେଭାର ଅଣସର ଘରେ
ଗୁପତେ ରହିଲେ ତହୁଁ ।୧୭।

ଭକ୍ତଙ୍କ ଆକୁଳ ଜାଣି ଅନୁକୂଳ
କଲେ କରୁଣାନିଧାନ
ଅଣସରଘର କରିଣ ଅନ୍ତର
ଗୁଣ୍ଡିଗୃଯାସାବଧାନ ।୧୮।

ନବଜଳଧରରୂପ   ମନୋହର
ଶ୍ରୀମୁଖମଣ୍ଡଳ   ଶୋଭା
ଜଗତମୋହନ   ବେଶ ଧରି ହରି
ମଣୋହି କୋଠାରେ ଉଭା । ୧୯ ।

ସେ କାଳର ଶୋଭା ମଣୋହି ଉତ୍ସବ
ଦେଖିଛି   ଯାହାର   ଆଖି
କବି   ଛାର   କାହିଁ ସେ ଛବି   ବର୍ଣ୍ଣିବ
ସେହି ତାର ଏକା ସାକ୍ଷୀ । ୨୦ ।

କାଲି ଶ୍ରୀଗୁଣ୍ଡିଚାଯାତ୍ରା ହେବ ବୋଲି
ଆଜଠାରୁ   ହୋଇ   ସଜ
ନନ୍ଦିଘୋଷ   ରଥେ   ବିଜୟ   କରିବେ
ବିସ୍ତାରଣ   ବେନି ଭୁଜ । ୨୧ ।

ଶ୍ରୀପୁରୁଷୋତ୍ତମ   କ୍ଷେତ୍ର   ପରମ
କେହି   ନ   ଜାଣନ୍ତି   କିଛି
ଧର୍ମ   ଅର୍ଥ   କାମ   ମୋକ୍ଷ ଏ ପ୍ରତ୍ୟକ୍ଷ
ଠାବେ ଠାବେ ପୂରିଅଛି । ୨୨ ।

କେ   କହିପାରିବ   ଶ୍ରୀକ୍ଷେତ୍ରମହିମା
ଶେଷମୁଖେ   ନୋହେ   ଶେଷ
ଦେବଙ୍କୁ   ଦୁର୍ଲଭ   ମର୍ତ୍ତ୍ୟର   ବୈକୁଣ୍ଠ
ଲୀଳା ଅଶେଷୁ ଅଶେଷ । ୨୩ ।

ହେ ଜଗନ୍ନିବାସ ! ମୋର କ୍ଷେତ୍ରବାସ
କରିବାକୁ ବଡ଼ ଆଶ
କଣ୍ଠିଦପି ଏନ୍ନ ଅନୁଜ୍ଞା ମାଗଇ
ଗଉରଚରଣ ଦାସ । ୨୪ ।



---

୨୪ । କଣ୍ଠିଦପି—କଣ୍ଠିଦବସ, ଘଡଦନ,

( ଚଉରାଅଶି )

# ଶ୍ରୀ ପହଣ୍ଡି ବିଜେ ଜଣାଣ

## ଗୌରଚରଣ ଅଧିକାରୀ

( ଊନବିଂଶ ଶତାବ୍ଦୀ )

( ରାଗ ଖରହରପ୍ରିୟା )

କାଳିଆ କାହ୍ନୁ ! ଆଉ ବିଳମ୍ବ କର କାହିଁକି ?
ବରଷକେ ଥରେ ବିଜୟ ରଥରେ
ପତିତ ତାରିବା ପାଇଁକି । ଘୋଷା ।

ଚଉଦ ବ୍ରହ୍ମାଣ୍ଡ ରୁଣ୍ଡ ହୋଇଛନ୍ତି
ଦର୍ଶନ କରିବା ପାଇଁକି
ଅନେକ କାଳର ଦୁଃଖ ଉପେକ୍ଷିବେ
କଳାଶ୍ରୀମୁଖକୁ ଚାହିଁକି । ୧ ।

ଆଗେ ଗଜପତି ଉଭା ହୋଇଛନ୍ତି
ଶିରେ ଯୋଡ଼ି କର ଦୁଇକି
ସୁନା ଶୋଧନୀରେ ମାର୍ଜନା କରନ୍ତି
ପହଣ୍ଡି ବିଜେ ପ୍ରଭୁଙ୍କି । ୨ ।

ଛତିଶା ନିଯୋଗେ ଉଭା ହୋଇଛନ୍ତି
ସେ ସୁଜନ ହେବେ ଯହିଁକି
ଆକାଶେ ଇନ୍ଦ୍ର ଅମରବୃନ୍ଦ ପୁଷ୍ପ
ବୃଷ୍ଟି କରୁଛନ୍ତି ତହିଁକି । ୩ ।

ତାଳଧ୍ୱଜ ରଥେ ବିଜୟେ କରନ୍ତି
କହ୍ନାଇଅ ବଡ଼ଭାଇଙ୍କି
ଦେବୀରଥ ବଡ଼ ସୁନ୍ଦର ଦିଶିବ
ଭଉଣୀ ହଳଦୀମୁହାଁଙ୍କି । ୪ ।

ତୁମ୍ଭେ ପଛରେ ପଛକେ ଆସୁଥାଅ
କର ନବରଙ୍ଗଛନ୍ଦ
ମଥା ଦୋହଲାଇ ଠାଣିଆ ହଲାଇ
ଠାବେ ଠାବେ ରହି ରହନ୍ତ । ୫ ।

ସେବକମାନଙ୍କ ଅଙ୍ଗ ଶ୍ରମଝାଳ
ଗମ ଗମ ପଡ଼ୁ ବନ୍ଧୁ କି
ଝଙ୍କାଝଙ୍କି କରିବାରୁ ବାଧୁଥିବ
ପରା ସୁକୁମାରଦେହନ୍ତ । ୬ ।

ଦେବଦାସୀ ନାଚ ଉତ୍କୃଷ୍ଟ କରନ୍ତି
ତା ଥା ଧିମି କଟ ତଥଇକ
ବାଜେ ଖୋଳ ତାଳ ମହୁରୀ ମଞ୍ଜୁଳ
ମର୍ଦ୍ଦଳ ତା ଧେଇ ଧେଇକ । ୭ ।

କା ନେତ୍ର ଜ୍ୟୋତିକ ବହେ ଥକ ଥକ
କେହି ନାଚେ ଗୀତ ଗାଇକି
ଜଗମୋହନଆ ଜଗତଜନକୁ
ଲଗାଇଛି ପ୍ରେମବାଇକ । ୮ ।

କେତେ ଖାଇବ କଦଳୀ କରମଙ୍ଗା
ସରପୁଳୀ ଖଣ୍ଡ ଖାଇକ
ନାଡୁ ବଡ଼ ଗଜା ମନୋହର ଖଜା
ଛେନାପୁର ରସାବଳୀକ । ୯ ।

କେ କେତେ ତମାଳୀ ଗୀତ ଶୁଣାଇବେ
କେ କେତେ କରିବେ ଟାହ୍ନିକି
ଖଣ୍ଡି ଚିରଦୁଃଖ ମଣ୍ଡିଦେବ ଆଜ
କ୍ଷେତ୍ରବଡ଼ଦାଣ୍ଡସାହାକ । ୧୦ ।

ନନ୍ଦନ ଅବଧି ଲକ୍ଷ୍ମୀଙ୍କି ପ୍ରବୋଧି
ଆସିଅଛ ପରା କହ୍ନା କି
ଲୁଗାହୋଇ ଆସ ଚହ୍ଲିଅଛ ଟି କି
ଜଳପତିକେମାଦେଶଙ୍କ । ୧୧ ।

ଆହେ ଚକାଡ଼ୋଳା ! ବୃନ୍ଦାବନଲୀଳା
ମନେ, ଆଜ ପଡ଼ୁନାହିଁ କି
ଆସ ବଂଶୀଧାରୀ ! ତରାଇବ ପରା
ଜଗତ-ଭଗତ-ଗାଣଙ୍କି । ୧୨ ।

ପାପ-ଅନ୍ଧକାର ଦୂର କି କରିବ
ଆଉ ସେ ପାରିବ ତୁଇଁକି ?
ନୀଳଶଇଳଶିଖରପୂର୍ଣ୍ଣଚନ୍ଦ୍ର
ଆସୁଛନ୍ତି ପରା ଉଇଁ କି । ୧୩ ।

ଅପଲକ ଦୃଷ୍ଟି କର ରେ ମାନସ !
ଆଉ ଏ ସମୟ ପାଇ କି ?
ଗଉରଚରଣ ପଶିଲା ଶରଣ
ନନ୍ଦିଘୋଷରଥଗୁଇକି । ୧୪ ।



( ପଞ୍ଚାଅଶି )

# ଶ୍ରୀ ଗୁଣ୍ଡିଚାବାଡ଼ିବିଜେ ଭଜନ

## ଗୌରଚରଣ ଅଧିକାରୀ

( ଊନବିଂଶ ଶତାବ୍ଦୀ )

( ରାଗ ସାବେରୀ, ରଥଗୁଡ଼ି ବୃତ୍ତେ )

ପ୍ରାଣସଙ୍ଗାତ ରେ ! ନୟନ ପୂରାଇ ଅନା

ପଞ୍ଚହର ହୋଇ କେମନ୍ତେ ଉଡ଼ଇ
ତିନି ରଥେ ତିନି ବାନା । ଘୋଷା ।

ତାଳଧ୍ୱଜ ଦେବଦଳନ ଶ୍ରୀନନ୍ଦି-
ଘୋଷ ନାମ ସୂଘଟନା
ଭାଇଭଗ୍ନୀ ସଙ୍ଗେ ବସିଜେ କି ରଙ୍ଗେ
ନାଗର ଛଇଲ କହ୍ନା ।୧।

ଡାହାଣେ ଶ୍ରୀ ବଳଭଦ୍ର ଦେବରାଜ
ବଡ଼ଠାକୁର ଯାହା ଙ୍କା
ବାମେ ନନ୍ଦଘୋଷେ କି ସୁନ୍ଦର ଦିଶେ
ନି ପ ଣ୍ଡ କା ଳ ଆ ସୁ ନା ।୨।

ବେନ ଭାଇ ମଧ୍ୟେ ହରିଦ୍ରାବରଣୀ
ସୁଭଦ୍ରାଙ୍କ ଚନ୍ଦ୍ରାନନା
ଗୋକୁଳ ନଗରେ ଯିବାକୁ ଭାବରେ
ହୋଇଛନ୍ତି ଉନମନା ।୩।

ତ୍ରୈଲୋକ୍ୟମୋହନ ଶ୍ରୀଙ୍କ ଅପଘନ
ଶୋଭା ସୁନ୍ଦର କଳନା
ଉପମା ଦେବାକୁ ଭୁବନପୁରେ ନାହିଁ
ଯା ସୌନ୍ଦର୍ଯ୍ୟ ଅତୁଳନା ।୪।

ଚାନ୍ଦୁଆ ଝୁଲଇ ଗୁଡିକ ଫୁଲଇ
କ ମନେ କର ଭାବନା
ପଡନ୍ତି ଝର୍ଜରେ ଝଣ୍ଟୁ ଦେବଗୃହେ
ପୂରନ୍ତି ଭକ୍ତ କାମନା ।୫।

ସିଂହଦ୍ୱାରୁ ଶରଧାବାଲିଯାଏଁ
ଶ୍ରୀକ୍ଷେତ୍ରବରପାଟଣା
ଶ୍ରୀପୁରୁଷୋତ୍ତମ ଯାହାକୁ ବୋଲନ୍ତି
କାହାକୁ ନାହିଁ ବା ଜଣା ।୬।

ଲକ୍ଷ୍ମୀଭାତଖିଆ ଜଗନାଥିଆର
କଉତୁକ ବୁଝାମଣା
ଜନମାନଙ୍କର ଗହଳଚହଳେ
କେ କାହିଁ ହୁଅନ୍ତି ବଣା ।୭।

ଆଜ କ ଆନନ୍ଦେ ଉଛୁଳ ପଡୁଛି
ଗୁ ଣ୍ଡି ଚା ଘା ଟ ଅ ଗ ଣା
ଗହଗହ ନାଦ ବାଜେ ନାନା ବାଦ୍ୟ
କେ କରିବ ତା ବର୍ଣ୍ଣନା ।୮।

ଆମ୍ଭ ଠାକୁରାଣୀ ଗୃହିଁ ରହିଛନ୍ତି
କରି ମନ୍ଦିରମାର୍ଜ୍ଜନା
ଏ କଳାଶ୍ରୀମୁଖ ଦରଶନ କରି
ହରିବେ ହୃଦଯାତନା ।୯।

ଆମ୍ଭେ ସବୁସଙ୍ଗୀ ହୁଳହୁଳି ଦେଇ
କରିବା ଗୋ ବନ୍ଦାପନା
ଗୌର ଦ୍ୱିଜ କହି ସବା ଚଛେ ରହି
ଛଡ଼ାଇବ ଆବର୍ଜନା ।୧୦।



୯ । ଅମ୍ଭ ଠାକୁରାଣୀ—ବ୍ରଜେଶ୍ୱରୀ ଶ୍ରୀରାଧା; [ ଶ୍ରୀଜଗନ୍ନାଥ ଗୁଣ୍ଡିଚାରୁ ଯାତ୍ରା କରି ବୁଲୁଥିବାରୁ ବ୍ରଜକୁ ଗମନ କରନ୍ତି ]

( ଛୟାଅଶି )

# ଶ୍ରୀ ଗୁଣ୍ଡିଚାବିଜେ ଜଣାଣ

## ଅଭିମନ୍ୟୁ ସାମନ୍ତସିଂହାର

( ଅଷ୍ଟାଦଶ ଶତାବ୍ଦୀ )

( ରାଗ ବୈଶାଖ )

ଜୟ ଜୟ ଜଗନ୍ନାଥ ଚଢ଼ି ନନ୍ଦଘୋଷ ରଥ
ଅନ୍ତର୍ଯ୍ୟାମି ! ଅନ୍ତର୍ଗତବାରତା ଜାଣ
ଦୁଃଖୀ ଜଣାଇଲେ ଦୁଃଖ କେବେହେଁ ନୁହ ବିମୁଖ
ଦୁଃଖ ଏଡ଼ି ସୁଖ ତାକୁ ଦିଅ ପ୍ରମାଣ
ସେହି ପ୍ରଭୁ ନୁହ କି ତୁମ୍ଭେ ?
ଦୁଃଖୀ ଜଣାଇଲେ ଦୁଃଖ ନ ଶୁଣ ଏବେ ।୧।

ପୂର୍ବେ ନରସିଂହରୂପେ ସ୍ତମ୍ଭରୁ ବାହାରି ଆପେ
ହିରଣ୍ୟରାଜାର ହୃଦ ନଖେ ଚିରିଲ
ତା ପୁତ୍ର ପ୍ରହଲ୍ଲାଦକୁ ସ୍ୱର୍ଗେ ଇନ୍ଦ୍ର କଲ ତାକୁ
ଧ୍ରୁବକୁମରକୁ ଅଭିମାନୁଁ ତାରିଲ
ସେହି ପ୍ରଭୁ ନୁହ କି ତୁମ୍ଭେ ?
ଦୁଃଖୀ ଜଣାଇଲେ ଦୁଃଖ ନ ଶୁଣ ଏବେ ।୨।

ଦୁର୍ଯ୍ୟୋଧନସଭାତଳେ ଦ୍ରୌପଦୀଙ୍କି ନେଲାବେଳେ
ସତୀ ବିବସନକାଳେ ଚିନ୍ତିଲେ ଯହୁଁ
ଆର୍ତ୍ତଜନାଶନବାନା କୃପାଦକୁ ବିଜେସେହା
ପଞ୍ଚାବନକୋଟି ବସ୍ତ୍ର ଦେଲଟି କାହୁଁ !

ସେହି ପ୍ରଭୁ ନୁହ କ ତୁମ୍ଭେ ?
ଦୁଃଖୀ ଜଣାଇଲେ ଦୁଃଖ ନ ଶୁଣ ଏବେ ।୩।

ବନଜୀବ, ପଶୁଜାତି ତା ସଙ୍ଗେ ବାଳସନ୍ତତି
ଆପେ ଗର୍ଭବାସ ହୋଇ ବୁଲେ ବନରେ
ଶବର ବିନ୍ଧିଲା ବାଣ ମୃଗୀ ଶନ୍ତ୍ରେ ନାରାୟଣ
ବଜ୍ର ମାରି ବ୍ୟାଧପ୍ରାଣ ନେଲଟି ଖରେ
ସେହି ପ୍ରଭୁ ନୁହ କ ତୁମ୍ଭେ ?
ଦୁଃଖୀ ଜଣାଇଲେ ଦୁଃଖ ନ ଶୁଣ ଏବେ ।୪।

ଗଜରାଜ ଜଳ ପିଇଁ ଗ୍ରାହ ପୀଡ଼ାକଲା ସହୁଁ
ଆତଙ୍କେ ଡାକିଲା ଗଜ ରଖିଲ ହେଲେ
ଆତଙ୍କନାଶନବାନା ଚପଦକୁ ବଜ୍ରସେନ୍ହା
ଅଦଭୁତେ ଗ୍ରାହଶିର ଛେଦିଲ ଜଳେ
ସେହି ପ୍ରଭୁ ନୁହ କ ତୁମ୍ଭେ ?
ଦୁଃଖୀ ଜଣାଇଲେ ଦୁଃଖ ନ ଶୁଣ ଏବେ ।୫।

ବାଳି ଦଶାନନ ମାରି ସୁଗ୍ରୀ ବିଭୀଷଣ ଠାରି
ଅକଣ୍ଟକ ରାଜ୍ୟ ଦେଲ ସୁବର୍ଣ୍ଣପୁରୀ
ଉଗ୍ରସେନେ ଶାଢ଼ୀ ଦେଇ ଯୁଧିଷ୍ଠିରଙ୍କି ହେଲ ସ୍ନେହୀ
ଦୁର୍ଯ୍ୟୋଧନଶତଭ୍ରାତା କୂଟେଣ ମାରି
ସେହି ପ୍ରଭୁ ନୁହ କ ତୁମ୍ଭେ ?
ଦୁଃଖୀ ଜଣାଇଲେ ଦୁଃଖ ନ ଶୁଣ ଏବେ ।୬।

ଦାମୋଦର ପଣ୍ଡା ଦୁଃଖେ ଆଚମ୍ବିତ କଥା ଦେଖ
ଭିକ୍ଷାକୁ ମାଗିଣ ସେହୁ ବଞ୍ଚଇ ଜୀବନ
ସେ ଗଲା ଦ୍ୱାରକାପୁର ସେବିଲା ତୁମ୍ଭ ପୟର
ବିପୁଳ ସମ୍ପତ୍ତି ଦେଲ ହେ ଭଗବାନ !
ସେହି ପ୍ରଭୁ ନୁହ କି ତୁମ୍ଭେ ?
ଦୁଃଖୀ ଜଣାଇଲେ ଦୁଃଖ ନ ଶୁଣ ଏବେ ।୭।

ଧନ-ଅଭିମନ୍ୟୁ-ମାନ କହିଲେ କର୍ଣ୍ଣ ନ ଶୁଣ
ଆହେ ପ୍ରଭୁ ଶଙ୍ଖଚକ୍ରସାରଙ୍ଗଧର !
ଲକ୍ଷ ଯୋଜନରେ ଥାଇ ଡାକିଲେ ଶୁଣ ଗୋସାଇଁ ।
ତେଣୁ କରି ଭରସା ଟି ଅଛୁ ମୋହର
ସେହି ପ୍ରଭୁ ନୁହ କି ତୁମ୍ଭେ ?
ଦୁଃଖୀ ଜଣାଇଲେ ଦୁଃଖ ନ ଶୁଣ ଏବେ ।୮।



୭ । ଦାମୋଦର ପଣ୍ଡା—ସୁଦାମାବିପ୍ର;

( ଶାତାଅଶି )

# ଶ୍ରୀ ରଥଯାତ୍ରା ଜଣାଣ

ଗୌରଚରଣ ଅଧିକାରୀ

( ଊନବିଂଶ ଶତାବ୍ଦୀ )

( ରାଗ ଦ୍ୱରକାମ୍ବୋଜୀ )

ନୀଳାଦ୍ରି ସିଂହ ! କି ଲୀଳା ଲଗାଇଛ ଆଜି କି ?
ନିସ୍ତାରିବାପାଇଁ ପତିତମାନଙ୍କୁ
ବିସ୍ତାରିଛ ବେନି ପାଣିକି । ଘୋଷା ।

ଏକା କଥା ଯାହା ଶୁଣୁ ଆସିଅଛି
ମହାଲକ୍ଷ୍ମୀଠାକୁରାଣୀଙ୍କି
ସେ ଏବେ କି ଦୁଃଖେ ବସି ମ୍ଳାନମୁଖେ
ନଖେ ଖରନ୍ତି ଧରଣୀକି ।୧।

ତୁମ୍ଭେ ନନ୍ଦଘୋଷପୃଷ୍ଠେ ବସି ହୃଷ୍ଟେ
କର କଟାକ୍ଷଗୃହିଣୀଙ୍କି
ଦର୍ଶନମାନଙ୍କେ ଅଶେଷ କଳୁଷ-
ମାନଙ୍କୁ ପକାଅ ହାଣି କି ।୨।

ଆଗେ ବଳଭଦ୍ର ମଧ୍ୟରେ ସୁଭଦ୍ରା
ପଛରେ ଛଇଲମଣି କି
ତିନି ଗୁଣେ ସ୍ଥିତି ନିର୍ଗୁଣମୂରତି
କେ ପାରେ ସେ ତତ୍ତ୍ୱ ଜାଣି କି ।୩।

ଜକ ଜକ କଳାଶ୍ରୀମୁଖ ଝଟକ
ନନ୍ଦେ ଇନ୍ଦ୍ରନୀଳମଣି କି
କେମନ୍ତ ସୁନ୍ଦର ରଙ୍ଗିମା ଅଧର
ବଧୂଲି କୁସୁମ ଜିଣି କି ।୪।

ତ୍ରିସପ୍ତବ୍ରହ୍ମାଣ୍ଡ ଯାକ ଶୋଭା ରୁଣ୍ଡ
ସାର ସାର ଘୁଣି ଘୁଣି କି
ବସ୍ତର ବସ୍ତୁର ଚାରୁବଦନ ଏ
ରୂପ ଅଛି ନରମାଣି କି ।୫।

ରଥର ଦଉଡ଼ି ଲମ୍ବେ ଧାଡ଼ି ଧାଡ଼ି
କବା ସେ ବାସୁକୀଫଣୀ କି
ନର ସ୍ୱରୂପେ ଅମରଗଣ ମିଶି
ସଧୀରେ ଧରନ୍ତ ଟାଣି କି ।୬।

ରଣ କଟ କଟ ମଲେନ୍ଦ୍ର ପ୍ରକଟ
ଘଣ୍ଟନାଦ ଟିଣିଟିଣି କି
ବାଜେ ଦୁମୁ ଦୁମୁ ଦୁନ୍ଦୁଭି ମର୍ଦ୍ଦଳ
ବେଣୁ ବୀଣା ଅଳାବେଣି କି ।୭।

ଛତ୍ର ଚାମର କଳସ ମନୋହର
ଝଳସ ରଥ ସାଜେଣୀ କି
କର ଢୁଙ୍ଗୁ ଘୋଷ ଚଳେ ନନ୍ଦିଘୋଷ
କମ୍ପାଇ ଦିଏ ଧରଣୀ କି ।୮।

ଗର୍ଜ୍ଜୁନାହିଁ ତର୍ଜ୍ଜୁଅଛୁ ସେ ପ୍ରକୋପେ
ବର୍ଜ୍ଜୁଛୁ ପାତକଶ୍ରେଣୀକି
ପଳା ତୁ ଅଠରନଳାଠାରୁ ବଳି
ନ ଆସିବୁ ଆଉ ଏଣିକି ।୯।

ଜଗତକରତା ଚତୁର୍ବର୍ଗଦାତା
ଫିଟାଇ ଐଶ୍ୱର୍ଯ୍ୟଖଣିକି
ପ୍ରେମଚନ୍ଦ୍ରାମଣିସମ୍ପତ୍ତିକି ଆଣି
ଦାଣ୍ଡରେ ଦେଉଛୁ ବୃଣିକି ।୧୦।

ଦରଶନେ ଆଜ ଆନନ୍ଦ ଉଚ୍ଛୁଳେ
କେତୁ ଘୋଷେ ଜୟବାଣୀକି
ଯଦ୍ୟା ମନେ ଯାହା ଅଛଇ ସେ ତାହା
ଜଣାଏ ଚିନ୍ତାମଣିଙ୍କି ।୧୧।

ଗଉରଚରଣ ବୋଲେ ବାପରଣ
ପକାଉଛୁ ଆଉ ଜାଣିକି
ମୋ ମରଣବେଳା ଜାଣି କୋଡ଼ୋଳା !
ଦେଖାଇବ ଏହୁ ଠାଣିକି ।୧୨।



( ଅଠାଅଶି )

# ଶ୍ରୀ ଗୁଣ୍ଡିଚାବାଡ଼ି ବିଜେ ଜଣାଣ

## ଗୌରଚରଣ ଅଧିକାରୀ

( ଊନବିଂଶ ଶତାବ୍ଦୀ )

( ରାଗ କାମୋଦୀ )

ନୀଳାସିଂହ ! କାର୍ତ୍ତିକ ଅଇଲୁ ରେ ଶ୍ରୀନୀଳକନ୍ଦର ଛାଡ଼ି
ଭାଇଭଗ୍ନୀ ସଙ୍ଗେ ଯେବେ କର ରଙ୍ଗେ
ରହିବୁ ଗୁଣ୍ଡିଚାବାଡ଼ି । ଘୋଷା ।

ଝଙ୍କାରେ ମୁଆର ଗନ୍ଧ ପରଷିଲେ
ତେବେ ନ ପୂରଇ ପେଟ
ଏଠାରେ ସପୁରୀ ପଣସ କଦଳୀ
ଖାଇ ହୋଇଯିବୁ ମୋଟ ।୧।

ଅରଗଳ ଗଳି ଯିବାକୁ ଟେଣିକ
ବ୍ରାହ୍ମଣଙ୍କୁ ଆଜ୍ଞା ନାହିଁ
ଏବେ ନାନା ଜାତି ଯୁବତୀ ଆସିଣ
ଲଦୁଛନ୍ତି ଖଡ଼ୁବାହୁ ।୨।

ଇନ୍ଦ୍ର, ଚନ୍ଦ୍ର, ଦେବବୃନ୍ଦ ଆଜ୍ଞାକାରୀ
ବ୍ରହ୍ମା ପଢ଼ୁଥାନ୍ତି ବେଦ
ଏ ସୁଖ ନୋହିଲେ ବୋଲ ଶୁଣୁଛୁ କି
ଛାଡ଼ ତମାଳିଆ ପଦ ।୩।

ବଡ଼ଦେଉଳରେ ବଡ଼ ଧଣ୍ଡାମାଳ
ବଡ଼ ରଙ୍ଗଧଡ଼ି ପିନ୍ଧା
ଏବେ ଘାଇଲଗ୍ନୀ ଗନକଣମ୍ୟାକ
ଖମ୍ବରେ ହୋଇଛନ୍ତି ବନ୍ଧା ।୪।

କର୍ପୂର ଚନ୍ଦନ ଚୁଆ ଚତୁଃସମ
ନ ଛୁଟଇ ସେ ସୁବାସ
ଏବେ ଶ୍ରୀଅଙ୍ଗରେ ଆଙ୍ଗୁଳେ ବହଳେ
ଲାଗିଛି ଧୂଳିକାଦ ।୫।

ନାଡ଼ୁ ବଡ଼ ଗଜା ଖଣ୍ଡଖିଇ ଖଜା
ଏ ଭୋଗେ ନୋହିଲା ମିଠା
ମାଉସୀଦୁଆରେ ରହି ଖେଳିବାଇଲୁ
ପାଉଁଶିଆ ପୋଡ଼ପିଠା ।୬।

ଘରଘରଣୀଙ୍କ ନ ଧନକୁ ପର୍ଣ୍ଣ
କରି ଆସିଅଛୁ ଭଣ୍ଡ
ସେ ତଥା ପାସୋର ମୁଲୁଉଛୁ ଗାଳି
ଛୁ ବଡ଼ ଦଶମ ଖଣ୍ଡ ।୭।

ହେର ଦନ ପର ରଥ ଭାଙ୍ଗିଗଲେ
ଠାକୁରାଣୀ ହୋଇ କ୍ରୋଧ
ଏବେ ପୁଣି ଚୋର ବେଶା ପଶୁନାହିଁ
ଯାଉଛୁ ଗଦମ ଦଣ୍ଡ ।୮।

ବଡ଼ଲୋକପୁଅ ବୋଲି ସିନା ତୋତେ
କେହି ନ ବୋଲନ୍ତି କିଛି
ଭଉଣୀକ ଧେନ ଦାଣ୍ତେ ବୁଲିବାର
କାହା ଘରେ ଦେଖାଅଛି ।୧୯।

ଗଜରଚରଣ ବୋଲେ ପ୍ରଭୁପଣ
ଜଣାଗଲା, ଏବେ ଆସ
ପତିତପାବନପତାକା ଉଡ଼ାଇ
ରତ୍ନସିଂହାସନେ ବସ ।୨୦।



( ଅଣଜଣେ )

# ଶ୍ରୀ ନବକଳେବର ଜଣାଣ

ବଞ୍ଛାନିଧି ପଟ୍ଟନାୟକ
( ବିଂଶ ଶତାବ୍ଦୀ )
( ଶୁଦ୍ଧ କଲ୍ୟାଣ )

ଆହେ ନୀଳାଚଳ ଈଶ୍ୱର !
ପାତକପାତକଖଣ୍ଡନକାର ! । ଘୋଷା ।

ନବକଳେବରଦରଶନ ତୁମ୍ଭ
ପାତକସୃଷ୍ଟି କି ଦେଉଛି ସାର
ପ୍ରେମଚିନ୍ତାମଣି ଉଜାଡ଼ ଦେବାକୁ
ରଥେ ଆରୋହିଛ ରଥାଙ୍ଗଧାର ! ।୧।

ସଭିଙ୍କ କଳୁଷ କରିବାକୁ ନାଶ
ଢାଳ ଅକାତରେ କରୁଣା-ବାର
ଅକଳିତ ଜନ ଆଣିଅଛ ଟାଣି
ଚରଣତଳକୁ ଲଗାଇ ଡୋରି ।୨।

ମୁଁ ହୀନ ପାମର କୀଟ ନରକର
କଳୁଷେ ଆଉ କେ ଅଛି ମୋ ସରି
ଭ୍ରମି ଭବପଥ ତୃଷାରେ ଆରତ
ଆଶ୍ରା ଏକା ତୁମ୍ଭ କରୁଣାବିନ୍ଦୁ ।୩।

ଆନ ନାରୀ ପରି ନୁହନ୍ତ କମଳା
ସେ ଯେ ନ ସହନ୍ତ ଟାହ
ଘଡ଼ିଏ ଉତ୍ତର ହେଲେ ଘଉଡ଼ିବେ
ଘରେ ପୂରାଇବେ ନାହିଁ ।୯।

ସେମାନ କହିବୁ ଗୋକୁଳନାଥଙ୍କୁ
ଠାରିବୁ ନୟନକୋଣେ
ବଂଶୀ ବଜାଇବୁ ମନ ମଜାଇବୁ
ଖୋଜାଇବୁ କୁଞ୍ଜବଣେ ।୧୦।

ନଷ୍ଟସ୍ୱେ ତୋହର ମନେ ପଡ଼ିଗଲ
ବୃନ୍ଦାବନେ ଗାଈରଖା
ଦ୍ୱାଦଶ ବନରେ ବିହାର କରିବୁ
ସଙ୍ଗେ ଘେନି ଗୋପସଖା ।୧୧।

ଐଶ୍ୱର୍ଯ୍ୟ ସମ୍ପତ୍ତି ନୀଳାଦ୍ରିରେ ସ୍ଥିତ
ବ୍ରଜେ ଏକା ପ୍ରେମଭାବ
ଜଣାଗଲ ତେବେ ଉଭୟ ପକ୍ଷରେ
ପ୍ରେମ ସେ ପରମଭାବ ।୧୨।

ଜଣାଅଛି ମୋତେ ପୂର୍ବରୁ ତୋହର
ସ୍ୱଭାବ ଗୋଟିଏ ଅଛି
ଠେଲ ଲୋକ ଟେକ ଟିକିଏ ନ ରଖୁ
ଧାନରେ ଦୟା ଶିଖିଛି ।୧୩।

ହରଙ୍କୁ ମୋହିନୀରୂପେ ଭୁଲାଇଲୁ
ବ୍ରହ୍ମାଙ୍କୁ ବତ୍ସାହରଣେ
ସୁନାଶୀରଗର୍ବ ଚୂନା କରିଦେଲୁ
ଗୋମନ୍ତ-ଗିରି-ଧାରଣେ ।୧୪।

ଦନ୍ତକ୍ଷତ ଚୂର୍ଣ୍ଣ ଶବରଣୀ ଦେଲା
ଖାଇଲୁ ତାହାର ଅଇଣ୍ଠା
ଶୋଇଲା ଶେଯରେ ଶ୍ରୀବତ୍ସ ବ୍ରାହ୍ମଣ
ମାଇଲା ପଦ୍ମ ଗୋଇଠା ।୧୫।

ଭଲ ଭଲ ଲୋକ ଦେଉଳକୁ ଗଲେ
ପଣ୍ଡା ମାରନ୍ତି ଘଉଡ଼ି
ଏବେ ମାରି ଲୋକେ ଭରଣନ୍ତି କରି
ଝିଙ୍କନ୍ତି ରଥଦଉଡ଼ି ।୧୬।

ନୋହିଲେ କାହିଁକି ଭକତବତ୍ସଳ
ନାମ ଦୀନଜନବନ୍ଧୁ
ପତିତମାନଙ୍କୁ ଦରଶନ ଦେଇ
ଉଦ୍ଧରିଲୁ ଭବସିନ୍ଧୁ ।୧୭।

ନାନା ନଟକୂଟ ନବରଙ୍ଗ ଜାଣୁ
ଛଇଲନାଗର ହରି !
ଇତର ଲୋକଙ୍କ ମହତ ସମ୍ଭାଳୁ
ଆପଣା ମହତ ସାରି ।୧୮।

ଅସୁମାର ବାର ଜନମ-ଜଠରେ
ଭ୍ରମିଲିଣି ଭୂମଣ୍ଡ ଧାମ ମୁଁ ହାର
ମୋରେ ଆଜ୍ଞାଦେଉ ଆହେ ମହାବାହୁ !
ଏଠୁଁ ଗର୍ଭବାସ ଯାଉ ମୋ ସର ।୪।

ଭୌମବଇକୁଣ୍ଠବହାର ! ଅକୁଣ୍ଠ
ମନେ କେତେ କା'ରେ ନ ଦେଲ ଛାର
ଦସ୍ୟୁ-ଦସ୍ୟୁସାମନ୍ତ-ଦସ୍ୟୁନୃପଙ୍କୁ
ବଳ ମୋ ପାତକ ନୁହେ ତ ଘୋର ।୫।

ମୋ ସଞ୍ଚିତ କର୍ମ ବଳାଉଛି ମୋରେ
ନ ପାରଇଁ ବନ୍ଧୁ ତା ଅନ୍ତ ଘୋର
କାନ୍ଦ ମୋ ଉଶ୍ୱାସ କର ବିଶ୍ୱାସ !
ପାତକୀ ବନ୍ଧନ ଡାକେ ଫୁକାର ।୬।



୪ । ଅସୁମାର—ଅଗଣିତ; ହାର—ହରାଇ; ୫ । ଭୌମ-ବଇକୁଣ୍ଠ—ପୁରୁଷୋତ୍ତମ କ୍ଷେତ୍ର ପୃଥିବୀ ଉପରେ ସ୍ଥିତ ବୈକୁଣ୍ଠଧାମ; ୬ । ଫୁକାର—ଉଚ୍ଚସ୍ୱରରେ

( ନବେ )

## ଶ୍ରୀ ବଳଭଦ୍ରଙ୍କ ଜଣାଣ

### ଗୌରଚରଣ ଅଧିକାରୀ

( ଊନବିଂଶ ଶତାବ୍ଦୀ )

( ରାଗ ବଙ୍ଗଳାଶ୍ରୀ )

ବଡ଼ଠାକୁରଙ୍କ ସହୋଦର ହେ
ମୋ ଜଣାଣେ ନୁହ କାଲ
ବଡ଼ଦାଣ୍ଡେ ବଡ଼ ଭୁଜକୁ ବିସ୍ତାରି
ବଡ଼ଦେଉଳକୁ ଗଲ । ଘୋଷା ।

ବଡ଼ ପଣେ ବଡ଼ ଛଇଳ ଦେଖାଅ
ପିନ୍ଧି ବଡ଼ ଘଣ୍ଟାମାଳ
ବଡ଼ରଜା କର ଯୋଡ଼ି ଡାକୁଛନ୍ତି
ତାଙ୍କ ଗୁହାରି ନ ଟାଳ ।୧।

ବଡ଼ପଣ୍ଡା ବଡ଼ସୁଆର ସେବକ
କଲେଣି ବଡ଼ ପଖାଳ
ବଡ଼ଠାକୁରାଣୀ ରୋଷ ହେବେ ବଡ଼
ଏ କଥା ମନରେ ଭଲ ।୨।

ବଡ଼ପାବଚ୍ଛିଆ ବଡ଼ ଅଲସୁଆ-
ପଣ ଛାଡ଼ ତତକାଳ
ବଡ଼ନୟନଙ୍କୁ କିବା ଅଗୋଚର
ବଡ଼ଦୁଃଖୀଙ୍କ ଜଞ୍ଜାଳ ।୩।

ବଡ଼ସିଂହାର ବେଶକୁ ଦରଶନ
କରିବାକୁ ମୋ କପାଳ
ବଡ଼ ଅରକ୍ଷିତ ଗଜରଚରଣ
ଭଜେ ଶ୍ୟାମ-ଜାମପାଳ ।।୪।।



( ଏକାନଟେ )

# ଶ୍ରୀ ମନବୋଧି ଭଜନ

ବଲ୍ଲଭ ଦାସ

(ଅଷ୍ଟାଦଶ ଶତାବ୍ଦୀ)

(ରାଗ ଲଳିତଗୌରୀ)

ମନ ! ଭଜ ରେ ଚିତ୍ତ ! ଭଜ ରେ ମନ ଭଜ ରେ
ଅନାଥର ନାଥ ଦେବ ଜଗନ୍ନାଥ
ଦେବ ନାକପଦ ମନ ! ଭଜ ରେ
କାଳ ଏ ସକଳ ସକଳ ପ୍ରବଳ
କଳିକାଳମୋହ ଚିତ୍ତ ! ବର୍ଜରେ ।ଘୋଷା ।

ବରଜମଣ୍ଡନ ବନଜବଦନ
ଭଜନ ସ୍ତବରେ ମନ୍ତ୍ରରେ
ବନଜଚରଣ ମୁରଲୀବଦନ
ନନ୍ଦସୁତ ଦ୍ୱିଜରାଜ ରେ ।୧।

ଆଳୀଙ୍କି ପାଳଲେ ବାଳକ ଦଳଲେ
ବଳେ ଛଳ ସୁରରାଜ ରେ
ଟେକି ଗୋବର୍ଦ୍ଧନ ରଖିଲେ ଗୋଧନ
ବରଷସପତେ ବ୍ରଜରେ ।୨।

ଅସୁର କେଶୀକ ନାଶିଲେ ନ ଶଙ୍କି
ଧ୍ୱଂସିଲେ ଦନୁଜରାଜ ରେ

---

୦ । ନାକପଦ—ନାକ, ଅର୍ଥାତ୍ ସ୍ୱର୍ଗ ଯାହାଙ୍କ ପଦ ତଳରେ

ଉଗ୍ରସେନ ମାଥ ଉଭାଇଲେ ଛତ୍ର
ଉଛେକ ଜନେ ମଧୁବ୍ରଜ ରେ । ୩ ।

ମନ ! କର ମନ ମଦନମୋହନ
ଶରଣ ଚରଣକଞ୍ଜରେ
ହରିବ ଦୁରିତ ହରିର ଚରିତ
ତୁରିତେ ତୁ ଶଉ ମଜ୍ଜ ରେ । ୪ ।

ହୋଇଲେ ଶରଣ ହୋଇବୁ କାରଣ
ରକ୍ଷିଛୁ ବନେ ଯେ ଗଜ ରେ
ବୋଲଇ ବଲ୍ଲଭ ଚରଣପଲ୍ଲବ
ବଳେ ଦେବେ ଦେବରାଜରେ । ୫ ।



୩ । ଜଳଧରେ—ବୃନ୍ଦାବନେ; ୫ । ଗଜେ—ଭଜରେ

( ବୟାନବେ )

# ଶ୍ରୀ ହରି ଭଜନ

## ଯଦୁମଣି ମହାପାତ୍ର

(ଊନବିଂଶ ଶତାବ୍ଦୀ)

(ରାଗ ବସନ୍ତ ଭୈରବ)

ଅବରତେ ହର ଭଜ ରେ ମାନସ !
ଅବରତେ ହର ଭଜ
ଦବବ ରବଜ-ଛବଳ-ପଦ୍ମଜ
ଅବଲମ୍ବେ ତୁହି ହେଜ ରେ ।ଘୋଷା।

ନବୀନ-ଜଳଦ-ଛବ ନଟବର
ପବନ ପଦସରୋଜ
ଥବର ହୋଇ ତୁ ସ୍ରବବାର ସେଥିଁ
ମଧୁପାନେ ଭୃଙ୍ଗ ସାଜ ।୧।

ଗବୀଶଧ୍ୱଜ ଅବ୍ଜଜ ଅହିରାଜ
ଆଦ ଅମରସମାଜ
ସବନୟୂଭରେ କବଭ୍ୱଗୁଣରେ
ଭାବନ୍ତି ଯାଙ୍କ ରୋଜ ।୨।

---

* । ରବଜ—ସୂର୍ଯ୍ୟଙ୍କ ପୁତ୍ର ଯମ; ୧ । ଥବର—ସ୍ଥିର;
୨ । ଗବୀଶଧ୍ୱଜ—ବୃଷଭବାହନ ଶିବ; ଅବ୍ଜଜ—ପଦ୍ମଯୋନି ବ୍ରହ୍ମା, ଅହିରାଜ—ବାସୁକୀ; ରୋଜ—ପ୍ରତିଦିନ

ଗର୍ବି-ଗର୍ବ-ଗଞ୍ଜା ଛବାଣ ନାମ ଯାଁ
ଫିବଧର ଦେବରାଜ
ଦ୍ରୁବଗଲ ତାର ଦମ୍ଭ ଅହଙ୍କାର
ଶରଣାର୍ଥୀ ପଦକଞ୍ଜ । ୩ ।

ହବଆହାସ୍ଥି ସହିତେ ଦେଖି ଦେବ
ଦାନବାଦ୍ଦଙ୍କ ଯେ ପୂଜ୍ୟ
ଜବ ଯଦୁମଣି ନ ବସ୍ତୁରୁ ସେହି
ନଦାମୃଜ—ନାମବ୍ରଜ । ୪ ।



୩ । ଛବାଣ—ମନୋହରଙ୍କପି ମନୋହର; ୪ । ହବଅହାସ୍ରୀ—ଅଚ୍ଛି; ୫ । ନାମବ୍ରଜ—ନାମମାନଙ୍କୁ

( ତେୟାନବେ )

# ଶ୍ରୀ ମଧୁହାରୀ ମୁକୁନ୍ଦ ଜଣାଣ

ଗୋବିନ୍ଦ ଭଞ୍ଜ

(ଅଷ୍ଟାଦଶ ଶତାବ୍ଦୀ)

୧ (ରାଗ କଲ୍ୟାଣୀ)

କୃପାସିନ୍ଧୁ ! ଦୀନବନ୍ଧୁ ! କାହିଁକି କରୁଣା ଊଣା ?
ମୋହପର ଦୀନହୀନ ଧରାଧାମେ ନାହିଁ ଶୁଣା । ଘୋଷା ।

ଭାବ ଯା ନ ଥିଲା ମନେ ବସାଇ ଉଚ୍ଚ ଆସନେ
ସୁଖ ସଙ୍ଗେ ଦୁଃଖ ଦେବା
ଖ୍ୟାତ ତ ନ ଥିଲା ଜଣା । ୧ ।

ତୃଷାର୍ତ୍ତ ଜନେ ଆଦରେ ଡାକ ବସାଇ ପାଶରେ
ପିଇବା ଆଗୁଁ ଭଣ୍ଡିଲ
ଯାଚ ସୁମଧୁର ପଣା । ୨ ।

ଇତର ସଂସାର ସାର- ଫଳକୁ କଲ ଅସାର
ତାର କି ମୋ ଭାଗ୍ୟଦୋଷ
ଭ୍ରାନ୍ତ ମୁଁ ହେଉଛି ବଣା । ୩ ।

ତୁମ୍ଭର ମଙ୍ଗଳମୟ ଇଚ୍ଛାରେ ମୁଁ କରି ଲୟ
ନୋହୁଛି ଦୁଃଖିତ ପ୍ରଭୋ !
ପଡ଼ି ଏ ବିପଦେ ସିନା । ୪ ।

ନୃପତିସୁତ ଗୋବିନ୍ଦ ଚିନ୍ତଇ ପଦାରବିନ୍ଦ
ହେ ମଧୁହାରୀ ମୁକୁନ୍ଦ !
ମୋ ଦୁର୍ଭାଗ୍ୟ କର ଚୂନା । ୫ ।

---

୧ । ମଧୁହାରୀ—ମଧୁସୂଦନ

( ଜାଗରଣଦର୍ପଣ )

# ଶ୍ରୀ ଚତୁର୍ଦ୍ଦଶ ଲୀଳା ଭଜନ

## ହୃଦାନନ୍ଦ ଦାସ

( ଅଷ୍ଟାଦଶ ଶତାବ୍ଦୀ )

( ରାଗ କାମୋଦୀ )

ମେଘ-ମାଳାକୁ
ନନ୍ଦେ କଳାକୁ
ଯାହଁ ବାରେ ମନ ଚକାଡୋଳାକୁ । ଘୋଷା ।

ଏ ଭବ-ସଗରେ ତରିଗଲେ ଭକ୍ତେ
ଆଶ୍ରେ କରି ଯାର ନାମ-ଭେଳାକୁ
ସଦାଶିବ ହର ହୋଇଲେ ଅମର
କୋଳେ ଧରିଛନ୍ତି ଗିରିବାଳାକୁ
ଶୁଣ୍ଠି ମାଳାକୁ, ପିନ୍ଧି ଗଳାକୁ
ନାମ ଜପୁଛନ୍ତି କଳା ଧଳାକୁ । ୧ ।

ସତ୍ୟରେ ଶ୍ରୀପତି ସମୁଦ୍ରକୁ ମନ୍ଥି
ତହିଁରୁ ଜାତ କଲେ କମଳାଙ୍କୁ
ଦେବାସୁରଯୁଦ୍ଧେ ଅମୃତ ବାଣ୍ଟେ
ମୋହିନୀ ହୋଇଲେ ଦେବଛଳାକୁ
ରାହୁ ଗଳାକୁ ଛେଦ ହେଲାକୁ
ତୋଷକଲେ ମହାଦେବଙ୍କ ଭୋଳାକୁ । ୨ ।

---

୧ । ଦେବଛଳାକୁ—ଦେବଙ୍କ ପାଇଁ

ତ୍ରେତୟା ଯୁଗରେ ରାମ ଅବତାରେ
ଭଜ ମନ ବାନ୍ଧେ ଭଗ୍ନଭେଳାକୁ
ପାଇ ସୀତାଛଳ ଘେନି କପିବଳ
ସିନ୍ଧୁରେ ବାନ୍ଧିଲେ ଶିଳାଭେଳାକୁ
ଜାତ ଖେଳାକୁ ରଣସ୍ଥଳାକୁ
ରଣେ ଛେଦିଲେ ବିଶ୍ରବାବଳାକୁ ।୩ ।

ଦ୍ୱାପର ଯୁଗରେ ଜନ୍ମି ଗୋପପୁରେ
ଉପାଡ଼ି ପକାଇଲେ ଯାମଳାକୁ
କାଳନ୍ଦୀରେ ପଶି କାଳୀଦର୍ପ ଧ୍ୱଂସି
ନିବାରିଲେ ମହା ବିଷଜ୍ୱାଳାକୁ
ଯାଇ ଦମେଳାକୁ, ରଙ୍ଗ ସ୍ଥଳାକୁ
କପଟେ ମାରିଲେ ସେ ମଉଳାକୁ । ୪ ।

ଏ କଳି ଯୁଗରେ କଳ୍ପବଟମୂଳେ
ମାଡ଼ିବସିଛନ୍ତି ଲକ୍ଷେ ଶିଳାକୁ
ବିକାଇଲେ ଅନ୍ନ ନେଲେ ଜାତିଧର୍ମ
କେହି ନ ଖୋଜଇ କାହା ଧର୍ମକୁ
କ୍ଷେତ୍ରସ୍ଥଳାକୁ, ମୁକ୍ତି ଖଳାକୁ
ଭଜେ ହୃଦାନନ୍ଦ ସନ୍ଥମେଳାକୁ । ୫ ।



୩ । ଜାତଖେଳାକୁ—ଲୀଳା ପାଇଁ ଜାତ ହୋଇ; ରଣସ୍ଥଳାକୁ—ଯୁଦ୍ଧକ୍ଷେତ୍ରରେ; ବିଶ୍ରବାବଳା—ରାବଣ; ୫ । ଲକ୍ଷେ ଶିଳାକୁ—ରତ୍ନ ସିଂହାସନତଳେ ଲକ୍ଷେ ଶାଳଗ୍ରାମଶିଳା ସ୍ଥାପିତ ହୋଇ ଅଛନ୍ତି ।

( ପଞ୍ଚାନବେ )

# ଶ୍ରୀ ଜଗବନ୍ଧୁ ଜଗତଜୀବନ ଜଣାଣ

## ଭଗୀରଥି ଦେବ

( ଅଷ୍ଟାଦଶ ଶତାବ୍ଦୀ )

[ କବି ଭଗୀରଥି ଦେବ ଜଣେ ରାଜବଂଶୀୟ ବ୍ୟକ୍ତି; କିନ୍ତୁ ତାଙ୍କର ପରିଚୟ ଏ ପର୍ଯ୍ୟନ୍ତ ନିର୍ଦ୍ଧାରିତ ନୁହେଁ । ଏ ଜଣାଣଟି ସର୍ବତ୍ର ପରିଚିତ । ]

( ରାଗ ଶଙ୍କରାଭରଣ )

ଜୟ ଜୟ ଜଗବନ୍ଧୁ ଜଗତ-ଜୀବନ
ଜୟ ଜୟ ଅନାଦି ଅନନ୍ତ ନିରଞ୍ଜନ ହେ ! । ଘୋଷା ।

ପତିତପାବନ ଦୀନ- ଦୁଃଖହାରୀ ସନାତନ
ଯୋଗୀ-ଋଷି-ପୁଣ୍ୟଜନମାନଙ୍କ ବନ୍ଦନ ହେ ।୧।

ଏ ଭବସାଗର କର୍ଣ୍ଣ— ଧାର କୃପା ନିକେତନ
କିଞ୍ଚିତ କରୁଣା କର କଳୁଷନାଶନ ହେ ।୨।

ଭବଭୟବିନାଶନ ପ୍ରଭୁ ଗରୁଡ଼ଆସନ
ନଳିନୀବାସିନୀ-ପ୍ରାଣ-ବନ୍ଧୁ ଜନାର୍ଦ୍ଦନ ହେ ।୩।

ନ ଭୁଲୁ ମାୟାରେ ମନ କରୁ ସୁପଥେ ଗମନ
ଭଣେ ଭଗୀରଥି ଦେବ ଏହି ନିବେଦନ ହେ ।୪।



---

୧ । ପୂର୍ଣ୍ଣଚନ୍ଦ୍ର—ଅମୃତ

( ଛୟାନବେ )

# ଶ୍ରୀ ଶରଣାଗତି ଚଉତିଶା ଜଣାଣ

ବଚ୍ଛନ୍ଦଚରଣ ପଟ୍ଟନାୟକ

( ବିଂଶ ଶତାବ୍ଦୀ )

( ରାଗ ଚକ୍ରମାଳିଆ )

କୃପାସିନ୍ଧୁ ଜଗବନ୍ଧୁ !
କେବେ ହେବି ପାରି ଏ ଭବସିନ୍ଧୁ ହେ
କହ ସିନ୍ଧୁଜେମାପ୍ରାଣବନ୍ଧୁ
ସାମନ୍ତ ହେ ।୧।

ଖସୁଛି ମୋହର ଆୟୁ
ଖଟିବି କେବେ ମୁଁ ପୟରେ ଆଉ ହେ
ଖଣ୍ଡିବଇଁ ବିଷୟାର ଦାଉ
ସାମନ୍ତ ହେ ।୨।

ଗହନ ଜଞ୍ଜାଳେ ପଶି
ଗରୁ ପାପଶରେ ଗଲି ମୁଁ ଲସି ହେ
ଗଳେ ଘୋଟୁଛି ମୋ କାଳଫାଶି
ସାମନ୍ତ ହେ ।୩।

ଘୋର ଏ ବିଷୟାବିଷ
ଘାରୁଅଛି ଗାଢ଼େ ମୋର ମାନସ ହେ
ଘାଳି ହୁଅଇ ମୁଁ ଅହର୍ନିଶ
ସାମନ୍ତ ହେ ।୪।

ଅତସୀକୁସୁମ ଶ୍ୟାମ !
ଅଚ୍ୟୁତ ! ଉତ୍କଳ ନାହିଁ ମୁଁ ନାମ ହେ
ଆୟୁ ବଢ଼ିଯାଏ ଯାମ ଯାମ
ସାମନ୍ତ ହେ । ୫ ।

ଚତ୍ତ ଚତୁର୍ବର୍ଗଦାନ !
ଚଞ୍ଚଳ ମନରେ କିଛି ନ ମାନ ହେ
ଚଳ ପଦ୍ମଦଳେ ଯଥା ପାଣି
ସାମନ୍ତ ହେ । ୬ ।

ଛୁର ଇନ୍ଦ୍ରିୟଲାଳସା
ଛୁଡ଼ିଲ ନାହିଁ ମୋ ବଢ଼ିଲ ତୃଷା ହେ
ଛନ୍ଦୁ ନୁହଇ ହରି ମୋ ଦୃଷା
ସାମନ୍ତ ହେ । ୭ ।

ଜଗବନ୍ଧୁ ! ମାଟିଘଟ
ଜୁଟାଇ ଭୂଆଇଛ ଯାବତ ଲଟ ହେ
ଜୀବ-ମୀନ ମୋର ଛଟପଟ
ସାମନ୍ତ ହେ । ୮ ।

ଝଟତି କରୁଣା କର
ଝିମିଟକେ ମୋହ- ପଟଳ ହର ହେ
ଝାଡ଼ ଚିତ୍ତୁଁ ମୋ ବିଷୟାଗର
ସାମନ୍ତ ହେ । ୯ ।

---

୫ । ଯାମ—ପ୍ରହର; ୬ । ଚଳ—ହଲୁଥିବା; ୭ । ଛନ୍ଦ—ମିଛ, କପଟ; ୯ । ଗର—ବିଷ;

ଅଟର ଏ ଭବଦ୍ୱାଟ
ଆଉ ସଉଦାକୁ ନ ରଖି ବାଟ ହେ
ଇନ୍ଦ୍ରପୁର ଭଙ୍ଗିଦିଅ ଥାଟ
ସାମନ୍ତ ହେ ।୧୦।

ଟାଳ ମୋ ଗରବଗିର
ଟେକପଣ ସବୁ ଦିଅ ମୋ ଚୂର ହେ
ଟାଣ ପାଶେ ତୁମ୍ଭ ଟାଣି ଡୋର
ସାମନ୍ତ ହେ । ୧୧ ।

ଠିକେ ବଞ୍ଛଧର ଆଶ
ଠୂଳେ ତୁମ୍ଭ ପଦେ ଲଭିବ ବାସ ହେ
ଠକ ନୁହଁ ତାରେ ବିଶ୍ୱବାସ !
ସାମନ୍ତ ହେ । ୧୨ ।

ଡେର ମୋ ଡାକେ ଶ୍ରବଣ
ଡର କହିଁ ସମେ ଥାଉଁ ଆପଣା [ହେ
ଡଙ୍ଗା-ମଙ୍ଗୁଆଳ ଜନାର୍ଦ୍ଦନ
ସାମନ୍ତ ହେ । ୧୩ ।

ଢମାଳ ନ ମଣ ଗିର
ଢଳ ପଡ଼ିଲେ ମୋ ମାଟି ଶରୀର ହେ
ଢୁକାଇବ ନାହିଁ ଯମପୁର
ସାମନ୍ତ ହେ । ୧୪ ।

---

୧୦ । ଥାଟ—ବଳ, ଆୟୋଜନ; ୧୪ । ଢୁକାଇବ—ପୂରେଇବ

ନରକ ପୁଣ ମୋ କିସ ?
ନୁହ କି ଆଶ୍ରା ମୋ    କମଳାଙ୍କଣ ହେ
ମାଳଗିର - ନନ୍ଦନ - ହନେଣ
ସାମନ୍ତ ହେ । ୧୫ ।

ତୁମ୍ଭର ମୁଁ ପତ୍ରକର
ତରଣି-ତନୟ    ହେଲେ ଗୋଚର ହେ
ତଳେ ଥିବ ନାହିଁ ମୋର ଡର
ସାମନ୍ତ ହେ । ୧୬ ।

ଥିବାରୁ ସ୍ଥିର ଏ ଭବେ
ଥୂଳ ସୁଖୁଁ ମନ    ନ ଛୁଟେ ଯବେ ହେ
ଥାନ ଦେବ ତୁମ୍ଭ ଥାନେ କେବେ
ସାମନ୍ତ ହେ । ୧୭ ।

ଦୂଷଣାଭୂଷଣ ହର !
ଦୟା ଏ ଅଧମେ    ଖରେ ଆଚର ହେ
ଦରଗିର ତାର ହଅ ଚୂର
ସାମନ୍ତ ହେ । ୧୮ ।

ଧରା-ସୁଖ-ସମ୍ପଦର
ଧାପେ ହେଲେ ମତ୍ତ    ନ ରହୁ ମୋର ହେ
ଧାମ୍ନି    କଳାମୁଖ-ନିଶାକର
ସାମନ୍ତ ହେ । ୧୯ ।

---

୧୬ । ତରଣି-ତନୟ—ସୂର୍ଯ୍ୟଙ୍କ ପୁତ୍ର ଯମ ମହାରାଜ; ୧୮ । ଦରଗିରି—ଗର୍ବପର୍ବତ, ୧୯ । ଧାପେ—ଦିଶାଏ; ନିଶାକର—ଚନ୍ଦ୍ର

ନାଶ ସିନ୍ଧୁ ଦେହ-ଗେହ
ନ ଭୁଟଇ ତହିଁ ମୋର ସେନେହ ହେ
ନାଶି ପକାଅ ଏ ମହାମୋହ
ସାମନ୍ତ ହେ । ୨୦ ।

ପଦ୍ମାଳୟା-ପ୍ରାଣନାହା
ଯାଚକ-ଗହନେ ତୁଅ ମୋ ସାହା ହେ
ପୋଡ଼ିଦିଅ ମୋ ନରକ-ସ୍ପୃହା
ସାମନ୍ତ ହେ । ୨୧ ।

ଫୁଲ୍ଲାରବିନ୍ଦ-ଈକ୍ଷଣ
ଫେଇ ଗୁହଁ ହୋଇବଇଁ ମୋକ୍ଷଣ ହେ
ଫାନ୍ଦେ ବାନ୍ଧୁଛି କାଳ ଜୀବନ
ସାମନ୍ତ ହେ । ୨୨ ।

ବଡ଼ଦେଉଳସାମନ୍ତ
ବଳଆରଭୁଜ ସାରଦାକାନ୍ତ ହେ
ବଡ଼ ବିପତ୍ତି କର ମୋ ଅନ୍ତ
ସାମନ୍ତ ହେ । ୨୩ ।

ଭ୍ରମାଇଁ ଭବଗହନ
ଭ୍ରମେ ଛନ୍ଦ ନାହିଁ ବିଚ୍ଛନ୍ଦ-ମନ ହେ
ଭାଲ ଲିପି ତା ପୋଛ ବହନ
ସାମନ୍ତ ହେ । ୨୪ ।

---

୨୨ । ଫୁଲ୍ଲାରବିନ୍ଦ-ଈକ୍ଷଣ—ଫୁଟିଲା ପଦ୍ମ ତୁଲ୍ୟ ମନୋହର ଚକ୍ଷୁ ଅଛି ଯାହାଙ୍କର; ୨୩ । ଶାରଦା—ସରସ୍ୱତୀ

ମରନ୍ଦ ପଦକମଳୁଁ
ମିଳନ୍ଦ ସର ମୋ ମାନସେ ମିଳୁ ହେ
ମତ ଆନ କାହିଁରେ ନ ବଳୁ
ସାମନ୍ତ ହେ । ୨୫ ।

ଯୋଗପଥେ ତୁମ୍ଭଠାଇଁ
ଯିବା ଜଗନ୍ନାଥେ ! ମୁଁ ନ ଜାଣଇଁ ହେ
ଯତ୍ନ ହେବା ଯୋଗ ମୋର କାହିଁ
ସାମନ୍ତ ହେ । ୨୬ ।

ରତ୍ନ ହୃଦେ ରମାସାଇଁ
ଘାହା ଦେଲେ କହ ମୁଁ ଗମିବଇଁ ହେ
ରସରତ୍ନାକର ତୁମ୍ଭଠାଇଁ
ସାମନ୍ତ ହେ । ୨୭ ।

ଲିଙ୍ଗ ଶରୀର ମୋହର
ଲୟ ହେଉ ପ୍ରଭୁ କରୁଣା କର ହେ
ଲୀଳାରେ ମୁଁ ହୁଏଁ ପରକର
ସାମନ୍ତ ହେ । ୨୮ ।

---

୨୫ । ମରନ୍ଦ—ମଧୁ, ମିଳିନ୍ଦ—ମଧୁକର; ୨୮ । ଲିଙ୍ଗଶରୀର—ସୂକ୍ଷ୍ମ ଶରୀର ଅଭ୍ୟନ୍ତରରେ ମନବୁଦ୍ଧି ଅହଙ୍କାର ଆଦିରେ ନିର୍ମିତ ଯେଉଁ ଶରୀର ଅଛି, ତାହା ଲୋପ ହେଲେ ଜୀବାତ୍ମା ମୁକ୍ତ ହୁଏ । କଲ୍ପ କଲ୍ପାନ୍ତେ ହେଉ ପଛକେ ଏ ଶରୀର ନିଶ୍ଚୟ ଥରେ ଲୋପ ହେବ । ଏହା ଲୟ ପ୍ରାପ୍ତ ହେଉ ଥିବାରୁ ଏହାର ନାମ ଲିଙ୍ଗଶରୀର [ ଲୀୟତେ ଇତି ଲିଙ୍ଗଂ ]

ବଡ଼ଦାଣ୍ଡଧୂଳି ହରି !
ବିଭୂତି ହେବ କି ଅଙ୍ଗେ ମୋହର ହେ
ହେବ ବିଦେହ ଶ୍ରୀମୁଖ ହେରି
ସାମନ୍ତ ହେ । ୨୯ ।

ଶ୍ରୀୟାସାମନ୍ତାଣୀଙ୍କର
ଶ୍ରୀପଦପଙ୍କଜେ ହେବି କିଙ୍କର ହେ
ସାରଦାଙ୍କ ପୟରେ ଭ୍ରମର
ସାମନ୍ତ ହେ । ୩୦ ।

ଶମ ମୋ ସକଳ ତୃଷା
ଶିରେ ପଦଧୂଳି କର ମୋ ଭୂଷା ହେ
ଶୁଭେ ପାହୁ ଭବମହାନିଶା
ସାମନ୍ତ ହେ । ୩୧ ।

ସଜଳନୟନ ହୋଇ
ସରୋଜପୟର ଦେବଇଁ ଧୋଇ ହେ
ସତେ ସେବା ଦେବ ପଦେ ସାଇଁ !
ସାମନ୍ତ ହେ । ୩୨ ।

ହଳାୟୁଧସହୋଦର !
ହେଲେ ହତ କର ମୋ ଭବଦର ହେ
ହତ ହେଲଇଁ ଭ୍ରମି ଭବର
ସାମନ୍ତ ହେ । ୩୩ ।

କ୍ଷୁଦ୍ରମତି ମୁଁ ବିଚ୍ଛନ୍ଦ
କ୍ଷିତିପରେ ନାହିଁ ମୋ ତହୁଁ ମନ୍ଦ ହେ
କ୍ଷମ ଅପରାଧ ଆନନ୍ଦକନ୍ଦ
ସାମନ୍ତ ହେ । ୩୪ ।



( ସତାନବେ )

# ଶ୍ରୀ ଲକ୍ଷ୍ମୀରମଣ ଜଣାଣ

## ପଦ୍ମନାଭ

( ଅଷ୍ଟାଦଶ ଶତାବ୍ଦୀ )

[ ପଦ୍ମନାଭଙ୍କ ଘର, ଠିକ ଠିଣା ଜଣା ନାହିଁ । ତାଙ୍କ ଏ ଜଣାଣ କଳିଙ୍ଗର ସଙ୍ଗୀତ ପରିଚୟ । ]

(ରାଗ କୃଷ୍ଣ କାମୋଦୀ )

ଜୟ ହେ

ଶ୍ରୀକୃଷ୍ଣ ଦେବକୀସୁତ  ଗୋପୀନାଥ ନମୋସ୍ତୁତେ

ଜୟ ହେ । ଘୋଷା ।

ଜୟ ହେ ରାଧାରମଣ  ଜୟ ଦେବ ନାରାୟଣ
କଂସକେଶୀଙ୍କୁ ନିଧନ  କଲ ଦେବୋପକାରାର୍ଥେ

ଜୟ ହେ । ୧ ।

କାଳୀୟଦର୍ପଗଞ୍ଜନ  ଦ୍ରୌପଦୀମାନୋଦ୍ଧାରଣ
କଲ ଗଜ ଉଦ୍ଧାରଣ  ଚକ୍ର ପେଷି ନକ୍ରହତେ

ଜୟ ହେ । ୨ ।

ତ୍ରେତୟାରେ ବାଳି ହତ  କଲ ପ୍ରଭୁ ରଘୁନାଥ !
ସୀତାଙ୍କ ଛଳେ ଭରତ  ବଧିଲ ବିଶ୍ରବାସୁତେ

ଜୟ ହେ । ୩ ।

କଳିଯୁଗେ ନୀଳାଚଳେ  ବସି ତ ଅଛ ନିଶ୍ଚଳେ
ଭକ୍ତେ ଡାକନ୍ତି ଶୟୁଚଳେ  ରକ୍ଷାକର ଜଗନ୍ନାଥେ

ଜୟ ହେ । ୪ ।

ହେ ପ୍ରଭୁ ଲକ୍ଷ୍ମୀରମଣ !  କିପାଁ ମୋ ଡାକ ନ ଶୁଣ
କହେ ପଦ୍ମନାଭ ହୀନ  ଉଭାହୋଇ ଯୋଡ଼ିହସ୍ତେ

ଜୟ ହେ । ୫ ।

( ଅଠାନବେ )

# ଶ୍ରୀ ବିଶ୍ୱମ୍ଭର ଜଣାଣ

## ଗୌରଚରଣ ଅଧିକାରୀ

( ଉନବିଂଶ ଶତାବ୍ଦୀ )

( ରାଗ ଖବଦରପ୍ରିୟା )

ଆହେ ବିଶ୍ୱମ୍ଭର !
ମୋର ଏ ଦୁରନ୍ତ ଦଶା ହର । ଘୋଷା ।

ଏ ଘୋର ସଂସାର ଦିଶୁଛି ଅନ୍ଧାର
ଅସ୍ଥିର ହେଉଛି ସଦା ପ୍ରାଣ
କୃପାସିନ୍ଧୁ ହରି ! ଶ୍ରୀଚରଣ-ତରି-
ଦାନରେ ଦାସକୁ କର ତ୍ରାଣ । ୧ ।

ହିଂସା କୁଟ ଦ୍ୱେଷ ଆଦି ନାନା ଦୋଷ
ଅଶେଷ କଳୁଷ ମୁଁ ବହୁଛି
ମାୟା ମୋହ ଦ୍ୱନ୍ଦେ ପଡ଼ି ନିରାନନ୍ଦେ
କଲବଲ ଏକା ହେଉଅଛି । ୨ ।

ଅବଳର ବଳ ଦୁଃଖୀର ସମ୍ବଳ
ଶରଣବତ୍ସଳ ଭାବଗ୍ରାହୀ !
ମହାବାହୁ ମହାମହିମାବନ୍ତ ହେ !
ସଦା ସଙ୍କଟରୁ କର ତ୍ରାହି । ୩ ।

ପ୍ରଭୁ ଆଦ୍ୟମୂଳ ! ତୁମ୍ଭେ ଅନୁକୂଳ
ହୁଅ ଯା'ରେ ତା'ର କବା ଭୟ
ଦୂବଟାକୁ ଦାରୁ କର ମହାମେରୁ !
ଶୁଣିଛୁ ପୁରାଣେ ଲୀଳାମୟ ! । ୪ ।

ମାଳାଦ୍ୱ ସାମନ୍ତ ! କେତେ ହନ୍ତସନ୍ତ
ହେବ ଆଜ ଏ ଜଞ୍ଜାଳେ ପଡ଼ି
ବାରେ ଅନୁକମ୍ପା ନ ହେଉଛୁ କପାଁ
ଶବ ମଣୁଅଛୁ ଷୋଳ ଦଣ୍ଡ । ୫ ।

ଏତେ ପ୍ରଭୁ ହୋଇ ନ ଶୁଣ ଗୋସାଇଁ !
ଭକ୍ତର ଗୁହାରି ଡାକ ଥରେ
ଭବଦୁର୍ବାସନା ଅନର୍ଥ୍ୟ ଭାବନା
ପ୍ରବଳ ହେଉଛି ହୃଦୟରେ । ୬ ।

ଯାମଳାଭଞ୍ଜନ ଗରବଗଞ୍ଜନ
ମାନସରଞ୍ଜନ ବ୍ରଜବନ୍ଧୁ
ଅଭୟଦାୟକ ଆଭୀରୀନାୟକ
ଇଚ୍ଛାମୟ ହରି କୃପାସିନ୍ଧୁ । ୭ ।

ହାହୃ ଜନାର୍ଦ୍ଦନ ଶ୍ରୀମଧୁସୂଦନ
ଆଶା ପୂର୍ଣ୍ଣକର ଦଇତାରି !
ଗଉରଚରଣ ଦୁଷ୍ଟ ଆଚରଣ
ଧ୍ୱଂସି ଦିଅ ପାପ-ତାପ-ହାରି ! । ୮ ।

୫ । ଦଣ୍ଡ—ଅଷ୍ଟାଙ୍ଗ; ମଢ଼ସନାୟକ—ଗୋପୀନାଥ

( ଅଜନଶ୍ରୁତ )

# ଶ୍ରୀ ଦେବାଧିଦେବରାଜ ଜଣାଣ

ଗୌରଚରଣ ଅଧିକାରୀ
( ଊନବିଂଶ ଶତାବ୍ଦୀ )

( ରାଗ ସାବେରୀ—ଚନ୍ଦନଯାତ୍ରିଆ ଭଜନ ବୃନ୍ଦ )

ଦୀନବନ୍ଧୁ ଦୁରିତନାଶନ ହେ
ଶ୍ରୀଦେବାଧିଦେବରାଜେ !
ଅରକ୍ଷ-ରକ୍ଷଣ ବୋଲି ପରା ତୁମ୍ଭ
ମହିମା ଡିଣ୍ଡିମ ବାଜେ । ଘୋଷା ।

କରପଦ୍ମ ଯୋଡ଼ି ସ୍ତୁତି କରୁଥାନ୍ତି
ବ୍ରହ୍ମାଦି ଦେବସମାଜେ
ତେତେଢ଼େ ବଡ଼ପଣ କେ ଦେଇନ ଗଲା କି
ଫେଡ଼ି କହୁନାହଁ ଲାଜେ । ୧ ।

ଯେଉଁ ଶ୍ରୀଭୁଜକୁ ରଥାଙ୍ଗ କମଳ
ଶଙ୍ଖ ଗଦାବର ସାଜେ
ସେ ଅସ୍ତ୍ର ଛଡ଼ାଇ କେ ଦେଇନଗଲା କି
ତୁଚ୍ଛା ହାତେ ଅଛ ବ୍ୟାଜେ । ୨ ।

ସେବଣ ଚନ୍ଦନଅର୍ଗଳୀ ଗଲବା
ପାଇଁ ମନା ଦେବରାଜେ
ଏମନ୍ତ ଶ୍ରୀରତ୍ନସିଂହାସନ-ଅଧି-
କାଶ କେ ହେଲା କି କାର୍ଯ୍ୟେ । ୩ ।

ବଡ଼ଠାକୁରଙ୍କୁ ସ୍ନାନ କରିବାକୁ
କ୍ଷମ କେ ଶ୍ରୀକ୍ଷେତ୍ରରାଜେ୍ୟ
କଥାଁ ନ କହୁଛ ମଉନେ ରହୁଛ
ଦେଖି ମୁଁ ହୁଏ ଥକା ଯେ । ୪ ।

କେତେ ସୁପ୍ରସନ୍ନେ ଦାଉ ଦାଉ ପଣେ
କଲା ଶ୍ରୀମୁଖ ବଚନେ
ଗୌର ଦ୍ୱିଜଠାରେ କେବଣ ଅଦନ୍ତା
ଆଜ୍ଞା ହେଉ ଦେବରାଜେ ! । ୫ ।



* । ଅଦନ୍ତା—ଦୁହ୍ଲା; ଆଜ୍ଞା ହେଉ—ଜଣାଇ ଦଅସାଉ

( ଶବ୍ଦେ )

# ଶ୍ରୀ ଦାରୁମୂର୍ତ୍ତି ଚଉତିଶା ଜଣାଣ

## ବଞ୍ଛଧଚରଣ ପଟ୍ଟନାୟକ

( ବିଂଶ ଶତାବ୍ଦୀ )

( ରାଗ ଶୋକକାମୋଦୀ )

କୋଟି ଜନମର କଳୁଷ ଖଣ୍ଡନ୍ତ
କଣାଏଁ କରୁଣା କଲେ ହରି
କ୍ଷୟଯାନ୍ତା ମୋର ସକଳ ଦୁରିତ
କଳାଶ୍ରୀମୁଖକୁ ବାରେ ହେରି,
ଆହେ ଗିରିଧାରି !
ଘଟ ଘଟକେ ତ ଅଛ ପୂରି
ଅଧମେ ମୋ ସରି ଅକରୁଣା କହିଁ
ମରଇ ମୁଁ ମାୟାଜାଲେ ଘୂରି ।୧।

ଚପଳା-ଖେଳାରୁ ଚପଳ ଯେ ଭୋଗ
ତହୁଁ ନ ତୁଟଇ ଆଶା ମୋର
ଛନ୍ଦ ହେବାପାଇଁ ଭୋଗ-ନାଗପାଶେ
ମନ ମୋ ହୁଅଇ ତତପର
ଆହେ ଯଦୁପତି !
ଝଟତ ସୁଧାର ଏ ମୋ ମତି
ନବଦୂର୍ବାଦଳ ଶ୍ୟାମ ଅଭିରାମ !
ନାମରେ ତୁମ୍ଭର ଦିଅ ରତି ।୨।

---

୨ । ଚପଳା—ବିଜୁଳି; ସୁଧାର—ଠିକଣା କର; ରତି—ଅନୁରାଗ

ଝାଳଦଅ ହରି ! ଚିତ୍ତୁଁ ମୋହଗିରି
ନୟନୁଁ ପଟଳ କର ହତ
ପାଦ ଦିଅ ରଙ୍ଗାଚରଣରେ କାକ-
ଭୁଷଣ୍ଡିର ଭାଗ୍ୟ କର ଦତ୍ତ
ଆହେ ଉଦ୍ଧାରି !
ଟାଳେ ମୋ ଦୁର୍ଗତି ଦିଅ ସାରି
ଅଗତିର ଗତି ଜନକଜାପତି
ଅହଲ୍ୟାତାରଣ ଦଇତାରି ! ।୩।

ତିନି ଭୁବନରେ ମୋହ ସମାନରେ
ପତିତ କେ ଅଛି ନାହିଁ ଜାଣି
ଥୟ ନୋହେ ଲେଶ ଏ ମୋର ମାନସ
ନଳିନୀଦଳରେ ଯେହ୍ନେ ପାଣି
ଆହେ ଦାରୁହରି !
ଧୃତିଭୂତି ମୋର ଯାଏ ସରି
ମାଳାନ୍ତି ଚନ୍ଦ୍ରମା ! ମୋହମାୟା - ଅମା-
ଅନ୍ଧାର ଗ୍ରାସଇ ମୋରେ ଘେରି ।୪।

---

୩ । ଝାଳଦଅ—ଭଙ୍ଗିଦିଅ; କାକଭୁଷଣ୍ଡି— ଶ୍ରୀରାମ-ଚନ୍ଦ୍ରଙ୍କଠାରୁ ଅମରବର ପାଇଥିବା ଭକ୍ତବିଶେଷ [ ତୁଳସୀ ରାମାୟଣ ଦ୍ରଷ୍ଟବ୍ୟ ]; ଜନକଜାପତି—ସୀତାପତି ୪ । ନଳିନୀ-ଦଳ-ପଦ୍ମପତ୍ର, ଦାରୁହରି—ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ; ଅମାଅନ୍ଧାର—ଅମାବାସ୍ୟା ରାତିର ଘୋର ଅନ୍ଧାର

ପତିତ କାହାକୁ ତାରିନାହଁ ନାଥ !
ଭବକୂପେ ନପଡ଼ିତ ମୋରେ
ଫାନ୍ଦ ହୋଇ ମାୟା ବାନ୍ଧଇ ନିରନ୍ତେ
ଦେଖୁଥିବ ତକା ନୟନରେ
ଆହେ ବିଶ୍ୱମ୍ଭର !
ଭବଭୀତ ମୁଁ ଯେ ନିରନ୍ତର
ମାୟାର ପଟଳ ବଢ଼ଇ ପ୍ରବଳ
କମ୍ପାଏ ମୋ ଉର ଥରହର ।୫।

ଯମ-ଯାତନାରୁ ନିସ୍ତରିବି କେମନ୍ତେ
ଯମ ନିୟମରେ ନାହିଁ ଚଳି
ରତିଏ ହେଲେ ମୁଁ ଖ୍ୟାତି ରଖିନାହିଁ
ଅଧର୍ମାଚରଣେ ବନମାଳି !
ଆହେ ଲୀଳାମୟ !
ବଶ କରିନାହିଁ ମୁଁ ଇନ୍ଦ୍ରିୟ
ଶମଇ ନାହିଁ ମୋ ମନୋରଥ-ଜ୍ୱାଳା
ତ୍ରିତାପ-ଦହନେ ମୁଁ ଅଥୟ ।୬।

---

୫ । ଭବଭୀତ—ଜନ୍ମ ଜନ୍ମାନ୍ତର ଲଭିବାର ଭୟରେ କାତର; ୬ । ଯମ—ସଂଯମ; ଶମଇ ନାହିଁ—ଶାନ୍ତ ହୁଏ ନାହିଁ

ଷୋଳ ଉପଚ୍ଚରେ ପୂଜା ଲଭିବାରେ
କାମନା-କାମିନୀ କରେ ହଠ
ସନ୍ତରିବ କେମନ୍ତେ ଭବ-ସିନ୍ଧୁ-ନୀର
ନାହିଁ ଥଳକୂଳ ନାହିଁ ଘାଟ
ଆହେ ହୃଷୀକେଶ !
କ୍ଷମା କର ଦିଶାଇବ ଦିଶ
କ୍ଷୀଣବୁଦ୍ଧି ସ୍ଥିର ବଇଦ ଘାମର
ନୋହିଲେ ମୁକର ଗଲି ନାଶ ।୭।



୭ । କାମନା-କାମିନୀ—ଭୋଗବାସନାରୂପକ ରମଣୀ; ଦିଶାଇବ ଦିଶ—ବାଟ ଦେଖାଇବ; ମୁକର—ନଷ୍ଟପ୍ରାୟ ।

( ଶତେହ୍ନ ଏକ )

# ଶ୍ରୀ ପତିତପାବନ ଜଣାଣ

## ବୀରକେଶରୀ ଦେବ

( ଅଷ୍ଟାଦଶ ଶତାବ୍ଦୀ )

( ରାଗ କାମୋଦୀ )

ପତିତପାବନବାନା ଆଉ କେତେ ବେଳକୁ
ଖସିଗଲ ଭବଜଳେ ନାବ ଦିଅ କୂଳକୁ । ଘୋଷା ।
ରୋପିବାର ବୃକ୍ଷ ଗୋଟି କାଟୁଅଛ ମୂଳକୁ
ତିନପୁରେ ଅପକୀର୍ତ୍ତି ହେବ ଆଦିମୂଳକୁ । ୧ ।
ଦୂରେ ଥାଇ ଡାକ ଦେଲେ ଡେରିଥାଅ କର୍ଣ୍ଣକୁ
ନିକଟରେ ନ ଶୁଣିଲ ମୋ କର୍ମ-ଅବଳକୁ । ୨ ।
ଲକ୍ଷେ ଯୋଜନରେ ଗଜ ଡାକ ଦେଲା ତୁମ୍ଭଙ୍କୁ
ନକ୍ର ନାଶିବାକୁ ଚକ୍ର ଦେଲ ପେଶି ଜଳକୁ । ୩ ।
ନକ୍ଷତ୍ର-ଦନ୍ତୁରି ଜଳେ ସନ୍ଧ୍ୟାଦୀପବେଳକୁ
ଲମ୍ବିଛି ଦଯୂଣାମାଳ ପଦ୍ମପାଦତଳକୁ । ୪ ।
ଯୋଗୀଜନମାନେ ହୃଦେ ଧ୍ୟାଉଛନ୍ତି ଯାହାକୁ
ଭଣିଲେ ବୀରକେଶରୀ ଆଶା ପାଦତଳକୁ । ୫ ।



( ଶତେହ ଯୁଗ )

# ଶ୍ରୀ କଳାଶ୍ରୀମୁଖଭଜନ କୋଇଲି

ବଚ୍ଛନ୍ଦଚରଣ ପଟ୍ଟନାୟକ

( ବିଂଶ ଶତାବ୍ଦୀ )

( କେଶବ କୋଇଲ ବୃତ୍ତ )

କୋଇଲି ! କଳାଶ୍ରୀମୁଖଙ୍କୁ ମୁଁ ପୁଛଇଁ
କେବେ ପାଦତଳେ ଠାବ ଦେବେ ରମାସାଇଁ
ଲୋ କୋଇଲି ! । ୧ ।

କୋଇଲି ! ଖେଦ-ଜଳେ ଗଳି ମୁହିଁ ଯାପି
ଧ୍ୱଂସ କରିବେ କେବେ ମୋ ପାତକରାଶି
ଲୋ କୋଇଲି ! । ୨ ।

କୋଇଲି ! ଗୁରୁ ସିନା ମୋ ପାତକଭାର
ଗରୁଡ଼ଧ୍ୱଜଙ୍କୁ ତାହା କେତେକ ମାତର
ଲୋ କୋଇଲି ! । ୩ ।

କୋଇଲି ! ଘୋର ମୋର ଘରର ଜଞ୍ଜାଳ
ଘଡ଼ିଏ ନ ଶମ୍ଭଲଇଁ ପ୍ରଭୁ ଆଦିମୂଳ
ଲୋ କୋଇଲି ! । ୪ ।

କୋଇଲି ! ଅଣାପୂତ କରଇ ବସୁଧା
ଅଖିଳବ୍ରହ୍ମାଣ୍ଡପତି ନ କରନ୍ତି ଦୟା
ଲୋ କୋଇଲି ! । ୫ ।

୨ । ଖେଦ—ଦୁଃଖ; ୫ । ବସୁଧା—ସାଂସାରିକ ବ୍ୟାପାର

କୋଇଲି ! ଚକାଡୋଳା କରିବେ କି ସତେ
ଚାହିଁ ମୋ ରହିବ ତାଙ୍କ ପଦେ ଅନୁବ୍ରତେ
ଲୋ କୋଇଲି ! ।୬।

କୋଇଲି ! ଛିଣ୍ଡିଯାଉ ଏ ବିଷୟ-ଡୋରି
ଛନ୍ଦିଦେ ପଦ୍ମରେ ତାଙ୍କ ମୋର ଏ ଗୁହାରି
ଲୋ କୋଇଲି ! ।୭।

କୋଇଲି ! ଜଗନ୍ନାଥେ କରନ୍ତୁ କରୁଣା
ବ୍ରହ୍ମାଣ୍ଡବସ୍ତେ ମାଗଇଁ ମୁଁ ଜଲ ତୋଟେ କଣା
ଲୋ କୋଇଲି ! ।୮।

କୋଇଲି ! ଯାଉ ସରି ଏ ଜୀବନପଥ
ଝୁଣ୍ଟି ମରେଁ ଖସି ଗୋଡ଼ ହୋଇ ଅଣାୟତ୍ତ
ଲୋ କୋଇଲି ! ।୯।

କୋଇଲି ! ଅଳି ଯେବା କରି ଶିଖିପଡ
ଅନ୍ତରେ ପଦୁପାଦେ ଗଠାନ୍ତୁ ମୋ ମତ
ଲୋ କୋଇଲି ! ।୧୦।

କୋଇଲି ! ଠିକାଏକ କଲେ କୃପାଦୃଷ୍ଟି
ଟଳିଯିବ ନିମିଷକେ ମୋ ପାତକସୃଷ୍ଟି
ଲୋ କୋଇଲି ! ।୧୧।

କୋଇଲି ! ଠିକେ ଏ ସଂସାର କଟର ବଣା
ଠୁଳେ ବଳଦ ପାତକଗିରି ହେଉ ଚୂନା
ଲୋ କୋଇଲି ! ।୧୨।

---

୧୧ । ପାତକସୃଷ୍ଟି— ପାପସମୂହ

କୋଇଲି ! ଡାକବଜ୍ରା ଅଟେ ମୋ ଦୁରିତ
ଡୋଳେ ଦେଖି ନ ଦେଖନ୍ତି ନୀଳଗିରିନାଥ
ଲୋ କୋଇଲି ! । ୧୩ ।

କୋଇଲି ! ଢାଳେ ଯେବେ କରୁଣାର ବାରି
ଢାଳନ୍ତେ ଦୁରିତ-ତମ ରହନ୍ତା କି ମୋରି
ଲୋ କୋଇଲି ! । ୧୪ ।

କୋଇଲି ! ଅନନ୍ତକୋଟିବ୍ରହ୍ମାଣ୍ଡପତି
ଅଣୁଏକ କଲେ କୃପା ଏଡ଼ନ୍ତି ବିପତ୍ତି
ଲୋ କୋଇଲି ! । ୧୫ ।

କୋଇଲି ! ତରିଯାନ୍ତି ଏ ଭବ-ସରିତ
ତଳେ ନ ଛୁଅନ୍ତା ମୋତେ ପ୍ରପଞ୍ଚ ଦୁରିତ
ଲୋ କୋଇଲି ! । ୧୬ ।

କୋଇଲି ! ଥରେ ଠାବ ଲଭି ତାଙ୍କ ପଦେ
ଥିର ସୁଖ ଭୁଞ୍ଜିବି କି ଥାଇ ଅପ୍ରମାଦେ
ଲୋ କୋଇଲି ! । ୧୭ ।

କୋଇଲି ! ଦୟା ସତେ ବସିବ ଚିତ୍ତରେ
ଦୟାନିଧି ଭସାଇବେ ଦୟା-ସରିତରେ
ଲୋ କୋଇଲି ! । ୧୮ ।

କୋଇଲି ! ଧାମ ତାଙ୍କ ହରାଇ ମୁଁ ଆସି
ଧରାତଳେ ରହିଛଇଁ ହୋଇ ପରବାସୀ
ଲୋ କୋଇଲି ! । ୧୯ ।

---

୧୩ । ଡାକବଜ୍ରା—ଉଣାଶୁଣା

କୋଇଲି ! ନରକରୁ ବାଟୁଁ ହାତ ଧରି
ନେବ କି ସତେ ସେ ମୋରେ ନୀଳାଦ୍ରିବିହାରୀ
ଲୋ କୋଇଲି ! । ୨୦ ।

କୋଇଲି ! ପାପ ମୋର ଅଛି ଅକଳନ
ପ୍ରଭୁ କୃପା କଲେ ହେଲେ ହେବ ତାହା ହତ
ଲୋ କୋଇଲି ! । ୨୧ ।

କୋଇଲି ! ଫିଟାନ୍ତୁ ସେ ଭବଗଣ୍ଠି ମୋର
ଫନ୍ଦା ଧନ ମୋର ସେ ଯେ କମଳାଙ୍କ ବର
ଲୋ କୋଇଲି ! । ୨୨ ।

କୋଇଲି ! ବାସ ଯିବା ମୋର ତାଙ୍କ ଧାମ
ବିଧି ବସିଅଛି ପରବାସ ହୋଇ ବାମ
ଲୋ ! କୋଇଲି ! । ୨୩ ।

କୋଇଲି ! ଭବ-ଜଳଧିରୁ କରେ ଗୁଣି
ଭବଖାତ ରକ୍ଷକେ ରଖନ୍ତୁ ଚକ୍ରପାଣି
ଲୋ କୋଇଲି ! । ୨୪ ।

କୋଇଲି ! ମାଟିର ଏ ଦେହ ହେବ ମାଟି
ମରଣାନ୍ତେ ଧାମେ ତାଙ୍କ ଯିବଇଁ କି ଛୁଟି
ଲୋ କୋଇଲି ! । ୨୫ ।

କୋଇଲି ! ଯମପାଶ ନ ଲାଗିବ ଗଳେ
ଯିବ ସବୁ ଲୋକ ଲଙ୍ଘି ଜଗନ୍ନାଥଆଳେ
ଲୋ କୋଇଲି ! । ୧୬ ।

କୋଇଲି ! ରଙ୍ଗାଧରେ ଆଜ୍ଞା ଦେଲେ ହର
ରମା ସାରଦା ଫେଡ଼ିବେ କଷଣ ମୋହର
ଲୋ କୋଇଲି ! । ୨୭ ।

କୋଇଲି ! ଲୀଳା ତାଙ୍କ ହୋଇବ ଗୋଚର
ଲୀଳାମୟୂ ଦେବେ ଠାବ ନିଜ ପୟରର
ଲୋ କୋଇଲି ! । ୨୮ ।

କୋଇଲି ! ବଡ଼ ଆଶା ପୋଷିଅଛି ମନେ
ବଷ୍ଟୁପୁରେ ପଶିବି ଗୁରୁ ସୁପ୍ରସନ୍ନେ
ଲୋ କୋଇଲି ! । ୨୯ ।

କୋଇଲି ! ଶିବ ମୋର ବନ୍ଧିବେ ସାରଦା
ଶୋଣକମଳଚରଣା ଶ୍ରୀ ହେବେ ବରଦ
ଲୋ କୋଇଲି ! । ୩୦ ।

କୋଇଲି ! ଷଡ଼ାନନପିଯୂର ଶଙ୍କର
ଷଡ଼ରିପୁ ନାଶେ ସାହା ହୋଇବେ ମୋହର
ଲୋ କୋଇଲି ! । ୩୧ ।

କୋଇଲି ! ସବିତା, ଗଣେଶ, ଗିରିବାଳା,
ସରବେ ନାଶିବେ ମୋର ପଥରୁ ଅର୍ଗଳା
ଲୋ କୋଇଲି ! । ୩୨ ।

---

୩୨ । ସବିତା—ସୂର୍ଯ୍ୟଦେବ; ଗିରିବାଳା—ମା ଦୁର୍ଗାଦେବୀ

କୋଇଲି ! ହେଉ ମୋର ବସ୍ତ୍ରପ୍ରଦେ ବାସ
ହରିଚନ୍ଦନେ ମଗନ ହେଉ ମୋ ମାନସ
ଲୋ କୋଇଲି ! । ୩୩ ।

କୋଇଲି ! କ୍ଷମି ସବୁ ସଞ୍ଚିତ କରମ
କ୍ଷମାନିଧି ବଞ୍ଚନ୍ତେ ଦିଅନ୍ତୁ ନିଜ ଧାମ
ଲୋ କୋଇଲି ! । ୩୪ ।



( ଶଙ୍ଖ ତଳ )

# ଶ୍ରୀ ଶ୍ରୀକ୍ଷେତ୍ରବାସମାଗୁଣି ଜଣାଣ

ବନମାଳୀ ଦାସ

(ଅଷ୍ଟାଦଶ ଶତାବ୍ଦୀ)

(ରାଗ ଶଙ୍କରାଭରଣ)

ଜୟ ଜଗନ୍ନାଥ ହେ ଯଶୋଦାକୁମର !
ଶ୍ରୀମଣ୍ଡଳଭୂତକ-ନୂତନ-ଜଳଧର । ଘୋଷା ।

ଶିରରେ ଶିଖିପୁଚ୍ଛଚୂଡ଼ା ଗୁଞ୍ଜ କଆପଣ ବେଢ଼ା
ଯଞ୍ଚାଙ୍କ ବରତଛଡ଼ା ମୁରଲୀ ନଟବର । ୧ ।

ନିତ୍ୟ ସତ୍ୟ ପୂର୍ଣ୍ଣାନନ୍ଦ ଗୋକୁଳରକ୍ଷ ଗୋବିନ୍ଦ
ପଦଅରବିନ୍ଦେ ଭକ୍ତଭ୍ରମରନିକର । ୨ ।

ଶେଷ ଯା ମହିମା ଲେଶ ନ କରି ପାରନ୍ତି ଶେଷ
ଯା ନାମ ଜପି ମହେଶ ମୃତ୍ୟୁକୁ କଲେ ଦୂର ।୩ ।

ଲବଣଜଳଧିତଟ ନୀଳାଦ୍ରି ନାମ ପ୍ରକଟ
କଳ୍ପବଟମୂଳେ କି ଲଗିବ ମୋର ଶିର । ୪ ।

କହେ ବନମାଳୀ ଦାସ ଶ୍ରୀଗୁରୁଚରଣେ ଆଶ
ସତେ କ୍ଷେତ୍ରବାସେ ଜୀବନ ଯିବ ମୋର । ୫ ।



( ଶତେହ ଗୃର )

# ଶ୍ରୀ ଦାରୁବ୍ରହ୍ମ ଭଜନ

## ଚଣ୍ଡୀ ଦାସ

(ଅଷ୍ଟାଦଶ ଶତାବ୍ଦୀ)

[ ଚଣ୍ଡୀ ଦାସ ନାମକ ଏ ଭକ୍ତଙ୍କର ଅନ୍ୟ କୌଣସି ଗୀତ ହସ୍ତଗତ ହୋଇନାହିଁ । ତାଙ୍କ ଏ ଭଜନଟି କଳିଙ୍ଗରେ ସୁପରିଚିତ ]

( ରାଗ ଖରହରପ୍ରିୟା )

ଭଜ ମନ ଜଗନ୍ନାଥଙ୍କୁ
ନୀଳାଚଳବାସୀ ଦାରୁବ୍ରହ୍ମଙ୍କୁ । ଘୋଷା ।

ଭକତ ଭୂଷଣ୍ଡ ହୋଇଲ ଅମର
ଧାୟନ୍ତି ବରୁଣ କୁବେର ଯାକୁ
ସ୍ୱର୍ଗେ ଶଚୀପତି ଯା ପାଦକୁ ଚିନ୍ତି
ବାସୁକୀ ଧାଉଛନ୍ତି ପଦ୍ମ ପାଦକୁ ।୧।

ବେଦବ୍ୟାସ ଆଦି ଶୁକ ସନକାଦି
ଧାଉଛନ୍ତି ହୃଦେ ଯାହା ନାମକୁ
ବ୍ରହ୍ମା ବେଦବର ଶଙ୍କର ପ୍ରବର
ପଞ୍ଚାନନ ସେବୁଛନ୍ତି ଯାହାକୁ ।୨।

ନିତି ଦିବାକର ଅଷ୍ଟଦିଗପାଳ
ଧାଉଛନ୍ତି ହୃଦେ ଯାହା ପାଦକୁ
ସ୍ୱର୍ଗ ମର୍ତ୍ତ୍ୟ ଆଦି ପାତାଳ ବୈକୁଣ୍ଠ
ରହିଅଛି ଯାହା ଆଜ୍ଞାପଦକୁ ।୩।

ଯେଉଁ ନାମ-ସୁଧା ଧାଇଣ ବସୁଧା
ରଖିଅଛୁ ସେହୁ ସତ୍ୟପଦକୁ
ସେ ସତ୍ୟକୁ ଡର ଚନ୍ଦ୍ର ଦିବାକର
ଚଳାଚଳ ସେହୁ ସ୍ୱଚ୍ଛବଦନକୁ । ୪ ।

ଗଙ୍ଗା ଯା ପୟର ଧାବ ନିରନ୍ତର
ଚଞ୍ଚଳା ଧାଉଛୁ ଯାର ରୂପକୁ
ସେ ରୂପ ଦର୍ଶନ କରୁଅଛୁ ଧ୍ୟାନ
ବାକ୍ୟଦେବୀ ଭଣେ ଯାର ନାମକୁ ।୫।

ଯେଉଁ ପାଦପଦ୍ମ ସେବୁଛନ୍ତି ସାଧୁ
ଭ୍ରମୁଛନ୍ତି ସେ ସାଧନାଦ୍ୱାରକୁ
ସେ ଦ୍ୱାରକାନାଥ ଭାବେ ଚଣ୍ଡୀ ଦାସ
ନିତ୍ୟେ ପ୍ରଣମଇ ବ୍ରଜପୁରକୁ । ୬ ।



( ଶହେ ପାଞ୍ଚ )

# ଶ୍ରୀ ସଙ୍କଟହରଣ ଜଣାଣ

## ଦିବ୍ୟସିଂହ ଦେବ ମହାରାଜା

(ଊନବିଂଶ ଶତାବ୍ଦୀ)

[ ବ୍ରିଟିଶ ଶାସକଙ୍କ କୋପରେ ପଡ଼ି କଳିଙ୍ଗର ଗଜପତି ମହାରାଜା ଦିବ୍ୟସିଂହ ଦେବଙ୍କୁ କଳାପାଣି ଯିବାକୁ ହୋଇଥିଲା । ସଙ୍କଟରେ ଅଟକ ହେଲାବେଳେ ତାଙ୍କ ମନର ଭାବ ଏ ଗୀତଟିରେ ପ୍ରକାଶ ପାଇଅଛି । ଦିବ୍ୟସିଂହ ଦେବଙ୍କର କଳାପାଣି ଯିବାକୁ ଓଡ଼ିଆ ଜାତି ତାହାକୁ ବିପଦରୂପେ ଗ୍ରହଣ କରିଥିଲା । ଏ ସମ୍ବନ୍ଧରେ ଗୋଟିଏ ଗୀତ ଅଦ୍ୟାବଧି ଓଡ଼ିଶାରେ ପ୍ରଚଳିତ । ]

( ରାଗ ସାବେରୀ )

ପ୍ରଭୁ ନୀଳାଦ୍ରିବିହାରୀ !

କଟକେ ଅଟକ ହେବାରୁ ମୋ ଦିନ
ସରୁନାହିଁ ଝୁରି ଝୁରି । ଘୋଷା ।
ମହାବଳଆରଭୁଜ ଦେବରାଜ
ସୁଦର୍ଶନ-ଚକ୍ରଧାରୀ !
ଏ ମହାବିପଦୁଁ ଉଦ୍ଧରିଲ ନାହିଁ
ନ ଶୁଣିଲ ମୋ ଗୁହାରି । ୧ ।
କନ୍ଦରୁ ଅଣାଇ ବନ୍ଦୀ କରାଇଲ
ଶ୍ରୀନନ୍ଦଘୋଷବିହାରୀ !
ଛନ୍ଦ କରସ୍ଥୁ ଦେଖାଉଛି ଭୟ
ଦ୍ୱନ୍ଦୀ ବିଜାତି ପାହାରୀ । ୨ ।

---

୨ । କନ୍ଦରୁ—ରାଜଅନ୍ତଃପୁର ମଧ୍ୟରୁ; ଛନ୍ଦ କରସ୍ଥ—ହାତକଡ଼ି ପିନ୍ଧାଇ; ବିଜାତି ପାହାରୀ—ଫିରିଙ୍ଗି ପ୍ରହରୀ

କଳାଶ୍ରୀବଦନ ଏ ଘୋର କଦନ
ବେଳକୁ ବେଳ ତ ଘଷ୍ଟ
ଧଳା ଅଶ୍ୱବାଗ ପାଉନାହିଁ କବା
ଲେଡ଼ ଲେଡ଼ ଦଇଚାର !।। ୩ ।
କେତେ କାହାକୁ ସଙ୍କଟୁ ରଖିନାହିଁ
କୃପାନିଧି ଦୁଃଖହାରୀ !
ମୋହର ବେଳକୁ ନିର୍ଦ୍ଦୟ-ହୃଦୟ
ହେଉଛ କିସ ବିଗୁଣ ? । ୪ ।
ସିନ୍ଧୁସୁତାପତି ! ଅବା ମୋ ବିପତ୍ତି
ପ୍ରତାପେ ହେଉଛ ଘାରି
ଦିବ୍ୟସିଂହ ଦେବ କାହାକୁ କହିବ
ଆପଣ ନ କଲେ ପାରି । ୫ ।



---

୩ । ଧଳା—ଅଶ୍ୱବାଗ—ଧଳାଘୋଡ଼ାର ବଳଗ ବା ଲଗାମ
( ଶ୍ରୀଜଗନ୍ନାଥ ଧଳାଘୋଡ଼ାରେ ଓ ଶ୍ରୀ ବଳଦେବ କଳାଘୋଡ଼ାରେ ଚଢ଼ି କାଞ୍ଚୀଯୁଦ୍ଧକୁ ଯାଇଥିଲେ )

( ଶତେ ଛଅ )

# ଶ୍ରୀ ଲୀଳାମୟ ଜଣାଣ

## ଗୌରଚରଣ ଅଧିକାରୀ

(ଊନବିଂଶ ଶତାବ୍ଦୀ)

( ରାଗ ସାବେରୀ—ଚନ୍ଦନଯାତ୍ରା ଭଜନ ବୃତ୍ତ )

ଲୀଳାମୟ ! ଏ ଲୀଳା ତୁମ୍ଭର ହେ, କେମନ୍ତେ ବୁଝିବ ମୂର୍ଖ
ହର ବ୍ରହ୍ମାଙ୍କୁ ଯେ ଅଟ ଅଗୋଚର
ଅନନ୍ତ ଅନ୍ତ ନ ପାଇ । ଘୋଷା ।

ଇନ୍ଦ୍ର ବରୁଣ କୁବେର ଆଦି ଯେତେ
ଛନ୍ତି ଦଶଦିଗପାଳେ
ବାଣୀ ରମା ଉମା ତୁମ୍ଭର ମହିମା
ଜାଣି ନ ପାରିଲେ ତାଳେ ।୧।

କୋଟି କୋଟି ଋଷି କଳ୍ପ-କଳ୍ପ ବସି
ଧ୍ୟାନେ ହେଉଛନ୍ତି ବଣା
ମୁଁ ଛାର ଅଧମ କି କରି ବୁଝିବି
ତୁମ୍ଭ ମାୟା-ବୁଝାମଣା ।୨।

କାହାକୁ କେତେ କି ନ କରୁଛ ହରି
ଦୟାଳୁ ସାମନ୍ତମଣି !
ମାରିବା ତାରିବା ଦୁଇ କଥା ଭଲ
ବହିଛ ସାରଙ୍ଗପାଣି ! ।୩।

ଶଙ୍ଖ ମଇଁଷଙ୍କୁ ଏକଗଡ ଦଅ
ଏ ଟା ବଡ ଆଚମ୍ବିତ
କାହାକୁ ଅଚଳା ବଭୂତ ସମର୍ପ
କାହାକୁ କର ଅର୍ଜିତ ।୯।

କେଉଁ ଗୁଣ ବା ତୁମ୍ଭର ବାଉନବ
ଆହେ ମହାଭୁଜଙ୍ଗେଶ୍ୱର !
କେ ପିନ୍ଧ ବୁଲୁଛି ଖଣ୍ଡିଆ ଦରଷ
କାହା ମୁଣ୍ଡେ ସୁନାଠେକା ।୫।

କେହୁ ଦାନାପାଇଁ ହୁଏ ହାଇଁ ହାଇଁ
କେ ଭୁଞ୍ଜଇ ଶାଳଅନ୍ନ
ଖଙ୍ଗ ମଣି ଶିଷ୍ୟଙ୍କ ଗୌରଦୁଃଖ
ନ ଶୁଣି ମୁଦଛ କର୍ଣ୍ଣ ।୭।



---

୨। ଖଙ୍ଗ ମଣି—ମୋ ନବେଦନକୁ ଅପ୍ରୀତକର ବୋଲି ମନେ କର

# ଶ୍ରୀ ଗରୁଡ଼ାସନ ଜଣାଣ

## ଗୌରଚରଣ ଅଧିକାରୀ

(ଊନବିଂଶ ଶତାବ୍ଦୀ)

( ରାଗ ପ୍ରଭାତୀ )

ଦୁଃଖନାଶନ ଗରୁଡ଼ାସନ ହରି !
ଦୁଃଖ ଜଣାଇବି କାହାକୁ
ଦିନନାଥ° ଥାଉଁ ଅନ୍ଧାର ଘୋଟୁଛି
ଏ କଥା କି ଚଉଦାହାକୁ । ଘୋଷା ।
ଚିନ୍ତା-ନାବପରେ ବସାଇ କରି
ଠେଲିଦେଲ ଯେଣୁ ଯାଉଛି ସରି
ଦୁଖ ଭୁଖ ବୋଲି କାହାକୁ ଡାକିବି
ଶ୍ରବଣ ତ କଲ ଲୁହାକୁ । ୧ ।
ସୁଦାମା-ଦାରିଦ୍ର୍ୟ-ଭଞ୍ଜନକାରି !
ରଖିଛ ପାଣ୍ଡବେ କୁରୁ ସଂହାରି
ଜଳର ମଧ୍ୟରେ ଗଜକୁ ରଖିଲ
ଛେଦି ପକାଇଲ ଗ୍ରାହାକୁ । ୨ ।
ଅଜାମିଳ ନାମେ ଯେ ମହାପାପୀ
ତରିଗଲା ପୁତ୍ରନାମକୁ ଜପି
ନାଟେକ ମାରିଲା ଶ୍ରୀବତ୍ସ ବ୍ରାହ୍ମଣ
ହୃଦରେ ବହିଲ ତାହାକୁ । ୩ ।

---

° । ଦିନନାଥ— ସୂର୍ଯ୍ୟ

ବନର ହରିଣୀ ଚନ୍ଦ୍ରବା ମାଧେ
ଘନେ କୃପା କଲ ପଶୁ ସାକ୍ଷାତେ
ଅର୍ଷିତ ଡାକକୁ ନ ଶୁଣୁଛ ଲଜ୍ଜା
ନୋହବ କି ଲକ୍ଷ୍ମୀନାହାକୁ ।୪।

ଯେଉଁ ନାମ ଧରି ପବନସୁତ
ଡେଇଁ ସମୁଦ୍ର ଆଣିଲ ସଙ୍କେତ
ଗଉରଚରଣ ସେ ପାଦେ ଶରଣ
ହରବ୍ରହ୍ମା ଚିନ୍ତେ ଯାହାକୁ ।୫।



(ଗଚ୍ଛ ଆଠ)

# ଶ୍ରୀ ଦଶଅବତାର ଜଣାଣ

## ବଞ୍ଛନଦଚରଣ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

( ରାଗ ଶ୍ରୀ )

ଜୟ ଜୟ ଜଗନ୍ନାଥ    ଜୟ ଶଙ୍ଖ-ଚକ୍ର-ହାତ
ଜୟ "ଦଶଅବତାର-କ୍ଷେତ୍ର"-ନାୟକ
ଧର୍ମ ଥାପିବାର ପାଇଁ    ଲୀଳା-ତନୁ ମାନ ବହି
ଅବତର ସ୍ୱାମି ! ଭକ୍ତସୁଖଦାୟକ
ମୁଁ ଯେ ଜୀବ ପତିତାଧମ
କାରଣ କରିବା ମୋରେ ପୁରୁଷୋତ୍ତମ ! । ୧ ।

ବେଦଚୋର ଶଙ୍ଖାସୁରେ    ଖୋଜ ପ୍ରଳୟ-ସିନ୍ଧୁରେ
ପରାଣ ବିନାଶି ତାର ବେଦ ଉଦ୍ଧାରି
ବେଦବର-କରେ ଦେଲ    ଧରମସେତୁ ଥାପିଲ
ଜୟ ମତ୍ସ୍ୟରୂପଧର ହେ ଦାରୁହରି !
ମୁଁ ଯେ ଜୀବ ପତିତାଧମ
କାରଣ କରିବା ମୋରେ ପୁରୁଷୋତ୍ତମ ! । ୨ ।

---

୧ । ଦଶଅବତାର କ୍ଷେତ୍ର—ଶ୍ରୀକ୍ଷେତ୍ରକୁ ଦଶଅବତାର କ୍ଷେତ୍ର କୁହାଯାଏ, କାରଣ ଏହା ଦଶଅବତାର ଲୀଳାର ମୂଳ ଆୟତନ; ଅର୍ଥାତ୍ ମହାପ୍ରଭୁ ଶ୍ରୀଜଗନ୍ନାଥ ଲୀଳାତନୁ ପରିଗ୍ରହ କରି ଏହିଠାରୁ ଅଯୋଧ୍ୟା ମଥୁରାଦିକୁ ଲୀଳାର୍ଥେ ଗମନ କରନ୍ତି । କାରଣ କରିବା ମୋରେ—ମୋତେ ସଦ୍‌ଗତି ଦେବା ହେଉନ୍ତୁ

ମନ୍ଥନଦଣ୍ଡ ମନ୍ଦରେ ରଜ୍ଜୁ କରି ବାସୁକୀରେ
ଦେବାସୁରେ ଅମୃତର ନିମନ୍ତେ ସିନ୍ଧୁ
ମନ୍ଥନେ ଅବନୀଶ୍ୱର ବହିଲ ପୃଷ୍ଠ ଉପର
ଜୟ କୂର୍ମରୂପଧର କମଳାବନ୍ଧୁ !
ମୁଁ ଯେ ଜୀବ ପତିତାଧମ
କାରଣ କରିବା ମୋରେ ପୁରୁଷୋତ୍ତମ ! । ୩ ।

ପ୍ରଳୟଜଳେ ମଗନ- ଧରାଉଦ୍ଧରଣେ ମନ
କରିଣ ଦଶନଅଗ୍ରେ ତାହାରେ ତୋଳି
ନବୀନ ସୃଷ୍ଟି ପର୍ଯ୍ୟାୟ ଆରମ୍ଭିଲ ଲୀଳାମୟ
ଜୟ ବରାହବିଗ୍ରହ ହେ ବନମାଳି !
ମୁଁ ଯେ ଜୀବ ପତିତାଧମ
କାରଣ କରିବା ମୋରେ ପୁରୁଷୋତ୍ତମ ! । ୪ ।

ଭକତ-ଆରତ-ନାଶ ପାଇଁ ସ୍ତମ୍ଭୁ ପରକାଶ
ହୋଇ ବିଦାରିଲ ନଖେ ହିରଣ୍ୟ ଗୁଣ୍ଡ
ଧରାଧର ଉଶ୍ୱାସିଲ ଦେବତାକୁଳ ତୋଷିଲ
ଜୟ ନରସିଂହତନୁ ଭୀମଆକୃତି !
ମୁଁ ଯେ ଜୀବ ପତିତାଧମ
କାରଣ କରିବା ମୋରେ ପୁରୁଷୋତ୍ତମ ! । ୫ ।

ପାଦକେ ଧରା ଆବୋରି ଆର ପାଦେ ସୁରପୁରୀ
ତୃତୀୟ ପାଦ ନାଭିରୁ କରି ବାହାର
ତ୍ରିବିକ୍ରମ ରୂପ ହେଲ ପାତାଳେ ବଳି ଚାପିଲ
ଜୟ ବାମନଶରୀର ହେ ଚକ୍ରଧର !

( ଶହେ ସାତ )

# ଶ୍ରୀ ଗରୁଡ଼ାସନ ଜଣାଣ

## ଗୌରଚରଣ ଅଧିକାରୀ

(ଊନବିଂଶ ଶତାବ୍ଦୀ)

( ସ୍ୱର ପ୍ରଭାତୀ )

ଦୁଃଖନାଶନ ଗରୁଡ଼ାସନ ହରି !
ଦୁଃଖ ଜଣାଇବି କାହାକୁ
ଦିନନାଥ ଥାଉଁ ଅନ୍ଧାର ଘୋଟୁଛି
ଏ କଥା କି ଚଉଦାହାକୁ । ଘୋଷା ।
ଚିନ୍ତା-ନାବପରେ ବସାଇ କରି
ଠେଲିଦେଲ ଯେଣୁ ଯାଉଛି ସରି
ଲଖ ଲଖ ବୋଲି କାହାକୁ ଡାକିବି
ଶ୍ରବଣ ତ କଲ ଲୁହାକୁ । ୧ ।
ସୁଦାମା-ଦାରିଦ୍ର୍ୟ-ଭଞ୍ଜନକାରି !
ରଖିଛ ପାଣ୍ଡବେ କୁରୁ ସଂହାରି
ଜଳର ମଧ୍ୟରେ ଗଜକୁ ରଖିଲ
ଛେଦି ପକାଇଲ ଗ୍ରାହାକୁ । ୨ ।
ଅଜାମିଳ ନାମେ ଯେ ମହାପାପୀ
ତରିଗଲା ପୁତ୍ରନାମକୁ ଜପି
ନାଟେକ ମାଇଲା ଶ୍ରୀବତ୍ସ ବ୍ରାହ୍ମଣ
ହୃଦରେ ବହିଲ ତାହାକୁ । ୩ ।

---

୦ । ଦିନନାଥ— ସୂର୍ଯ୍ୟ

ବନର ହରଣୀ ଚନ୍ଦ୍ରବା ମାନେ
ଘନେ କୃପା କଲ ପର ସାକ୍ଷାତେ
ଅକ୍ଷିତ ଡାକକୁ ନ ଶୁଣୁଛ ଲଜ୍ଜା
ନୋହିବ କି ଲକ୍ଷ୍ମୀନାହାକୁ । ୪ ।

ଯେଉଁ ନାମ ଧରି ପବନସୁତ
ଡେଇଁ ସମୁଦ୍ର ଆଣିଲ ସଙ୍କେତ
ଗଉରଚରଣ ସେ ପାଦେ ଶରଣ
ହରବ୍ରହ୍ମା ଚନ୍ଦ୍ରେ ଯାହାକୁ । ୫ ।



(ଶବ୍ଦେ ଆଠ)

# ଶ୍ରୀ ଦଶଅବତାର ଜଣାଣ

## ବଛନ୍ଦଚରଣ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

( ସ୍ୱର ଶ୍ରେଣୀ )

ଜୟ ଜୟ ଜଗନ୍ନାଥ        ଜୟ ଶଙ୍ଖ-ଚକ୍ର-ହାତ
ଜୟ "ଦଶଅବତାର-କ୍ଷେତ୍ର"-ନାୟକ
ଧର୍ମ ଥାପିବାର ପାଇଁ        ଲୀଳା-ତନୁ ମାନ ବହି
ଅବତର ସ୍ୱାମି ! ଭକ୍ତସୁଖଦାୟକ
ମୁଁ ଯେ ଜୀବ ପତିତାଧମ
କାରଣ କରିବା ମୋରେ ପୁରୁଷୋତ୍ତମ ! । ୧ ।

ବେଦଚୋର ଶଙ୍ଖାସୁରେ        ଖୋଜ ପ୍ରଳୟ-ସିନ୍ଧୁରେ
ପଶିଣ ବିନାଶି ତାର ବେଦ ଉଦ୍ଧାରି
ବେଦବର-କରେ ଦେଲ        ଧରମସେତୁ ଥାପିଲ
ଜୟ ମତ୍ସ୍ୟରୂପଧର ହେ ଦାରୁହରି !
ମୁଁ ଯେ ଜୀବ ପତିତାଧମ
କାରଣ କରିବା ମୋରେ ପୁରୁଷୋତ୍ତମ ! । ୨ ।

---

୧ । ଦଶଅବତାର କ୍ଷେତ୍ର—ଶ୍ରୀକ୍ଷେତ୍ରକୁ ଦଶଅବତାର କ୍ଷେତ୍ର କୁହାଯାଏ, କାରଣ ଏହା ଦଶଅବତାର ଲୀଳାର ମୂଳ ଆୟତନ; ଅର୍ଥାତ୍ ମହାପ୍ରଭୁ ଶ୍ରୀଜଗନ୍ନାଥ ଲୀଳାତନୁ ପରିଗ୍ରହ କରି ଏହିଠାରୁ ଅଯୋଧ୍ୟା ମଥୁରାଦିକୁ ଲୀଳାର୍ଥ ଗମନ କରନ୍ତି । କାରଣ କରିବା ମୋରେ—ମୋତେ ସଦ୍‌ଗତି ଦେବା ହେତୁ

ମନ୍ଥନଦଣ୍ଡ ମନ୍ଦରେ ରଜ୍ଜୁ କରି ବାସୁକୀରେ
ଦେବାସୁରେ ଅମୃତର ନିମନ୍ତେ ସିନ୍ଧୁ
ମନ୍ଥନେ ଅବନୀଶ୍ୱର ବହିଲ ପୃଷ୍ଠ ଉପର
ଜୟ କୂର୍ମରୂପଧର କମଳାବନ୍ଧୁ !
ମୁଁ ଯେ ଜୀବ ପତିତାଧମ
କାରଣ କରିବା ମୋରେ ପୁରୁଷୋତ୍ତମ ! । ୩ ।

ପ୍ରଳୟଜଳେ ମଗନ- ଧରାଉଦ୍ଧରଣେ ମନ
କରିଣ ଦଶନଅଗ୍ରେ ତାହାରେ ତୋଳି
ନବୀନ ସୃଷ୍ଟି ପର୍ଯ୍ୟାୟ ଆରମ୍ଭିଲ ଲୀଳାମୟ
ଜୟ ବରାହବିଗ୍ରହ ହେ ବନମାଳି !
ମୁଁ ଯେ ଜୀବ ପତିତାଧମ
କାରଣ କରିବା ମୋରେ ପୁରୁଷୋତ୍ତମ ! । ୪ ।

ଭକତ-ଆରତ-ନାଶ ପାଇଁ ସ୍ତମ୍ଭୁ ପରକାଶ
ହୋଇ ବିଦାରିଲ ନଖେ ହିରଣ୍ୟ ଗୁଣ୍ଡ
ଧରାଧର ଉଶ୍ୱାସିଲ ଦେବତାକୁଳ ତୋଷିଲ
ଜୟ ନରସିଂହତନୁ ଭୀମଆକୃତ !
ମୁଁ ଯେ ଜୀବ ପତିତାଧମ
କାରଣ କରିବା ମୋରେ ପୁରୁଷୋତ୍ତମ ! । ୫ ।

ପାଦକେ ଧରା ଆବୋରି ଆର ପାଦେ ସୁରପୁରୀ
ତୃତୀୟ ପାଦ ନାଭିରୁ କରି ବାହାର
ତ୍ରିବିକ୍ରମ ରୂପ ହେଲ ପାତାଳେ ବଳି ଚାପିଲ
ଜୟ ବାମନଶରୀର ହେ ଚକ୍ରଧର !

ମୁଁ ଯେ ଜୀବ ପତିତାଧମ
କାରଣ କରିବା ମୋରେ ପୁରୁଷୋତ୍ତମ ! । ୬ ।

ଏକୋଇଶ ବାର ପୃଥ୍ୱୀ କରିଲ ତୁମ୍ଭେ ନିକ୍ଷତ୍ରି
ଧରା ଶାନ୍ତ କଲ ନାଶି ଦୁଷ୍ଟ ନୃପତି
ଶୋଣିତେ ତାଙ୍କ ତର୍ପଣ କଲ ନିଜ ପିତୃଗଣ
ଜୟ ପର୍ଶୁଧରରୂପ ଜଗତପତି !
ମୁଁ ଯେ ଜୀବ ପତିତାଧମ
କାରଣ କରିବା ମୋରେ ପୁରୁଷୋତ୍ତମ ! । ୭ ।

ରଘୁକୁଳେ ହୋଇ ଜାତ ପାଳିଲ ଜନକସତ୍ୟ
ମାୟାରେ ହରାଇ ସୀତା ଭ୍ରମିଲ ବନ
ସମୁଦ୍ରେ ବନ୍ଧ ବାନ୍ଧିଲ ଦଶକନ୍ଧ ବିନାଶିଲ
ଜୟ ରାମରୂପଧର ହେ ଭଗବାନ !
ମୁଁ ଯେ ଜୀବ ପତିତାଧମ
କାରଣ କରିବା ମୋରେ ପୁରୁଷୋତ୍ତମ ! । ୮ ।

ହଳ ମୂଷଳର ଘାତେ ବଧିଲ ଦୁଷ୍ଟ ଦଇତେ
ପ୍ରଲମ୍ବା ଧେନୁକା ଆଦି ଦେଲ ନିବାରି
ଜୟ ରେବତୀରମଣ ସପତଫଣଭୂଷଣ
ଜୟ ବଳଦେବରୂପ ଦନୁଜଅରି !
ମୁଁ ଯେ ଜୀବ ପତିତାଧମ
କାରଣ କରିବା ମୋରେ ପୁରୁଷୋତ୍ତମ ! । ୯ ।

ରାଜଲକ୍ଷ୍ମୀ ଭୁଞ୍ଜ କରି    ହୋଇଲ ତପଆଚାରୀ
ନିନ୍ଦିଲ ବେଦବିଧାନ    ପଶୁମାରଣ
କରୁଣା-ଜାହ୍ନବୀଜଳେ    ଭସାଇଲ ଭୂମଣ୍ଡଳେ
ଜୟ ବୁଦ୍ଧରୂପଧର    ଆଦିକାରଣ !
ମୁଁ ଯେ ଜୀବ ପତିତାଧମ
କାରଣ କରିବା ମୋରେ ପୁରୁଷୋତ୍ତମ ! ।୧୦।

କଳିଶେଷେ ଭୂମିଭାର    ହରଣେ କୃପାଣକର
ହୋଇଣ ମ୍ଲେଚ୍ଛ ସଂହାର    ଜଗତବନ୍ଧୁ !
ବସୁଧାରୁ ପାପରାଶି    ହେଲାରେ ଦିଅ ବିଧ୍ୱଂସି
ଜୟ କଳ୍କିରୂପଧର ନୀଳାଦ୍ରି ଇନ୍ଦୁ !
ମୁଁ ଯେ ଜୀବ ପତିତାଧମ
କାରଣ କରିବା ମୋରେ ପୁରୁଷୋତ୍ତମ ! ।୧୧।

ଭୌମ ବଇକୁଣ୍ଠେ ରହି    ଆହେ ପ୍ରଭୁ ଭାବଗ୍ରାହୀ !
ଦଶ ଅବତାର ଲୀଳାମାନ ଆଚରି
କମଳାଙ୍କ ପାକ ଅନ୍ନ    ଆପଣେ କରି ଭୋଜନ
ପାପତାପ ବିନାଶନ ପାଇଁ ବିଚରି
ମୁଁ ଯେ ଜୀବ ପତିତାଧମ
କାରଣ କରିବା ମୋରେ ପୁରୁଷୋତ୍ତମ ! ।୧୨।

ଅନ୍ତକାଳେ ଆହେ ହରି ! ଏ ଲୀଳାମାନ ତୁମ୍ଭର
ଅନ୍ତରେ ମୋ ସ୍ଫୁରୁଥିବ ଏ ବର ଦିଅ
ଗୃହକୂପେ ମୁଁ ପତିତ ଅଶେଷ ଦୋଷେ ଦୂଷିତ
ପଦ୍ମରତନକୁ ମୋରେ ଉଦ୍ଧାର କିଅ
ବଳନ୍ଦ ମୁଁ ପତିତାଧମ
ତାରଣ କରିବା ମୋରେ ପୁରୁଷୋତ୍ତମ ! ।୧୩।

ଓଁ ଶ୍ରୀ ଶ୍ରୀ ଜଗନ୍ନାଥାର୍ପଣମସ୍ତୁ

